# ଅରଣ୍ୟର ଅଧିକାର ବନାମ ଆଦିବାସୀ ଉଚ୍ଛେଦ

ସମରେନ୍ଦ୍ର ନାୟକ



# ଅରଣ୍ୟର ଅଧିକାର
# ବନାମ
# ଆଦିବାସୀ ଉଚ୍ଛେଦ

ସମରେନ୍ଦ୍ର ନାୟକ

ଚିତ୍ରୋତ୍ପଳା ପବ୍ଲିକେଶନ
ବଟେଶ୍ୱର, ସାଲେପୁର, କଟକ

ଅରଣ୍ୟର ଅଧିକାର
ବନାମ
ଆଦିବାସୀ ଉଚ୍ଛେଦ
*ତଥ୍ୟ ଭିତ୍ତିକ ଆଲୋଚନା*

ସମରେନ୍ଦ୍ର ନାୟକ
ସାତାଲ୍ ଡ୍ରିଭଙ୍ଗି, ତାଳବଣି, ଛତ୍ରପୁର, ନୀଳଗିରି-୭୫୬୦୫୮

ପ୍ରକାଶିକା : ଅନସୂୟା ଦାଶ
ଚିତ୍ରୋତ୍ପଳା ପବ୍ଲିକେଶନ, ବଟେଶ୍ୱର, ସାଲେପୁର, କଟକ

ପ୍ରଥମ ସଂସ୍କରଣ : ୨୦୦୪

ମୁଦ୍ରଣ : ବିଶ୍ୱମୁକ୍ତି ପବ୍ଲିକେଶନ୍ସ, ଏ/୧୬, ଶହିଦନଗର, ଭୁବନେଶ୍ୱର
ଅଲଙ୍କରଣ : ଇଜିସ୍ ଫଟୋସପ୍, ରୁପାଲି ସ୍କୋୟାର, ଭୁବନେଶ୍ୱର

ମୂଲ୍ୟ: ୫୦ ଟଙ୍କା
ବନ୍ଧେଇ : ୬୫ ଟଙ୍କା

Aranyara Adhikar
Banam
Adibasi Uchhed

A datta based discussion
By : Samarendra Nayak

Published by : Chitrotpala Publication
Bateswar, Saliur, Cuttack-754202

1st Edition : 2004

Price: 50/-
Binding : 65/-

ମୋର ଅତି ଆପଣାର ସ୍ୱରାଜ ଖେମୁଣ୍ଡୁ, ବାଲରାଜୁ ଗେମେଲ, ଶୁକ୍ରାଗୁଣ୍ଡା, ଲଛମୁଖରା, ସଦାଶିବ ହନ୍ତାଲ, ଦାମୋଦର କଡ଼ା, ଲକ୍ଷ୍ମୀ ହନ୍ତାଲ, ଦ୍ରୌମତୀ ହନ୍ତାଲ, କମଲ ସାଇ ମାଝୀ, ମୂଲିଆ ଖରା, ଶୁକ୍ରା ମାଝୀ, ହରିବନ୍ଧୁ ନାୟକ, ମେନକା ଖେମୁଣ୍ଡୁ, କମଲା ଖରା, ବିଦେଶୀ ଗଉଡ଼, କାଲା ବୁରୁଦା ଏବଂ ବଳଭଦ୍ର, ମାଲତୀ, ଭଗମତୀ, ପଦେ, ଲଖଣ, ମୁକୁନ୍ଦ, ସମା, ଇନ୍ଦ୍ର(କ), ସମାରୁ (କ), ଦୈତାରୀ, ବୁଦ୍ଧ, ନନି, ଅଜୟ, ବୃନ୍ଦାମନ, କାର୍ତ୍ତିକ, ସାତି, ଇନ୍ଦ୍ର (ଖ), ଗଙ୍ଗା, ମଙ୍ଗଳରାମ, ମେଷି, ଗୌରୀ, ହୀରାମଣି, ସମାରୁ (ଖ), ଘନ, ଭଗବାନ, ବନ୍ଧୁ (କ), ବଳରାମ, ସୁବର୍ଣ୍ଣା, ଫୁଲମତୀ, ସୁବାରାଓ, ହରିବାଲା, ମାଷ୍ଟର ମାଣ୍ଡାଙ୍ଗି, ଦାସୀ, ବନ୍ଧୁ (ଖ), ପଦ୍ମ, ମାଧବ, ଅର୍ଜୁନ, ଡମ୍ବୁ, ଶୁକ୍ରା ଓ ଆଦିଆଆଲାଂ ସହ ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘର ଅଗଣିତ ବୀର ସାଥୀ, ତମେ ଯେଉଁମାନେ ଅରଣ୍ୟ ପର୍ବତରେ ଉଚ୍ଛେଦ ହେବାକୁ ଚାଲିଥିବା ଆପଣାର ଲେଙ୍ଗୁଟି ପିନ୍ଧା ସମାଜ ପାଇଁ ଜୀବନ ହୁଡ ରଖି ମଶାଲ ହାତରେ ଆଜି ବାଟ ଚାଲିଛ, ତମରି ଭିତରେ ଥାଇ ତମକୁ ବା ଆଉ କଣ ଦେଇ ପାରିବି ସାଥୀ- ମୋର ଏଇ ''ଅରଣ୍ୟର ଅଧିକାର ବନାମ ଆଦିବାସୀ ଉଚ୍ଛେଦ'- ଆଜି ତମରି ମାନଙ୍କ ହାତରେ, ତମରି ମାନଙ୍କ ପ୍ରେମରେ ।

- ସମରେନ୍ଦ୍ର ନାୟକ

# ପୁଷ୍ପ କ୍ରମ

# ପାଣ୍ଡୁଲିପି ଓ ଅଭିମତ

- ପକ୍ଷ, ପ୍ରତିପକ୍ଷ, ନିରପେକ୍ଷ ସମସ୍ତେ ପଢ଼ିବେ ।

(ସଦାଶିବ ଦାଶ, ବଟେଶ୍ୱର, ସାଲେପୁର, କଟକ)

- ସୁନ୍ଦର ଚିତ୍ରପଟ ପରି ହୋଇଛି ।

(ସୁଧାଂଶୁ ସେନଗୁପ୍ତ (ଦାଦା), କୋଲକାତା)

- ଏହା ହିଁ ପ୍ରକୃତ ଭିତ୍ତି ପ୍ରବନ୍ଧ ।

(ସଭାପତି ଗଂଗାଧର ପାଣିଗ୍ରାହୀଙ୍କ ସହ ସେମିନାରର ମତ)

- ବାରମ୍ବାର ବିଭିନ୍ନ ଆଡ଼େ ଘୂରାଇ ଆଣି ଏପରି ବାଗରେ ପୁଣି ଆଦିବାସୀ ଉଚ୍ଛେଦ ପାଖରେ ପହଁଚାଇ ଦିଆଯାଉଛି, ଯେ କେହି ସହଜରେ ବୁଝି ପାରିବ ।

(ବାଇରାଜୁ ଗେମେଲ, ସଭାପତି, ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘ)

- ଆପଣଙ୍କର ଏହା ଏକ ନୂଆ ଦିଗ ।

(ସନାତନ ନାୟକ, ପ୍ରଧାନ ଶିକ୍ଷକ, ଛତ୍ରପୁର ହାଇସ୍କୁଲ, ନୀଳଗିରି)

- ମୁଁ କେତେକ ଅଜଣା କଥା ଜାଣିଲି ।

(କରୁଣାକର ମଲ୍ଲିକ, ତାର୍ଲାକୋଟା ହାଇସ୍କୁଲ, ମାଲକାନଗିରି)

- ବୁଝି ସାରିବା ପରେ ଆଦିବାସୀର ଅରଣ୍ୟର ଅଧିକାର ପାଇଁ ଅପେକ୍ଷା ନ ରଖି ଲଢ଼ିବି ।

(ଶୁକ୍ରା ମାଢ଼ୀ, ଶୁକ୍ରାଗୁଡ଼ା, ମାଲକାନଗିରି)

- ରାସ୍ତାରୋକ ଆନ୍ଦୋଳନ ପରି ଏ ଲେଖାର ରାସ୍ତା ରୋକି ଦେବାର ଶକ୍ତି ରହିଛି ।

(ବାଲାଜୀ ବିଶ୍ୱନାଥ ଜେନା, ତାଳବଣି-ଗୋହିରା, ନୀଳଗିରି)



# ଉଚ୍ଛେଦ ପ୍ରସଙ୍ଗ ଏବଂ ସର୍କ ଶେଷ ହୋଇଥିବା ଧୂପକାଠି

ଅପ୍ରେଲ ୨୦, ୨୦୦୩, ''ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ, ଓଡ଼ିଶା (ଗାସ୍)'' ତରଫରୁ ଭୁବନେଶ୍ୱର ଠାରେ ଅନୁଷ୍ଠିତ ହୁଏ ଜଙ୍ଗଲରୁ ଆଦିବାସୀ ଉଚ୍ଛେଦ ପ୍ରସଙ୍ଗ ଉପରେ ଏକ ସେମିନାର । ସେତେବେଳେ ମୁଁ ମୋ କର୍ମ କ୍ଷେତ୍ରରେ, ଆଦିବାସୀ ସଂଘ ମାଲକାନଗିରିରେ । ଶେଷ ପର୍ଯ୍ୟନ୍ତ ମୋରି ଉପରେ ହିଁ ଦାୟିତ୍ୱ ପଡ଼ିଲା ଭିତ୍ତି ପ୍ରବନ୍ଧଟିଏ ପ୍ରସ୍ତୁତ କରିବା ପାଇଁ ।

ଏଠାରେ ଉଲ୍ଲେଖଯୋଗ୍ୟ, ୨୦୦୧ରୁ ସରକାରଙ୍କ ଦ୍ୱାରା ଜଙ୍ଗଲରୁ ଆଦିବାସୀ ଜବରଦଖଲ ଉଚ୍ଛେଦ ପଦକ୍ଷେପ ସାରା ଦେଶ ପାଇଁ ଏକ ଜ୍ୱଳନ୍ତ ସମସ୍ୟା ରୂପେ ଦେଖା ଦେଇଛି । ଭୁବନେଶ୍ୱର ଠାରେ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥାଏ ସେଇ ଉଦ୍ଦେଶ୍ୟରେ ।

ମୁଁ ନିବନ୍ଧକାର, ଗବେଷକ, ସମାଜ ତତ୍ତ୍ୱବିତ୍ କିମ୍ବା ଭବିଷ୍ୟ ଦ୍ରଷ୍ଟା ନୁହେଁ । ସେଭଳି କାର୍ଯ୍ୟପ୍ରତି ମୋର ଆଗ୍ରହ କି ଅଭିରୁଚି ମଧ୍ୟ ନାହିଁ । ମୁଁ ଚିରକାଳ ସାମାନ୍ୟ କଳ୍ପନା ପ୍ରବଣ କବିଟିଏ । କିନ୍ତୁ ସଂକଳ୍ପବଦ୍ଧ ଲେଖକ ମାତ୍ରେ ହିଁ ସମାଜର ଆହ୍ୱାନକୁ ଏଡ଼େଇ ଦେବା ସମ୍ଭବ ହୋଇ ନଥାଏ । ଅନେକ ଭାବିଚିନ୍ତି ମୁଁ ଲେଖାଲେଖି ଭିତରେ ପ୍ରବେଶ କଲି ।

ସେମିନାରରେ ଭିତ୍ତି ପ୍ରବନ୍ଧଟି ପଢ଼ି ସାରି ଲକ୍ଷ୍ୟ କଲି, ତାରି ଉପରେ ହିଁ ମୁଖ୍ୟତଃ ଆଲୋଚନା କେନ୍ଦ୍ରୀତ; ପ୍ରଶଂସା ମୁଖର ଓ ପ୍ରଭାବିତ । କାର୍ଯ୍ୟକ୍ରମ ଶେଷରେ ଜଣେ ଅଂଶଗ୍ରହଣକାରୀ ପାଖକୁ ଚାଲିଆସି ଅତ୍ୟନ୍ତ ଅନ୍ତରଙ୍ଗ ଢଙ୍ଗରେ ମୋତେ କହିଥିଲେ- ଲେଖାଟି ବେଶ୍ ଉଚକୋଟୀର, କିନ୍ତୁ ଆପଣ କାହିଁକି ପରିବେଶ ଉପରେ କିଛି ଲେଖିଲେ ନାହିଁ ?

ତାଙ୍କ କଥାରେ ମୁଁ ଟିକେ ଅପ୍ରସ୍ତୁତ ହୋଇପଡ଼ି କହିଥିଲି- ନାହିଁ କାହିଁକି, କିଛି କିଛି ସୂଚନା ତ ରହିଛି, କିନ୍ତୁ ସମସ୍ୟା ହେଲା, ପରିବେଶ ସଂପର୍କରେ ମୋର ଜ୍ଞାନ ବ୍ୟାବହାରିକ । କଣ କରିବି ? ବରଂ ସମ୍ଭବ ହେଲେ ଆପଣ ଲେଖାଟିଏ ଲେଖି ମୋ ଘର ଠିକଣାରେ ପଠାଇବେ । ବର୍ଦ୍ଧିତ ରୂପ ଦେଇ ମୁଁ ଯାକୁ ବହିଟିଏ କରିବାକୁ ଚାହୁଁଛି । କାରଣ ଓଡ଼ିଶାରେ ଏଇ ସମସ୍ୟା ଉପରେ କିଛି ପ୍ରାମାଣିକ ଗ୍ରନ୍ଥ ନାହିଁ । ଯଦି ଠିକ୍ ସମୟରେ ପାଇବି ତେବେ ବହିରେ ରଖିଦେବି । ପରବର୍ତ୍ତୀ ସମୟରେ ସେ ତାଙ୍କ ଲେଖା 'ଜଙ୍ଗଲ ଆଦିବାସୀ ଓ ଜୀବମଣ୍ଡଳ' ପଠାଇଥିଲେ । ମୂଳ ଲେଖାର ସ୍ୱଅର୍ଜିତ ସେଇ ନିବନ୍ଧଟି ଏଥିରେ ସନ୍ନିବେଶିତ ହୋଇଛି ।

ବହିଟି ପାଇଁ ଫେବୃୟାରୀରୁ ଡିସେମ୍ବର ମୋତେ ପ୍ରଚୁର ଖଟିବାକୁ ପଡ଼ିଚି । ସେମିନାର ପରେ ସୃଷ୍ଟିର ପୂର୍ଣ୍ଣତା ପଥରେ ଗଲାବେଳେ ସେ ଦିନର ସେଇ ଶୁଭେଚ୍ଛୁଙ୍କ ମର୍ମୋକ୍ତି ମୋର ବୁଝିବାରେ ଆଉ ଅସୁବିଧା ରହିଲାନି । ସେତେବେଳେ ମୋତେ ଜଳ ଜଳ ଦିଶିଲା ଆହୁରି କେତେକ ଆବଶ୍ୟକୀୟ ଦିଗ- ଯେମିତି- ପ୍ରକୃତି, ପରିବେଶ ପ୍ରଦୂଷଣ, ଜଳଚକ୍ର, ଜଳନୀତି, ନୂଆ ଅର୍ଥନୀତିର କୁପ୍ରଭାବ, କାନ୍‌କୁନ୍ ସମ୍ମିଳନୀ ଏବଂ ନଦୀ ଶୃଙ୍ଖଳ ଇତ୍ୟାଦି । ସେଥିପାଇଁ ମୁଁ ଓଡ଼ିଆର କେତୋଟି ନିବନ୍ଧ ନିର୍ବାଚନ କରି ଆବଶ୍ୟକୀୟ ସଂଯୋଜନ ଅଥବା ବିଯୋଜନ ସହ ଏଥିରେ ସ୍ଥାନୀତ କରିଛି । କିନ୍ତୁ ମୋ ଭିତରେ ସେ ବ୍ୟାପକ ଜିଜ୍ଞାସାକୁ ଜାଗ୍ରତ କରିଥିଲେ ସେ ଦିନର ସେଇ ଅଜଣା ଶୁଭାକାଂକ୍ଷୀ ଆଜିକୁ ସୁହୃଦ୍ ଏବଂ ଆପଣାର ଶ୍ରୀଯୁକ୍ତ ରବି ତ୍ରିପାଠୀ । ତାଙ୍କ ପାଖରେ ମୁଁ ଚିର କୃତଜ୍ଞ । ଏ ପୁସ୍ତକ ପାଇଁ ମୁଁ ତଥ୍ୟ ସଂଗ୍ରହ କରିଛି ଓଡ଼ିଆ ତଥା ଇଂରାଜୀ ସମ୍ବାଦପତ୍ରରୁ ଏବଂ କେତେକ ଓଡ଼ିଆ ପତ୍ରିକାରୁ । ଅବଶ୍ୟ ସମସ୍ତ ଉଦ୍ଧୃତାଂଶ ଚିହ୍ନିତ କରିବା ସମ୍ଭବ ହୋଇ ନାହିଁ, ତାହା ଖେଳେଇ ହୋଇ ରହିଛି । ବେଶି କ୍ଷେତ୍ରରେ ତାର କାରଣ ହେଲା, ବିଶେଷ କରି ଏକାଧିକ ସମ୍ବାଦ କି ଲେଖାର ସମ୍ମିଶ୍ରଣରେ ଯେଉଁଠି ପୂର୍ଣ୍ଣତା ପାଇଛି ତଥ୍ୟଟିଏ କିମ୍ବା ଅନ୍ୟ କାହାରି ଲେଖାର ଅଂଶ ସହ ଯେତେବେଳେ ମୋର ସୃଜନଶୀଳତା କି ଅନ୍ୟ କାହାରି କିଛି ମିଶି ଏକାକାର ହୋଇଛି ଅଥବା ପାଠକୀୟ ଗ୍ରହଣଶୀଳତା ଯେଉଁଠି ବ୍ୟାହତ ହେବାର ଆଶଙ୍କା ରହିଛି- ସେ ସବୁ କ୍ଷେତ୍ରରେ ମୁଁ ସେମାନଙ୍କୁ ଚିହ୍ନିତ କରି ପାରି ନାହିଁ । କେତେକ କ୍ଷେତ୍ରରେ ମୁଁ ଲେଖୁ ଲେଖୁ ମଧ୍ୟ ବିସ୍ମୃତ ହୋଇଛି । ମୁଁ ଏଠାରେ ପରିଷ୍କାର କରି ଦେଉଛି- ଯେଉଁମାନଙ୍କର ଏଥିରେ ଶବ୍ଦଟିଏ ମଧ୍ୟ ରହିଛି- ମୁଁ ସମସ୍ତଙ୍କ ପ୍ରତି କୃତଜ୍ଞ । ଏହା ସତ୍ତ୍ୱେ ମୁଁ ଯଦି କାହା ପ୍ରତି କର୍ତ୍ତବ୍ୟ କରି ପାରି ନଥାଏଁ, ଦୟାକରି ଉଦାର ହେବେ, ଏତିକି ମାତ୍ର ଅନୁରୋଧ ।

ଅନ୍ୟ ପକ୍ଷରେ ସମସ୍ତ ଯତ୍ନଶୀଳତା ସତ୍ତ୍ୱେ ଯଦି ପାଠକୀୟ ରସଗ୍ରହଣରେ ତଥାପି କେଉଁଠି କିଛି ବାଧା ରହି ଯାଇଥିବ, ବନବାସୀର ବ୍ୟାପକ ସ୍ୱାର୍ଥ ଦୃଷ୍ଟିରୁ ତାହା ଘେନା କରିବେ ନାହିଁ ।

ଅସୁମାରି ବୈଚିତ୍ର୍ୟରେ ଭରା ଆଦିବାସୀ ସମାଜ । ସେମାନଙ୍କ ଭିତରେ ରହିଛି ମହାକାବ୍ୟର ବ୍ୟାପ୍ତି । ଅନନ୍ତ ସୃଷ୍ଟିର ଚନ୍ଦାଘର ଏଇ ପ୍ରକୃତି । କେଉଁ ଆଦିମ କାଳରୁ ଆଦିବାସୀ ସମୁଦାୟ ହିଁ ପ୍ରକୃତି ଓ ପରିବେଶର ସବୁଠୁଁ ନିକଟ ଆପଣାର, ରକ୍ଷାକର୍ତ୍ତା ଏବଂ ଜଗୁଆଳୀ । କେହି କାଳରେ ସେମାନଙ୍କ ଦ୍ୱାରା ଜଙ୍ଗଲ ନଷ୍ଟ କି ପରିବେଶ ପ୍ରଦୂଷିତ ହୋଇ ନାହିଁ । ଆଜି ଯେତେବେଳେ ଭିତରକନିକା ଅଭୟାରଣ୍ୟରେ କ୍ଷମତାପନ୍ନଙ୍କୁ ଖୁସ୍ ରଖିବା ସହିତ ବ୍ୟାପକ ବ୍ୟବସାୟିକ ଲକ୍ଷ୍ୟରେ ଖୋଲାଖୋଲି ହରିଣ ଶିକାର ହେଉଛି ଏବଂ ରାଜପୁତ୍ରଙ୍କ ଦ୍ୱାରା ଜଙ୍ଗଲରେ ବେପରୁଆ ପାରିଧି ପର୍ବ ଚାଲିଛି- ସେତେବେଳେ ଆଦିବାସୀ ସେଥିପାଇଁ କେତେ ମାତ୍ରାରେ ଦାୟୀ ?

ପ୍ରକୃତରେ ଆଦିବାସୀ କେତେ ଜଙ୍ଗଲ ଜବର ଦଖଲ କରିଛି ? ଆଉ ସରକାରଙ୍କର ବିଭିନ୍ନ ବିକାଶମୂଳକ କାର୍ଯ୍ୟ ସହ ବେଆଇନ ଭାବେ ସରକାରୀ ପୃଷ୍ଠପୋଷକତାରେ ସମୁଦାୟ କେତେ ଜଙ୍ଗଲ ଧ୍ୱଂସ ପାଇଛି ? ଅରଣ୍ୟ ପର୍ବତର ଅବକ୍ଷୟ ଓ ପରିବେଶ ପ୍ରଦୂଷଣ ପାଇଁ ପ୍ରକୃତରେ କିଏ କେତେ ଦୂର ଦାୟୀ ?

ଏ ଭିତରେ ଉଚ୍ଛେଦ ନୋଟିସ୍ ଲାଗି ଗଲାଣି ଦକ୍ଷିଣ ଓଡ଼ିଶାରେ । ବିଶେଷ କରି କେତେକ ରାଜ୍ୟର ଆଦିବାସୀ ଯେତେବେଳେ ଗୁଳି ମୁହଁରେ ପଡ଼ିଲେଣି; ପୋଷା ହାତୀ, ସଶସ୍ତ୍ର ପୋଲିସ ଓ ଅଗ୍ନିସଂଯୋଗ ଦ୍ୱାରା ଯେତେବେଳେ ବନବାସୀର ପଲ୍ଲୀ ଗାଁ ସବୁ ଧ୍ୱସ୍ତବିଧ୍ୱସ୍ତ ହେବା ସହିତ ଅତ୍ୟନ୍ତ ବର୍ବର ପଦ୍ଧତିରେ ସେମାନଙ୍କୁ ତଡ଼ି ଦିଆଯାଉଛି ଜଙ୍ଗଲରୁ, ସେତେବେଳେ କୌଣସି ସଂକଳ୍ପବଦ୍ଧ ଲେଖକର ଅବଶ୍ୟ ଗୁରୁଦାୟିତ୍ୱ ରହିବ । ଏଇ ଉଚ୍ଛେଦ ଅନ୍ତରାଳରେ ଯେ ଆନ୍ତର୍ଜାତିକ ଷଡ଼ଯନ୍ତ୍ର ବିଦ୍ୟମାନ, ତାହା ଦେଶବାସୀଙ୍କୁ ଅବଗତ କରାଇବା ଏତେବେଳେ ଲେଖକୀୟ କର୍ତ୍ତବ୍ୟ ।

ବ୍ୟାପ୍ତିମୟତାକୁ ଝଲସିତ ବିଭାରେ ଉପସ୍ଥାପିତ କରିବା କବିର କର୍ତ୍ତବ୍ୟ । କିନ୍ତୁ ଚାହିଁଲେ ତ ତାହା ସମ୍ଭବ ହୁଏନି । ପୁଣି ଯେଉଁଠି ବହୁ ଭିନ୍ନ ଦିଗନ୍ତ ସହ ଇତିହାସ ଥାଏ, ତଥ୍ୟ ଥାଏ, ସତ୍ୟ ଥାଏ, ମତାମତ ଥାଏ; ଥାଏ ଏସବୁର ବିଶ୍ଳେଷଣ ସହ ଯଥାଯଥ ବ୍ୟାଖ୍ୟା କରିବାର କଥା- ପୁଣି ସେସବୁର ସଂଯୋଗ ସେତୁ ନିର୍ମାଣ କରିବାର ଦାୟିତ୍ୱବୋଧ- ତାହା ସହଜସାଧ୍ୟ ବ୍ୟାପାର ନୁହେଁ । ତଥାପି ଲେଖାଟି ଯେପରି ତଥ୍ୟଗତ କାରଣରୁ ନିରସ ନିସ୍ତରଙ୍ଗ ଓ ବିରକ୍ତିକର ନ ହୁଏ ସେଥିପାଇଁ ଯତ୍ପରୋନାସ୍ତି ଚେଷ୍ଟା କରିଛି । ଯତ୍ନ କରିଛି, ଉପନ୍ୟାସ ଓ କାବ୍ୟର ବ୍ୟାପ୍ତିରେ ପହଞ୍ଚାଇବା ପାଇଁ ।

ମୁଁ ଅନ୍ୟମାନଙ୍କୁ ନେଇ ଅବଶ୍ୟ ଏଠାରେ ପ୍ରତିଭାତ ହୋଇଛି । କିନ୍ତୁ ସିଦ୍ଧାନ୍ତ ମୋର,

ସଂକଳ୍ପବଦ୍ଧତା ଯାର ଭିତ୍ତିଭୂମି, ଅନିର୍ବାପିତ ଅଗ୍ନିରେ ଯାହା ଅଭିମନ୍ତ୍ରିତ । ଭୁବନେଶ୍ୱର ସେମିନାରରେ ଭିତ୍ତି ପ୍ରବନ୍ଧ ଆଲୋଚନା ହେବା ବ୍ୟତୀତ ଯାର ପାଣ୍ଡୁଲିପି ଆଲୋଚନା କରିଥିଲି ସେପ୍ଟେମ୍ବର ୧୩, ୧୪ ଓ ୧୫- ତିନି ଦିନ ଧରି, ମାଲକାନଗିରିର ଢାମୁଗୁଡ଼ାରେ; ସିମିତ ନୀଳଗିରିର ମୋ ଗାଁ ଗୋହିରାରେ । ଏହା ବ୍ୟତୀତ ଚାରି ଜଣ ବନ୍ଧୁ, ଦୁଇ ଜଣ ଶିକ୍ଷକ ବନ୍ଧୁ, ଜଣେ ଭଣଜା ଏବଂ ମୋ ପରିବାରରେ ସ୍ତ୍ରୀ ଭାଇ କନ୍ୟା ଓ ପୁତ୍ର ସହ ଅନ୍ୟ କେହି କେହି ମଧ୍ୟ ପଢ଼ି ସେମାନଙ୍କ ସୁଚିନ୍ତିତ ମତାମତ ଦେଇଛନ୍ତି ।

ଏ ପୁସ୍ତକ ପାଇଁ ମୁଁ ଯେଉଁମାନଙ୍କୁ ଯାତ୍ରାପଥରେ ଭେଟିଲି, ମୋର ଉପଲବ୍ଧି- ସେମାନଙ୍କ ଭିତରୁ କେତେକ ପ୍ରାକ୍-ଇନ୍‌କିଲାବ୍ ଯୁଗର ଓଡ଼ିଆ ଲେଖକ । ମଣିଷର ଅପ୍ରମିତ ଦୁଃଖ ଓ ଆର୍ତ୍ତିକୁ ଦେଖି ଦେଖି ସେମାନେ କେବେ ବି ଚୁପ୍ ହୋଇ ବସି ପାରିବେ ନାହିଁ । ସେମାନେ ବିପୁଳ ଜନସମୁଦାୟ ସହ ଆଦିବାସୀର ସଂଗ୍ରାମ ପ୍ରତି କେବେ ବି ବିମୁଖତା ପ୍ରକଟ କରିବେ ନାହିଁ । ଓଡ଼ିଆ କ୍ରାନ୍ତିକାରୀ ସାହିତ୍ୟରେ ଆଜି ସେଇମାନେ ହିଁ ଯଥାର୍ଥ ପ୍ରତିନିଧି । ଯେଉଁମାନଙ୍କ ସନ୍ଧାନ କରୁ କରୁ ଜୀବନ ପ୍ରାୟ ଶେଷ ଅବସ୍ଥାରେ ପହଞ୍ଚିଗଲା । ଆଗାମୀ ଦିନରେ ଆମେ ଯେମିତି ସହଯାତ୍ରୀ ହୋଇ ବାଟ ଚାଲି ପାରିବା- ଆଜି ଏତିକି କାମନା । ପୁଣି ଅନ୍ୟ ଯେଉଁ ଲେଖକ ଓ ପତ୍ର-ପତ୍ରିକା; ମୁଁ ଅନୁଭବ କରିଛି- ସମସ୍ତେ ଉଚ୍ଛେଦବର୍ଗଙ୍କ ପାଇଁ ଦରଦୀ ଓ ସମ୍ବେଦନଶୀଳ । ଆଗାମୀ ଦିନରେ ସଂଗ୍ରାମୀ ବନବାସୀ ସେମାନଙ୍କୁ ସାଥିରେ ପାଇବ ମୁଁ ଆଶା ରଖୁଛି ।

ପୁଣି ଏକ ସ୍ୱାଧୀନତା ସଂଗ୍ରାମ ଜରୁରୀ- ଅନେକ ସ୍ୱାଧୀନଚେତା ନାଗରିକ ଆଜି ଏହା ବିଶ୍ୱାସ କଲେଣି, କହିଲେଣି । ଏତେବେଳେ ଓଡ଼ିଶାର ଜଣେ ଗାନ୍ଧିବାଦୀ ସଂଗ୍ରାମୀଙ୍କ ମତାମତ ମୁଁ ଏଠାରେ ଉପସ୍ଥାପିତ କରିବା ଜରୁରୀ ମନେ କରୁଛି । ଏକ ପତ୍ରରେ ସେ ମୋତେ ଲେଖିଥିଲେ 'କାଠିରେ ସର୍କ ବୋଳା ଯାଇ ଧୂପ କାଠି ହୁଏ । ସର୍କ ଅଂଶ ଜଳିଯିବା ପରେ ଶେଷରେ ପୋଡ଼ା କାଟିଟି ହିଁ ଅବଶିଷ୍ଟ ରହିଯାଏ । ଆମ ସ୍ୱାଧୀନତା ସେହି ଅବସ୍ଥାରେ ପହଞ୍ଚିଛି । ତାର ଯେଉଁ ମହକ ଓ ମହତ୍ତ୍ୱ, ସେ ସବୁ ଗତେ, କାଠିର ଶେଷ ପୋଡ଼ା ଅଂଶ ରହିଛି ମାତ୍ର । ଦେଶ ଆଜି ଏକ କଠୋର ସଂଗ୍ରାମକୁ ଅପେକ୍ଷା କରୁଛି । ଇଂରେଜକୁ ସିନା ଆମେ କହିଥିଲୁ- 'ଭାରତ ଛାଡ଼', କିନ୍ତୁ ଆଜିର ଏ ଦୁର୍ନୀତିଗ୍ରସ୍ତ ବିଶ୍ୱାସ ଘାତକ ଦେଶର ରାଜନେତାଙ୍କୁ ଆହ୍ୱାନ- 'ଦୁନିଆ ଛାଡ଼' ।

ଲେଖାଲେଖି ସମୟରେ ମୋତେ ବିଭିନ୍ନ ଦିଗରୁ ସାହାଯ୍ୟ କରିଛନ୍ତି- ଶ୍ରଦ୍ଧାସ୍ପଦ କରୁଣାକର ମଲ୍ଲିକ, ବନ୍ଧୁ ସନାତନ ନାୟକ, ଶୁଭେଚ୍ଛୁ ପ୍ରଦୀପ ସାହୁ, କକା ଭୁଲିନାଥ ରାଉତ,

ସାନଭାଇ ଶ୍ରୀମାନ ଅମରେନ୍ଦ୍ର ଓ ନାତି ଶ୍ରୀମାନ ରତ୍ନାକର ସହ ପରିବାର ଏବଂ ସଂଘର ସାଥୀମାନେ । ଏଇ ଅବକାଶରେ ମୁଁ ସେମାନଙ୍କୁ ସ୍ମରଣ କରୁଛି ।

ମୋର ପ୍ରିୟ କବିବନ୍ଧୁ, ପ୍ରକାଶକ ନିଜେ ପାଣ୍ଡୁଲିପିର କେତେକାଂଶ ଶୁଣିବା ପରେ ଆଗ୍ରହର ସହ ପ୍ରକାଶନର ଦାୟିତ୍ୱ ନେଇଥିବାରୁ ସେଇ ଅଗ୍ରଜ ପ୍ରତୀମ ସଦାଶିବ ଦାଶ ଓ ଭାଉଜ ଶ୍ରୀମତୀ ଅନସୂୟା ଦାଶଙ୍କଙ୍କ ପାଖରେ ମୁଁ କୃତଜ୍ଞ । ସିମିତି କନ୍ୟା ପ୍ରତୀମ ବିଜୟଲକ୍ଷ୍ମୀ (ବୁବୁଲୁ) ପ୍ରୁଫ୍ ଦେଖିବାର ଦାୟିତ୍ୱ ନେଇଥିବାରୁ ତା' ପ୍ରତି ମୋର ଶୁଭାଶିଷ ରଖୁଛି । ଚାରିବର୍ଷର ଧାରାବାହିକ ରୋଗ ମୋର ପୂର୍ବର ଛାନ୍ଦସିକ ସୌନ୍ଦର୍ଯ୍ୟ କିଛିଟା ନଷ୍ଟ କରି ଦେଇଛି । ତଥାପି ଏହା ଯଦି ଆଦିବାସୀ ଓ ବନବାସୀ ସମାଜର ଉଚ୍ଛେଦ ବିରୋଧୀ ସଂଗ୍ରାମରେ ଲାଗିପାରେ ମୋ ଶ୍ରମର ମୂଲ୍ୟ ମୁଁ ପାଇଯିବି ।

ସଂଗ୍ରାମୀ ଅଭିନନ୍ଦନ ସହ

ବିନୀତ

**ସମରେନ୍ଦ୍ର ନାୟକ**

ପହିଲା ଡିସେମ୍ବର ୨୦୦୩

'ସାନ୍ତାଳ ଡ୍ରିଭଙ୍ଗି, ତାଳବଣି,

ଛତ୍ରପୁର, ନୀଳଗିରି-୭୫୬୦୫୮

□□

# ଅକପଟ କୃତଜ୍ଞତା

ଲେଖକ : ରବି ତ୍ରିପାଠୀ, ପ୍ରଫୁଲ୍ଲ ସାମନ୍ତରା, ପ୍ରଫେସର ମନୋରଂଜନ ମହାନ୍ତି, ଅରୁନ୍ଧତୀ ରାୟ, ଦଣ୍ଡପାଣି ମହାନ୍ତି, ଭାଲଚନ୍ଦ୍ର ଷଡ଼ଙ୍ଗୀ, ରମେଶ କୁମାର, ନୌନିଧି କୌର, ଡକ୍ଟର ନିରୂପମା ବଡ଼ପଣ୍ଡା, ମାୟାଧର ନାୟକ, ଡକ୍ଟର ବନ୍ଦନା ଶିବା, ସାହିଦ୍ ଉମର, ହେମନ୍ତ, ସୁକୁମାର ସିକ୍‌ଦାର, ବିଜୟ ଉପାଧ୍ୟାୟ, କୁଳମଣି ଜେନା, ଲିଙ୍ଗରାଜ, ସନ୍ତୋଷ କୁମାର ମହାପାତ୍ର, ଶଶିକାନ୍ତ ନାୟକ, ଶରତ କୁମାର ପଟ୍ଟନାୟକ, ଅମର କୁମାର ଗୌଡ଼, ଦେବାଶିଷ ମିଶ୍ର, ସମରେନ୍ଦ୍ର ଦାସ, ଭାସ୍କର ପରିଛା, ପ୍ରଫୁଲ୍ଲ କୁମାର ଗିରି, ମୃଣାଳ ଏବଂ ମହାଶ୍ୱେତା ଦେବୀ, ମେଧା ପାଟକର, ଡକ୍ଟର ପ୍ରସନ୍ନ ମିଶ୍ର ।

ପତ୍ରପତ୍ରିକା : ସମାଜ, ଧରିତ୍ରୀ, ପ୍ରଜାତନ୍ତ୍ର, ଅନୁପମ ଭାରତ, ସମୟ, ବିକଳ୍ପ ବିଚାର, ଡେରନା, ସ୍ୱାଭିମାନ, ସଂଗ୍ରାମୀ ଏକତା, ଇନ୍‌କିଲାବ, ଆନ୍ଧ୍ର ଓଡ଼ିଶା ସୀମାନ୍ତରେ ନକ୍‌ସାଲ୍‌ବାଦ (ପୁସ୍ତିକା), ଜଙ୍ଗଲ ଖବର, ଆମ ଜଙ୍ଗଲ ଆମର, ଫ୍ରଣ୍ଟ ଲାଇନ୍, ଦି ହିନ୍ଦୁ, ଦି ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍, ନିୟମଗିରି ସୁରକ୍ଷା ସମିତିର ଏକ ପ୍ରଚାର ପତ୍ର, ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘର ଲିଫ୍‌ଲେଟ୍ ଗୁଚ୍ଛ, ଯୋଜନା ।

ଉତ୍ସାହ ପ୍ରଦାନ : ଗଙ୍ଗାଧର ପାଣିଗ୍ରାହୀ, ସୁନାକର ବଳ, ସମିର ସରକାର, ବ୍ରଜେନ୍ଦ୍ର ମହାନ୍ତି ।



# ପୃଷ୍ଠଭୂମି

ଯେଉଁମାନେ ହଜାର ହଜାର ବର୍ଷ ଧରି ଆକ୍ରମଣକାରୀର ଆକ୍ରମଣରେ; ଶାସକ ଶୋଷକର ଅତ୍ୟାଚାରରେ; ବର୍ଣ୍ଣ ବୈଷମ୍ୟ, ଧର୍ମ ବୈଷମ୍ୟ, କର୍ମ ବୈଷମ୍ୟ ତଥା ମର୍ମ ବୈଷମ୍ୟର ବିଷାକ୍ତ ଘୃଣାରେ ଜର୍ଜରିତ ହେବା ସହିତ ପ୍ରକୃତିର ଚରମ ପ୍ରତିକୂଳ ପରିସ୍ଥିତିକୁ ମୁକାବିଲା କରି ତିଷ୍ଠି ରହିଛନ୍ତି, ଚାହିଁ ଦେଲେ ସେମାନେ ନିଶ୍ଚିହ୍ନ ହୋଇ ଯିବେନି । କେତେ ସହସ୍ରବାର ସେମାନଙ୍କୁ ନିକ୍ଷେପ କରାଯାଇଛି ନରକ ଅନ୍ଧାରକୁ; କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବେ ସେଠାରେ ମଧ୍ୟ ସେମାନେ ମାଟି ଧରି ଯାଇଛନ୍ତି, ଫଳ ପୁଷ୍ପରେ ଶୋଭିତ ହୋଇଛନ୍ତି । ସେମାନଙ୍କୁ ଯେଉଁଠିକୁ ଫୋପାଡ଼ି ଦିଆଯାଇଛି- ସେମାନେ ସେଠାରେ ଗଜୁରି ଉଠିଛନ୍ତି; ସମାଜ ବସେଇଛନ୍ତି; ଫସଲ ଫଳେଇଛନ୍ତି ।

ସ୍ୱାଧୀନଚେତା ମଣିଷର ପଥ ଓ ମତ ଚିରକାଳ ରକ୍ତ ରଂଜିତ । ଏଠାରେ ଇତିହାସ ସ୍ୱୀକୃତ ମହାନ ସଭ୍ୟତା ମହେନ୍‌ଜୋଦାରୋ-ହରପ୍ପା କଥା କୁହାଯାଉ । ତାର ସୁରକ୍ଷା ପାଇଁ ଯେଉଁ ଭୟାବହ ଯୁଦ୍ଧ ହୋଇଥିଲା, ସେଥିରେ ଯେଉଁମାନେ ସହିଦ ହେଲେ ସେମାନେ ତ ତରିଗଲେ, କିନ୍ତୁ ଯେଉଁମାନେ ମାତୃଭୂମିର ସ୍ୱାଧୀନତା ରକ୍ଷା ପାଇଁ ସେଇ ଧ୍ୱଂସସ୍ତୂପ ଭିତରୁ ଯୁଦ୍ଧ ବନ୍ଦୀ ହେଲେ, ସେଇମାନଙ୍କୁ ବନେଇ ଦିଆଗଲା ଶୂଦ୍ର, ସଜେଇ ଦିଆଗଲା ଦାସ । ସେମାନଙ୍କୁ ପ୍ରତିଟି ଯୁଦ୍ଧ ଜୟ ସହିତ ଏପରି ନିର୍ମମ ପଦ୍ଧତିରେ ଧର୍ମାନ୍ତରିତ କରାଗଲା; ଏପରି ନିକୃଷ୍ଟ କର୍ମ ସବୁରେ ନିଯୁକ୍ତି ଦିଆଗଲା, ପୁଣି ଏପରି ପଚା-ସଡ଼ା ଅଖାଦ୍ୟ ଖାଇବା ପାଇଁ ବାଧ୍ୟ କରାଗଲା- ମାନବ ଇତିହାସରେ ତାର ତୁଳନା ନାହିଁ । ଅନ୍ୟ ଦିଗରେ ଯେଉଁମାନେ ପରାଜୟ ଓ ବିପର୍ଯ୍ୟୟ ସହିତ ଆହତ ରକ୍ତାକ୍ତ ଶରୀର ନେଇ ଜୀବନ ବିକଳରେ କୌଣସି ମତେ ଖସି ଆସିଲେ ଯୁଦ୍ଧ କ୍ଷେତ୍ରରୁ, ସେମାନଙ୍କ ପାଇଁ ଦୁର୍ଗମ ଅରଣ୍ୟ ପର୍ବତ ହିଁ ହୋଇଗଲା ଗୋପ୍ୟ ଆଶ୍ରୟସ୍ଥଳୀ । ଇମିତି ପ୍ରତିଟି ବୈଦେଶିକ ତଥା ଦେଶୀୟ ଆକ୍ରମଣ ସମୟରେ, ଥରକୁ ଥର । ତା' ସତ୍ତ୍ୱେ ବି ସେମାନେ ଅରଣ୍ୟର ଫଳମୂଳ ଖାଇ, ଝରଣାର

ପାଣି ପିଇ ଦେହ ଛପା ଦେଉଁ ଦେଉଁ ହିଁ ପ୍ରତିପକ୍ଷ ସହ ତାଳ ରଖି ପୁଣି ପୁଣି ଅଣ୍ଟା ଭିଡ଼ିଲେ; ଜଙ୍ଗଲ ସଫା କଲେ; ମାଟି ତାଡ଼ିଲେ, ପଥର ଭାଙ୍ଗିଲେ ଏବଂ ଅରଣ୍ୟ-ପର୍ବତର ଢିପ ଖମାକୁ ସଜେଇ ଦେଲେ ସୁବର୍ଣ୍ଣ ସମତଳ । ଆଶ୍ଚର୍ଯ୍ୟ, ଠିକ୍ 'ଖେତି' ପାଚିଲା ବେଳକୁ ସୁଯୋଗ ଉଣ୍ଡି ସେଠି ପୁଣି ପହଞ୍ଚିଗଲେ ଦସ୍ୟୁମାନେ; ତାଙ୍କ ସହ ଲଢୁ ଲଢୁ ଜୀବନ ଗଲା; କଳା-କନା ବୁଲିଲା; - ଶେଷରେ ନିରୁପାୟ ହୋଇ ସେମାନେ ହଟିଗଲେ ଆହୁରି ଦୁର୍ଗମ ଅରଣ୍ୟକୁ; ଯାହାର ହିସାବ ନାହିଁ, ଇତିହାସ ନାହିଁ । ସେଇ ଲଢୁଥିବା, ହଟୁଥିବା ପୁଣି ପ୍ରତିରୋଧ ଗଢୁଥିବା ଅଦମ୍ୟ ପ୍ରତିପକ୍ଷ ମାନଙ୍କୁ କୁହାଗଲା ମ୍ଲେଚ୍ଛ, ପିପାଚ୍ଛ, ଅସୁର, ରାକ୍ଷସ, ଅନାର୍ଯ୍ୟ ଓ ଆଦିବାସୀ । ଘୋଷଣା କରାଗଲା ସେମାନେ ଅମଙ୍ଗଳ, ସେମାନେ ଅସଭ୍ୟ, ବର୍ବର, ଭ୍ରଷ୍ଟ; ସେମାନେ ବଧ୍ୟ । ସଭ୍ୟତାର କ୍ରୁର ଚାବୁକ ବସିଲା ସେଇ ଦାସ ଓ ଆଦିବାସୀଙ୍କ ଉପରେ । ପ୍ରଗତିର ରଥ ଟାଣୁ ଟାଣୁ ହିଁ ସେଇମାନେ ଆଜି ପର୍ଯ୍ୟନ୍ତ ଚାଲି ଆସିଛନ୍ତି ।

ଅନ୍ୟ ଦିଗରେ ଏଇ କଥାକଥିତ ସଭ୍ୟ ମଣିଷ ମାନେ ହିଁ ଯୁଗ ଯୁଗ ଧରି ସେମାନଙ୍କର ପିଛା କରି ଛୁଟିଛନ୍ତି । ଯୁଗକୁ ଯୁଗ ବିଭିନ୍ନ ବାଗରେ ସେମାନଙ୍କୁ ନାକ ପୋଛିବାର ତର ଦେଇ ନାହାନ୍ତି; ଷଡ଼ଯନ୍ତ୍ରର ଯନ୍ତା ବସାଇ ଜନ୍ତୁ ଜାନୁଆର ପରି ଧରି ମନଇଚ୍ଛା ସେମାନଙ୍କୁ ବଳି ଦେଇଛନ୍ତି । ସେମାନଙ୍କର ଜଙ୍ଗଲ-ଜମି ଓ ଜଳକୁ ଧାରାବାହିକ ଆକ୍ରମଣ କରି ତାହା ଲୁଣ୍ଠନ କରିଛନ୍ତି ଏବଂ ତାଙ୍କୁ ଧ୍ୱଂସ କରି ଆସିଛନ୍ତି । ଆଜିକୁ ଏହା ସ୍ପଷ୍ଟ ଯେ, ଦଳିତ ଓ ଆଦିବାସୀ ଏକ କାଳଜୟୀ ବୃକ୍ଷର ଦୁଇ ଶାଖା । ଏଇ ମାଟିର ସେମାନେ ଆଦି ମାନବ; ସେମାନଙ୍କ ବଂଶଲତାର ମୂଳ ଏକ, ଅଭିନ୍ନ; ସେମାନେ ମୂଳ ଭାରତୀୟ ।

ଦାସର ଜୀବନ, ଆଦିବାସୀର ଜୀବନ ନେଇ କେତେବେଳେ ବା ବେଦ-ଉପନିଷଦ-ପୁରାଣ କି ଇତିହାସ ଲେଖା ଯାଇପାରିବ, କିଏ ବି ଲେଖିବ ?? ଏଠି ଯାହା କୁହାଯାଉଛି ତାହା ପୁରାଣରେ ଥିବା କଥା; ଇତିହାସର ବାସ୍ତବ ବିଶ୍ଳେଷଣ । ଏକଦା ଅରଣ୍ୟ ବେଷ୍ଟିତ ଖାଣ୍ଡବପ୍ରସ୍ଥ (ପରବର୍ତ୍ତୀ ସମୟରେ ପାଣ୍ଡବ ମାନଙ୍କ ରାଜଧାନୀ ଇନ୍ଦ୍ରପ୍ରସ୍ଥ ଏବଂ ଏବକୁ ଦିଲ୍ଲୀ)ରେ ବସବାସ କରୁଥିଲେ ନିଷାଦମାନେ । ତାହା ହୋଇ ନଥିଲେ ନିଷାଦ ପାଞ୍ଚ ଭାଇ ଓ ତାଙ୍କ ମା'କୁ ପାଣ୍ଡବ ମାନେ ନିଜର ଜୀବନ ରକ୍ଷା ପାଇଁ ଜତୁ ଗୃହରେ ପୋଡ଼ି ମାରିଥାନ୍ତେ କିପରି ? କିନ୍ତୁ ସେଇ ନିଷାଦ ମାନେ ଆଜି ରାଜଧାନୀ ଦିଲ୍ଲୀଠାରୁ କେତେ ଦୂରରେ ? ସିମିତି ମୁମ୍ବଇ ଓ ଚେନ୍ନାଇର ସାଗରତଟରେ ଜୀବିକା ନିର୍ବାହ କରୁଥିବା ନୁଳିଆ (କୈବର୍ତ୍ତ) ଆଜି କେଉଁଠି ? ସେଇମିତି ସୂତାନଟୀର ତନ୍ତୀ ଓ ଗାଙ୍ଗେୟ ଉପତ୍ୟକାର ଘାସ କଟା ମୂଳିଆ ଆଜି ମହାନଗରୀ କୋଲକତା ଠାରୁ କେତେ ଦୂରରେ ? ସମିତି ପ୍ରାଚୀନତମ ସହର ବନାରସ ଠାରୁ ପାଟନା/ ହାଇଦ୍ରାବାଦରୁ ଲକ୍ଷ୍ନୌ/ଉଜ୍ଜୟିନୀ ଠାରୁ ଗୁଆହାଟୀ/ ସେଠୁ ଜାଆଁଳ ନଗର

ଆମର ଏଇ କଟକ-ଭୁବନେଶ୍ୱର; ସବୁଠିକାର ଇତିହାସ ପ୍ରାୟ ଏକାପରି । ଆଉ ଜୟପୁର, କୋରାପୁଟ, ବାରିପଦା, କେନ୍ଦୁଝର, ସୁନ୍ଦରଗଡ଼, କଳାହାଣ୍ଡି, ଫୁଲବାଣୀ, ଗଜପତି କି ମାଲକାନଗିରିର ଇତିହାସ ଚାହିଁଲେ ତ ଜଳ ଜଳ ଦିଶିବ ।

ଏଠି କୁହାଯାଇ ପାରିବ ମହାପୁରୁ ନୀଳ ମାଧବଙ୍କ କଥା । ତହିଁର ଅନ୍ତର୍ନିହିତ ସତ୍ୟ କଣ, ବୌଦ୍ଧିକ ବିଚାର କ'ଣ ? ବିଭିନ୍ନ ଘଟଣାବଳୀ ବିଶ୍ଳେଷଣ କଲେ କେଉଁ ସତ୍ୟ ବାହାରି ଆସେ ଆଲୋକକୁ ? ଏହା କଣ ସତ୍ୟ ନୁହେଁ, ଦୁର୍ଗମ ପାହାଡ଼- ଅରଣ୍ୟ ଭିତରେ ଶାନ୍ତିରେ ବସବାସ କରୁଥିବା ଶବର ରାଜ୍ୟ ଉପରେ ତାହା ଥିଲା ଆର୍ଯ୍ୟ ରାଜା ଇନ୍ଦ୍ର ରଥ (ଇନ୍ଦ୍ରଦ୍ୟୁମ୍ନ)ଙ୍କର ବର୍ବର ଆକ୍ରମଣ ? ସେ ଯୁଦ୍ଧରେ କେତେ ଯେ ଶବର ବୀର ପ୍ରାଣପାତ କରିଥିଲେ, କେତେ ଯେ ଶବର ରମଣୀ ଧର୍ଷିତା ହୋଇଥିଲେ ତାର କଣ ଇୟତ୍ତା ଅଛି ? ଶେଷରେ ବିଜୟର ସ୍ମାରକୀ ସ୍ୱରୂପ କୋଟ ସମଲାଇର ଗୋପ୍ୟ ନୀଳକନ୍ଦରାରୁ ପୂର୍ବସାଗର ତଟକୁ ଟଣା ହୋଇଥିଲେ ତନ୍ତ୍ରଦେବତା ନୀଳ ମାଧବ; ଆମର ଏଇ ଜଗତନାଥ ଜଗନ୍ନାଥ ।

ଶାସକ ଶ୍ରେଣୀ ଚିରକାଳ କ୍ରୂର କପଟୀ ଓ ଷଡ଼ଯନ୍ତ୍ରୀ । ତାଙ୍କ ବର୍ବରତା ଓ ଧୂର୍ତ୍ତାମୀର କୌଣସି ଅନ୍ତ ନାହିଁ । କିନ୍ତୁ କେତେ ଚତୁରତାର ସହ ସମସ୍ତ ବର୍ବରତା ଉପରେ ସେମାନେ ଚଢ଼ାଇ ଆସିଛନ୍ତି 'ମେକି ଶାନ୍ତି'/ 'ଅସମ-ସାମ୍ୟ'/ ଏକତରଫା ଦେଶ ପ୍ରେମ ତଥା ଜବରଦସ୍ତ-ସମନ୍ୱୟର ସୁନା ଜରି । ସତେ କି ସମନ୍ୱୟର ଅର୍ଥ ଖାଦ୍ୟ-ଖାଦକର ପ୍ରେମ ବନ୍ଧନ । ସେମାନେ ଯେତେବେଳେ ଯାହା କରିଛନ୍ତି, ବଳ ପ୍ରୟୋଗ ମାଧ୍ୟମରେ ହିଁ ତା' ଉପରେ ସେମାନଙ୍କ ରାଜନୀତି, କୂଟନୀତି, ଅର୍ଥନୀତି, ଧର୍ମନୀତି, ନ୍ୟାୟଶାସ୍ତ୍ର, ସାମାଜିକତା ତଥା ପ୍ରାସଙ୍ଗିକତାକୁ କୌଶଳର ସହ ଏପରି ସଜେଇ ଦେଇଛନ୍ତି ଯେ, ମନେ ହେବ- ସତେ କି ଶୋଷିତ ପ୍ରତିପକ୍ଷ ମାନେ ହେଉଛନ୍ତି ଧର୍ମ, ଯଜ୍ଞ ଓ ସମାଜ ଧ୍ୱଂସକାରୀ/କୁତ୍ସିତ- ଘୃଣ୍ୟ- ବିଭତ୍ସ ଓ ଭୟଙ୍କର । ତେଣୁ ତାଙ୍କ ପାଇଁ ଯେତେବେଳେ ଯାହା ବିଧାନ କରାଯାଇଛି, ସତେ କି ତାହା ଥିଲା ଅପରିହାର୍ଯ୍ୟ, ଭିନ୍ନ ମାର୍ଗ ନଥିଲା । ଏଇ ବିଚାରରେ ଆସିଛି ହିରଣ୍ୟ କଶିପୁ- ଜଳନ୍ଧର କଥା/ ବଳୀ ଓ ବାଳୀ କଥା/ ରାବଣ-ଶମ୍ଭୁକ ମୁନି କଥା/ ଏକଲବ୍ୟ ଓ ଚାର୍ବାକ କଥା- କେତେ ନାହିଁ କେତେ କଥା- ତାର କି ଇୟତ୍ତା ଅଛି ? ବୈଦିକ ଯୁଗରୁ ଏଯାଏଁ ଲିପିବଦ୍ଧ ରହିଛି ବୋଲି ଯାହା ସମଗ୍ର ସମାଜ ଜୀବନକୁ ପ୍ରଭାବିତ କରିଆସିଛି- ସେ ସବୁ ଶାସକ-ଶୋଷକର କଥା- ସେଇ ମାନଙ୍କ ବେଦ-ପୁରାଣ ଓ ଇତିହାସ । ତାହା କେବେ ବି ଶୋଷିତ, ଅତ୍ୟାଚାରିତ, ସଂଗ୍ରାମୀ ମଣିଷର କଥା କି ଗାଥା ନୁହେଁ, ନୁହେଁ ଇତିହାସ । ଅନ୍ୟ ଦିଗରେ ଚାର୍ବାକ ବା କବୟତ୍ରୀ ସାଫୋଙ୍କ ଭଳି ଯେଉଁମାନେ ବି କାଁଭାଁ କେବେ କେମିତି ଶୋଷିତ-ନିର୍ଯାତିତଙ୍କ ସପକ୍ଷରେ ଲେଖିଛନ୍ତି, ସେସବୁ ହୁଏତ ନଷ୍ଟ କରି ଦିଆଯାଇଛି କିମ୍ବା

ବିକୃତ କରି ଦିଆଯାଇଛି ଉଦ୍ଦେଶ୍ୟ ମୂଳକ ଭାବେ । ନ ହେଲେ ସଭ୍ୟତାର ଶୀତଳ ଘରକୁ ସେ ସବୁ ପୋପାଡ଼ି ଦିଆଯାଇଛି ଚତୁରତାରେ ଅଦରକାରୀ ସାବ୍ୟସ୍ତ କରି ।

ଦ୍ରାବିଡ଼ ଓ ଆର୍ଯ୍ୟ ସଭ୍ୟତାର ଅନେକ ପୂର୍ବରୁ ଆଦିବାସୀ ମାନେ ହିଁ ଏଇ ବିସ୍ତୃତ 'ଜମ୍ବୁଦ୍ୱୀପ'ରେ ସେମାନଙ୍କର ଆଦି ସଭ୍ୟତାର ଉନ୍ମେଷ ଘଟାଇଥିଲେ । ସେମାନେ ଏଠିକାର ଆଦିମାନବ, ଭୂମିପୁତ୍ର । ଏହା ଚୂଡ଼ାନ୍ତ ଭାବେ ସତ୍ୟ ବୋଲି ତ ଆଦିବାସୀ ସଂସ୍କୃତି, ଧର୍ମ ଧାରା ତଥା ସାମାଜିକତାର ପ୍ରଭାବ ପରବର୍ତ୍ତୀ ସମସ୍ତ ଆକ୍ରମଣକାରୀଙ୍କ ସଭ୍ୟତା ନିର୍ମାଣର କ୍ରିୟା ପ୍ରକ୍ରିୟା ଉପରେ କିଛି ନା କିଛି ରହିଛି । ଅର୍ଥାତ ତାହା ସେମାନେ ମାନି ନେଇଛନ୍ତି କିମ୍ବା ମାନି ନେବା ପାଇଁ ପାଇଁ ବାଧ ହୋଇଛନ୍ତି । ତାର ପ୍ରମାଣ ହେଲା- କେବଳ ନୀଳ ମାଧବ ନୁହନ୍ତି, ଶିବ ଶକ୍ତି ଠାରୁ ତାହା ଗୟାସୁର ପର୍ଯ୍ୟନ୍ତ ବ୍ୟାପକ । ଅନ୍ୟ ପକ୍ଷରେ ସେମାନେ ଯେ ଏ ଯାକେ ଆଦିବାସୀକୁ ଧ୍ୱଂସ କରିବା ପାଇଁ ଲାଗିଚନ୍ତି, ତାର କାରଣ ହେଲା- ଆଦିବାସୀ ହେଉଛି ଭାରତୀୟ ଶାସକଚକ୍ରର ସର୍ବ ପୁରାତନ ପ୍ରତିରୋଧକାରୀ ପ୍ରତିପକ୍ଷ । ଯୁଗକୁ ଯୁଗ ମରଣ ଆଘାତ ଦ୍ୱାରା ସେମାନେ ରକ୍ତ ବନ୍ୟା ବୁହାଇ ଦେବା ଭିତରେ ସାମୟିକ ଏମାନଙ୍କୁ ହଟାଇ ଦେଇଛନ୍ତି ସତ, କିନ୍ତୁ ସାମୂହିକ ଭାବେ କେବେ ବି ପଦାନତ କି ନିଶ୍ଚିହ୍ନ କରି ପାରି ନାହାନ୍ତି । ଭାରତୀୟ ସଭ୍ୟତା କେତେବେଳେ ବି ବଂଧୁତ୍ୱପୂର୍ଣ୍ଣ ଭାବେ ସମନ୍ୱୟର ସଭ୍ୟତା ନୁହେଁ । ଏ ସମନ୍ୱୟ ଚିରକାଳ ଆଦିବାସୀ, ଦଳିତ (ଶୂଦ୍ର) ତଥା ସମଗ୍ର ଶୋଷିତ ସମାଜ ପାଇଁ ଶାସକ ଶ୍ରେଣୀର ବଳ ପ୍ରୟୋଗର ସମନ୍ୱୟ । ଏହା ଚରମ ପ୍ରତାରଣାର ଏକ ଉଦ୍ଦେଶ୍ୟମୂଳକ ତତ୍ତ୍ୱ । ଯୁଗେ ଯୁଗେ ସର୍ବଗ୍ରାସୀ ଶଇତାନମାନେ ଆଦିବାସୀକୁ ଗ୍ରହଣ କରି ନାହାନ୍ତି / କେବେ ବି କରିବେ ନାହିଁ ।

ଆଦିବାସୀମାନେ ନଦୀ କୂଳିଆ ଉର୍ବର ସମତଳ ଅଂଚଳରେ ପ୍ରଥମେ ଯେଉଁ ଆଦିମ ସଭ୍ୟତା ବସେଇଥିଲେ ତାହା ଧ୍ୱସ୍ତବିଧ୍ୱସ୍ତ ହୋଇଥିଲା କ୍ରୁର ବୈଦେଶିକ ଆକ୍ରମଣରେ । ଥରେ ନୁହେଁ, ଥରକୁ ଥର । ଶେଷରେ ନିରୁପାୟ ହୋଇ ଆତ୍ମରକ୍ଷା ତଥା ଅସ୍ତିତ୍ୱ ରକ୍ଷା ପାଇଁ ସେମାନେ ହଟି ଆସିଥିଲେ ଦୁର୍ଗମ ପାର୍ବତ୍ୟ ଅଂଚଳକୁ । ସେଠାରେ ଯଥାସମ୍ଭବ ନିଜକୁ ଗୋପନ ରଖି ସେମାନେ ନିଜର ସମାଜ ଜୀବନ ପ୍ରତିଷ୍ଠା କରିଥିଲେ, ତାହା ଦୃଢ଼ମୂଳ କରି ତାର ବିସ୍ତାର ଘଟେଇଥିଲେ । ସତ୍ୟ ହେଲା, ଜଙ୍ଗଲ ହିଁ ଆଦିବାସୀର ଜୀବନ- ଜୀବିକାର ମୂଳ ଉତ୍ସ ଏବଂ ସେଇ ଆଧାର ଶିଳା ଉପରେ ହଜାର ହଜାର ବର୍ଷ ଧରି ଆଦିବାସୀ ସମାଜ ତିଷ୍ଠି ରହିଛି । ଅରଣ୍ୟ-ପର୍ବତ ହିଁ ଆଦିବାସୀର ଜନନୀ-ଜନ୍ମଭୂମି । ତା' କୋଳରେ ତାକୁ ଶାନ୍ତି ମିଳେ, ବରାଭୟ ମିଳେ । ଚିରକାଳ ସିଏ ତାର ରକ୍ଷାକବଚ । ଅରଣ୍ୟ ଭିତରେ ତାର ସଭ୍ୟତା-ସଂସ୍କୃତି/ଅରଣ୍ୟ ଭିତରେ ତାର ଖାଦ୍ୟ-ପାନୀୟ/ଅରଣ୍ୟ ଭିତରେ ତାର ଶିକାର-

ସ୍ୱପ୍ନ-ନଦୀ ଓ ଝରଣା/ଅରଣ୍ୟ ଭିତରେ ତାର ପ୍ରେମ-ପ୍ରଣୟ-ନାଚ-ଗୀତ/ଅରଣ୍ୟ ଭିତରେ ତାର ଫୁଲ ଓ ପଥର ମାଳି/ଅରଣ୍ୟ ଭିତରେ ତାର ଆଜି-ଦାଦି, ସେ ନିଜେ, ତାର ଭ୍ରୂଣ ଏବଂ ଭବିଷ୍ୟତ । ଆଦିବାସୀର ତିନି କାଳର କଥା ସେଇ ଅରଣ୍ୟ ଗର୍ଭରେ । ଇମିତିକି ରୋଗର ନିଦାନ ମଧ୍ୟ ସେ ଖୋଜି ପାଏ ପାହାଡ଼ ପର୍ବତରୁ । ବିଭିନ୍ନ ଚେର-ମୂଳ-ପତ୍ର-ଛାଲି, ଅଠା ଓ ଗୁଳ୍ମରୁ ତିଆରି ଔଷଧରେ ସେ ଆପଣାକୁ ରୋଗମୁକ୍ତ କରିଥାଏ । ପଥର ଓ ଦାରୁକୁ ସେ ଦେବତା ସଜାଇ ଦିଏ ତାରି ଭିତରେ । ଆଦିବାସୀ ବାଧ୍ୟତାରେ ନପଡ଼ିଲେ ବାହ୍ୟ ଦୁନିଆ ସହ ସଂପର୍କ ରଖିବାକୁ ବାହାରି ନଥାଏ । ସତ କହିଲେ, ତଥା କଥିତ ସଭ୍ୟ ଦୁନିଆ ପ୍ରତି ଆଦିବାସୀର ଚିରକାଳର ଘୃଣା-ଅବଜ୍ଞା-ଅନାସ୍ଥା ଓ ଆଶଙ୍କା । ନ ହେଲେ ଏଇ ଶାସକ ଗୋଷ୍ଠୀଙ୍କୁ ସେମାନେ କାହିଁକି 'ଦିକୁ' ଓ 'ଘାଟିଡ଼ିଆଁ' ବୋଲି ସଂବୋଧନ କରନ୍ତେ ? ଏହା ଏପରି ଘୃଣାବାଚକ ଶବ୍ଦ ଯାହାର ଗଭୀରତା କେହି କାଳରେ ମାପି ହେବନି ।

ଆଦିବାସୀ ସମାଜ କାଳ କାଳ ଧରି ନିଜକୁ ଯଥା ସମ୍ଭବ ଗୋପନ ରଖି ଆସିଛି ଅତ୍ୟାଚାରୀ ଠାରୁ । ସେଥିପାଇଁ ଆର୍ଯ୍ୟ, ପଠାଣ ଓ ମୋଗଲ ଅମଳ ଡେଇଁ ଭାରତରେ ଏପରି କେତେକ ଆଦିବାସୀ ଅଂଚଳ ଥିଲା, ଯାହା ବ୍ରିଟିଶ ଫରାସୀ ଆଗମନ ପର୍ଯ୍ୟନ୍ତ ଥିଲା ଅନାବିଷ୍କୃତ । ପ୍ରକୃତି କୈନ୍ଦ୍ରିକ ସାମାଜିକ ଜୀବନରେ ସେ ତାର ନିଜସ୍ୱ ଶ୍ରମ ଓ ସ୍ୱପ୍ନ / ନିଜସ୍ୱ ନିୟମ-କାନୁନକୁ ନେଇ ଏକ ପ୍ରକାର ଆତ୍ମନିୟନ୍ତ୍ରଣ ଶାସନ ପଦ୍ଧତି ଚଳାଇ ଆସିଥିଲା/ ଚଳାଇ ଚାଲିଛି ।

ବେଦର ଅନ୍ୟନାମ ସିନା 'ଶ୍ରୁତି' । କିନ୍ତୁ ସତ ହେଲା, ଆଜି ଯାଏ ଆଦିବାସୀ ଲୋକ ସାହିତ୍ୟ 'ଶ୍ରୁତି' ହୋଇ ହିଁ ବଂଚି ରହିଛି । ଚିରକାଳ ଆଦିବାସୀ କବିମାନେ ଆଶୁ କବି । ବିନା ବର୍ଣ୍ଣମାଳାରେ ସେମାନେ ମୁହେଁ ମୁହେଁ ଗୀତ ବାନ୍ଧନ୍ତି । ସେ ଗୀତରେ ନାରୀ-ପୁରୁଷର ବର୍ଣ୍ଣମୟ ପ୍ରେମ-ପ୍ରଣୟ/ଅରଣ୍ୟ-ପର୍ବତ ସହ ବିପୁଳ ପ୍ରକୃତି ପ୍ରତି ଅପୂରନ୍ତ ମମତା ଓ ଆରାଧନା, ଭୟ ଏବଂ ଭକ୍ତି/ ସେଥିରେ ଅତ୍ୟାଚାରୀ ପ୍ରତି କେତେ ବାଗରେ ବ୍ୟଙ୍ଗ-ବିଦ୍ରୁପ, ଆହ୍ୱାନ ଓ ଛାୟାଯୁଦ୍ଧ । ସେ ଗୀତରେ ଆଦିବାସୀ ଫୁଟି ଉଠିଥାଏ ତାର ନିଜସ୍ୱ ବିଭାରେ, ବୁଝି ପାରିଲେ ବଂଧୁ ମୁଗ୍ଧ ହୋଇଯିବ, ଶତ୍ରୁ ଥରି ଉଠିବ ନିମିଷକରେ । ସେ ଗୀତ ପୂର୍ବ ପୁରୁଷ ପାଖରୁ ଗଡ଼ି ଆସେ ଉତ୍ତର ପୁରୁଷ ଭିତରକୁ । ସେ ସଂଗୀତ ଜୀବନ୍ତ ହୋଇ ରହେ ଧାଂଡ଼ା-ଧାଂଡ଼ିର ପଦଛନ୍ଦରେ, ସୁଲଳିତ କଣ୍ଠରେ ଏବଂ ବାଦ୍ୟ-ବାଜଣାର ଅପୂର୍ବ ରାଗ ରାଗିଣୀରେ ।

କିନ୍ତୁ ମହାକାଳର ଗତି ଅତି ବିଚିତ୍ର । ବୁଝିଲା ଭଳି କହିଲେ- ଆଦିବାସୀ ସମାଜ ମଧ୍ୟ ସମଗ୍ର ମାନବ ସଭ୍ୟତାର ଏକ ଅଂଶ । ଯେଉଁଠି ଶାସକ ଓ ଶୋଷିତ ଏକାଠି ସହାବସ୍ଥାନ

କରିଥାନ୍ତି । ସେଇଥିପାଇଁ ଶକ୍ତିଶାଳୀ ଆଁ ସବୁବେଳେ ଦୁର୍ବଳକୁ ଗିଳି ପକାଇଛି । ଏକ ସମୟରେ ଯେଉଁ ଦୁର୍ଭେଦ୍ୟ ଅରଣ୍ୟ ପର୍ବତ ଅତ୍ୟାଚାରୀ ଶାସକ ବର୍ଗ ପାଇଁ ମେଘନାଦ ପାଚେରୀ ହୋଇ ଛିଡ଼ା ହୋଇଥିଲା ସମୟ କ୍ରମେ ତାହା ନିଶ୍ଚିହ୍ନ ପଥରେ ଚାଲିଛି । ଯେଉଁ ଅନିତକ୍ରମ୍ୟ ପର୍ବତ; ମାଳ ମେଲେରିଆ ଓ ବାଘ (ବିଭିନ୍ନ ପ୍ରକାର ହିଂସ୍ର ଜନ୍ତୁ)ର ଭୟ ଶାସକ ଶ୍ରେଣୀକୁ ଆଦିବାସୀ ଠାରୁ କିଛିଟା ଦୂରରେ ରଖିବା ପାଇଁ ବାଧ କରିଥିଲା, ତାହା କଣ ଏବେ ଅଛି ? ସଭ୍ୟତାର ଉଗ୍ରତା ସେସବୁ ଚୁର୍ମାର କରି ଚାଲିଛି । ଉନବିଂଶ ଶତାବ୍ଦୀ ଅଧାଅଧି ତେଇଁବା ସହିତ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ କୋରାପୁଟରୁ ଜଙ୍ଗଲ କାଟି ସେ ଟିମ୍ବର ଚାଲାଣ କରି ସାରିଥିଲେ ଆଫ୍ରିକା ମହାଦେଶକୁ । ଆଉ ଆଜିକୁ କୋରାପୁଟର ଜଙ୍ଗଲ ପ୍ରାୟ ଶେଷ । କେତେ ଦିନ କି, ପୂରା ଦୁଇ ଶହ ବର୍ଷ ବି ହୋଇନି । ଏଣେ ରାଷ୍ଟ୍ରୀୟ ଆବଶ୍ୟକତା ତଥା ସହରୀ ସଭ୍ୟତାର କୋଠାବାଡ଼ି ନାଁରେ ପାହାଡ଼-ପର୍ବତ ସବୁ ଚୁନା ହୋଇ ଚାଲିଛି । ଏବେ ସ୍ୱର୍ଣ୍ଣ ଚତୁର୍ଭୁଜ ଜାତୀୟ ରାଜପଥ ଦି'ଧାର (ଚାରି ଲାଇନ୍) କରିବାକୁ ଯାଇ ସରକାର ପାହାଡ଼-ପର୍ବତ ଢିପ-ଡଙ୍ଗର ସବୁ ଖିନ୍‌ଭିନ୍ କରି ତାଡ଼ି ପକାଉଛନ୍ତି । ନୀଳଗିରି ଟାଉନ୍ ପାଖରେ ଥିବା ମିରିଗିଣି ପାହାଡ଼, ପୋଡ଼ାଶୂଳ ପାଖର ପାହାଡ଼ ତଥା ତିନିକୋଶିଆ ଜଙ୍ଗଲ ଭିତରେ ଥିବା ପାହାଡ଼ର ଅବସ୍ଥା ଏବେ ଶୋଚନୀୟ । ସିମିତ ଗତବର୍ଷ ଟାଙ୍ଗି-ଚାନ୍ଦପୁର ଦେଇ ଯାଇଥିବା ୫ ନମ୍ବର ଜାତୀୟ ରାଜପଥରେ ଏକ ବାଇପାସ୍ ରାସ୍ତା କାମ ଆରମ୍ଭ ହୋଇଥିଲା । ଏହି ବାଇପାସ୍ ନିର୍ମାଣ ଯୋଗୁଁ ୭ ହେକ୍ଟର ଜଙ୍ଗଲ ଜମି ନଷ୍ଟ ହେବା ସହ କେତେକ ପରିବାର ବାସ-ଚ୍ୟୁତ ହେଉଥିବାର ଅଭିଯୋଗ କରି ବଳଭଦ୍ର ସାହୁ ନାମକ ବ୍ୟକ୍ତି ହାଇକୋର୍ଟରେ ଜନସ୍ୱାର୍ଥ ମାମଲା ରୁଜୁ କରିଥିଲେ । ଗତ ଡିସେମ୍ବର ମାସ ୧୧ ତାରିଖରେ ହାଇକୋର୍ଟ ଏହି ମାମଲାର ପ୍ରାଥମିକ ଶୁଣାଣି କରି ବାଇପାସ୍ ନିର୍ମାଣ କାର୍ଯ୍ୟକୁ ସ୍ଥଗିତ ରଖିବାକୁ ନିର୍ଦ୍ଦେଶ ଦେଇଥିଲେ । ପରବର୍ତ୍ତୀ ସମୟରେ ଜାତୀୟ ରାଜପଥ କର୍ତ୍ତୃପକ୍ଷ ଏକ ସତ୍ୟ ପାଠ ମାଧ୍ୟମରେ ହାଇକୋର୍ଟଙ୍କ ନିକଟରେ ପ୍ରକାଶ କରିଥିଲେ ଯେ, ଜାତୀୟ ସ୍ୱାର୍ଥ ପାଇଁ ନିର୍ମାଣ ହେବାକୁ ଥିବା ଏହି ବାଇପାସ୍ ଯେଉଁ ୭ ହେକ୍ଟର ଜମିରେ ନିର୍ମାଣ କରାଯାଉଛି, ତାହା ପତିତ ଜମି ଏବଂ ରାସ୍ତା ନିର୍ମାଣ ଦ୍ୱାରା ଜଙ୍ଗଲ ସଂପଦ ନଷ୍ଟ ହେଉନାହିଁ କିମ୍ବା କୌଣସି ବ୍ୟକ୍ତି ବାସଚ୍ୟୁତ ହେଉ ନାହାନ୍ତି । ଏହାପରେ ମାନ୍ୟବର ହାଇକୋର୍ଟ ଜାତୀୟ ସ୍ୱାର୍ଥ ପାଇଁ ଚାଲିଥିବା ଉନ୍ନୟନ ମୂଳକ କାର୍ଯ୍ୟରେ କୋର୍ଟ ହସ୍ତକ୍ଷେପ କରିବା ଅନୁଚିତ ବୋଲି ରାୟ ଦେଇଛନ୍ତି । ଅବସ୍ଥା ଆଜି ଏପରି, ଆସନ୍ତା କାଲିର ପିଲା ବିଶ୍ୱାସ କରିବା କଷ୍ଟକର ହେବ ଯେ, ଦୂରରୁ ପାହାଡ଼-ପର୍ବତ ଚିତ୍ରପଟ ପରି କିପରି ସୁନ୍ଦର ଦିଶୁଥିଲା । ପ୍ରକୃତି ତାର ଅଫୁରନ୍ତ ଗନ୍ତାଘର କିପରି ଭରପୂର ରଖିଥିଲା ସବୁଜ

ଅରଣ୍ୟାନୀରେ । ଆଜି କିନ୍ତୁ ରାଷ୍ଟ୍ର ଘଂଚ ଅରଣ୍ୟ-ପର୍ବତରେ ସମରାସ୍ତ୍ର ଉତ୍ପାଦନର କଳ-କାରଖାନା ସହିତ ଭୟାବହ ଯୁଦ୍ଧ ଘାଟି ସବୁ ନିର୍ମାଣ କରିବାରେ ଲାଗିଛନ୍ତି । ଏସବୁ ପରେ ଆଉ କେତେ ରହିବ କି ଅବଶିଷ୍ଟ । ଆଜି ହିମାଳୟର ନିବିଡ଼ ଅରଣ୍ୟରାଜୀ ମଧ୍ୟ ଶେଷ ଅବକ୍ଷୟ ପଥରେ ଚାଲିଛି । ସେ ସଂପର୍କରେ ଡକ୍ଟର ବନ୍ଦନା ଶିବାଙ୍କ ଲେଖାର ଦୁଇଟି ମାତ୍ର ଉଦାହରଣ ଏଠାରେ ରଖାଯାଉଛି ।

୧. ଉତ୍ତର ପୂର୍ବ ଭାରତରେ ଚେରାପୁଞ୍ଜି ସବୁଠାରୁ ବେଶୀ ଆର୍ଦ୍ର ତଥା ସର୍ବାଧିକ ବୃଷ୍ଟିପାତ ହେଉଥିବା ଏକ ଅଂଚଳ ରୂପେ ସର୍ବବିଦିତ । କିନ୍ତୁ ଉକ୍ତ ଅଂଚଳରେ ଜଂଗଲ ଧ୍ୱଂସ ହେବା କାରଣରୁ ଆଜିକାଲି ସେଠାରେ ପାନୀୟ ଜଳର ସଂକଟ ଦେଖା ଦେଲାଣି ।

୨. ବ୍ୟାପକ ବ୍ୟବସାୟିକ ବନୀକରଣ ଯୋଗୁଁ ହିମାଳୟ ପାଦଦେଶର ପରିବେଶ ସଂକଟାପନ୍ନ ହେବାରେ ଲାଗିଛି । ଏକଦା ଯେଉଁ ଗାଁଗୁଡ଼ିକ ଖାଦ୍ୟ ଶସ୍ୟ ଉତ୍ପାଦନରେ ସଂପୂର୍ଣ୍ଣ ଆତ୍ମନିର୍ଭରଶୀଳ ଥିଲେ ସେଠିକାର ଜଳସ୍ରୋତ ଶୁଷ୍କ ହୋଇଯିବା କାରଣରୁ ସେମାନେ ଖାଦ୍ୟାଭାବର ଶିକାର ହୋଇଗଲେ । ଜଙ୍ଗଲ ଧ୍ୱଂସ ହୋଇଯିବା କାରଣ ସକାଶେ ଏହି ଅଂଚଳର ଭୂସ୍ଖଳନ ଏକ ସାଧାରର ଘଟଣାରେ ପରିଣତ ହୋଇଛି । ୧୯୭୦ରେ ଅଳକାନନ୍ଦା ନଦୀ ଅବରୁଦ୍ଧ ହେବା ସାଂଗକୁ ଏକ ହଜାର କିଲୋମିଟର ଜମି ବୁଡିଗଲା ଏବଂ ବହୁରାସ୍ତା ଓ ବ୍ରିଜ୍‌କୁ ବୋହିନେଲା । ୧୯୭୮ରେ ତଓ୍ୱାଘାଟ ଠାରେ ମଧ୍ୟ ଏକ ବଡ଼ ଧରଣର ଭୂସ୍ଖଳନ ଘଟିଲା । ଏକ ସଂପୂର୍ଣ୍ଣ ପାହାଡ଼ ଭାଗିରଥି ସ୍ରୋତରେ ଧସେଇ ପଡ଼ିଲା । ତା' ଫଳରେ ୪ କିଲୋମିଟର ଓସାରିଆ ଏକ ହ୍ରଦ ସଂପୂର୍ଣ୍ଣ ବିଲୁପ୍ତ ହୋଇଗଲା ।''

ରାଷ୍ଟ୍ର କର୍ତ୍ତୃକ ଏହା ଯେତେବେଳେ ସାରା ଦେଶର ଅରଣ୍ୟ-ପର୍ବତର ଅବସ୍ଥା, ସେତେବେଳେ ବନବାସୀଙ୍କ ଉପରେ ଆକ୍ରମଣ କି ଉଚ୍ଛେଦ ପର୍ବ ଚାଲିଲେ ସେମାନେ କେଉଁଠିକୁ ହଟିଯାଇ ପାରିବେ ? କେଉଁଠି ନିଜକୁ ଆଢୁଆଳ କରି ପାରିବେ ?

୧୯୯୭ରେ ମୋ ଦ୍ୱାରା ଆଦିବାସୀ ଉଦ୍ଦେଶ୍ୟରେ ରଚିତ 'ତୋର ଏଇ ମହାଭାରତ'ର କେତୋଟି ପଙ୍‌କ୍ତି ଆଜିକା ପରିପ୍ରେକ୍ଷୀରେ ଏଠାରେ ଉଦ୍ଧାର କରୁଛି-

ଆଉ ନାହିଁ ଡଙ୍ଗର- କୁକୁଲି
ଚାଖଣ୍ଡେ ଜମି ଖୋଜି
କେଉଁଠିକୁ ବନବାସୀ ହଟିବୁ ?
ଅରଣ୍ୟ ସରିଯାଏ, ପର୍ବତ ସରୁଚି
ଆଉ ହଟିବାର ପଥ ନାହିଁ ବଣୁଆ,

ଆଜି ହଟିବାର ଶେଷ ପାଦେ
ଯାଇଅଛୁ ପହଁଚି
ପର୍ବତ କାନ୍ଥିରେ ପିଠି ତୋର ଲାଗିଚି
ଏ ପାଖରେ ସେ ପାଖରେ
ସାମ୍ନାରେ ମରଣର ଦୁନିଆ ।
କେଉଁଠିକୁ ପଳାଇବୁ
ବଣ ଆଉ ନାହିଁରେ
ପର୍ବତ ସରି ସରି ଗଲାଣି,
ଏଣିକି ଯେ ଏକ ପଥ
ବାଟ ଆଉ ନାହିଁରେ
ହେଲେ ହେବ ମୁକାବିଲା
ନୋହିଲେ ତୁ ଅସହାୟ
ପୋକ-ମାଛି ପଶୁ ପରି ମରିବୁ ।

(ଲାଲ ପତ୍ର ନୂତନ ପୃଥିବୀରୁ ସଂଗୃହୀତ)

## ବ୍ରିଟିଶ ପୂର୍ବ ଭାରତ

ମୂଳତଃ ଜଙ୍ଗଲ ହେଉଛି ଆଦିବାସୀର । ବ୍ରିଟିଶ ଶାସନ ପର୍ଯ୍ୟନ୍ତ ଅରଣ୍ୟ-ପର୍ବତ ଭିତରେ ଆଦିବାସୀ ଅନେକଟା ତାର ସ୍ୱାଧୀନତା ଉପଭୋଗ କରି ପାରୁଥିଲା । ରାଜା-ରାଜୁଡ଼ା ଶାସନରେ ରାଜାଙ୍କୁ ସମସ୍ତ ଜମିର ମାଲିକ କୁହାଯାଉଥିଲା । ଏହା ଥିଲା ରାଜ୍-ଅଧିକାର । କିନ୍ତୁ ଗଉନ୍ତିଆ, ଜମିଦାର, ରାଜାମହାରାଜା କି ସମ୍ରାଟମାନେ ଆଦିବାସୀ ସମାଜର ପ୍ରାକୃତିକ-ଗଢ଼ଣ, ଅର୍ଥନୈତିକ-ପୂନାଦି, ସାଂସ୍କୃତିକ-ବୁନିଆଦି କିମ୍ବା ସାବଲୀଳ-ଜୀବନ ଧାରା ଉପରେ ସେପରି ହସ୍ତକ୍ଷେପ କରୁ ନଥିଲେ । ଅନ୍ୟ ପକ୍ଷରେ ଦୁର୍ଗମତା ମଧ୍ୟ ସାମନ୍ତବାଦ ପାଇଁ ବାଧାର ପାଚେରୀ ହୋଇ ଛିଡ଼ା ହୋଇଥିଲା । ବନବାସୀ ନିଜର ଆବଶ୍ୟକତା ଓ ସାମର୍ଥ୍ୟ ଅନୁସାରେ ଜଙ୍ଗଲ ସଫା କରି ଜମି ତିଆରି କରୁଥିଲା । ସେଥିପାଇଁ ଅବଶ୍ୟ ତାକୁ ଉତ୍ପାଦିତ ଦ୍ରବ୍ୟରୁ କିଛି ଭେଟି ଅଥବା ଖଜଣା ଆକାରରେ ଦେବାକୁ ପଡୁଥିଲା । ଶତ-ସହସ୍ର ବର୍ଷ ଧରି ଆଦିବାସୀ ଅଂଚଳ ତଥା ଗ୍ରାମାଞ୍ଚଳରେ ଏଭଳି ଅବସ୍ଥା ଚାଲୁ ରହିଥିଲା । ପ୍ରକୃତି, ସମାଜ ଓ ସଂସ୍କୃତି ମଧ୍ୟରେ ସଂହତି ରଖି ଜମି, ଜଳ, ଜଙ୍ଗଲ ଏବଂ ଖଣିଜ ପଦାର୍ଥ ଇତ୍ୟାଦି ସେତେବେଳେ ଗୋଷ୍ଠୀ ପରିଚାଳନାଧୀନ ଥିଲା । ବ୍ରିଟିଶ ଆସିବା

ପର୍ଯ୍ୟନ୍ତ ଦେଶୀୟ ରାଜାମାନେ କେବଳ ଆବଶ୍ୟକୀୟ କାଠ, ପଥର ଓ ଜୀବଜନ୍ତୁ ଶିକାର ପାଇଁ ଜଂଗଲକୁ ବ୍ୟବହାର କରୁଥିଲେ । ଅରଣ୍ୟ-ପର୍ବତରେ ସେମାନଙ୍କର କୌଣସି ଅର୍ଥନୈତିକ କାର୍ଯ୍ୟକଳାପ ନଥିଲା ।

ଅମର କୁମାର ଗୌଡ଼ ''ଗୁପ୍ତ ବଂଶୀୟ ରାଜୁତି କାଳରେ ଜଙ୍ଗଲ ସୁରକ୍ଷା ଓ ପରିଚାଳନା ପାଇଁ ପ୍ରଜା ମାନଙ୍କୁ ରକ୍ଷଣା ବେକ୍ଷଣର ଭାର ଦିଆଯାଇଥିଲା । ସେମାନେ ଜଂଗଲ ରକ୍ଷା କରିବା ସହିତ ଚାହିଁଲେ ଧର୍ମ, ଦେବା-ଦେବୀ ଓ ଭଗବାନଙ୍କ ଉଦ୍ଦେଶ୍ୟରେ ସେଠାକାର କିଛି କରି ପାରୁଥିଲେ । କିନ୍ତୁ ଯା ବ୍ୟତୀତ ଅଧିକ କିଛି କରିବାର ନିୟମ ନଥିଲା । କିନ୍ତୁ ୧୬୧୬ ମସିହା ବେଳକୁ ଯେତେବେଳେ ଔପନିବେଶିକବାଦର ଶକ୍ତପଞ୍ଝା ଭାରତରେ ପ୍ରବେଶ କଲା ଏବଂ ବିଶେଷତଃ ୧୮୭୮ ମସିହା ବେଳକୁ ଯେତେବେଳେ ବ୍ରିଟିଶ ସରକାର ନିଜକୁ ଶକ୍ତିଶାଳୀ କରିବା ଲକ୍ଷ୍ୟରେ ଓଡ଼ିଶାର ପଞ୍ଚ ପରମ୍ପରା- ଯଥା କୌଳିକ, ସାମାଜିକ, ଧାର୍ମିକ, ତାନ୍ତ୍ରିକ ତଥା ପାରିବାରିକ ଆଦର୍ଶକୁ ଭାଙ୍ଗି ଦେବା ପାଇଁ ଜଙ୍ଗଲକୁ ସରକାରଙ୍କ ସଂପତ୍ତି ବୋଲି ଘୋଷଣା କଲେ, ସେତେବେଳେ ବନବାସୀ ଓ ପ୍ରକୃତି ମଧ୍ୟରେ ଜବରଦସ୍ତ ଏକ ବାଡ଼ ସୃଷ୍ଟି ହେଲା ।''

## ବ୍ରିଟିଶ ଆସିଗଲେ

ଜଙ୍ଗଲ ଥିଲା ଆଦିବାସୀର । ଆଦିବାସୀ ପାଖରୁ ଜମି ଓ ଜଙ୍ଗଲକୁ ଗଉଁତିଆ ଓ ଜମିଦାର ମାନେ ଦଖଲ କରି ନେଲେ । ସେମାନଙ୍କ ଉପରେ ଥିଲେ ରାଜା । ରାଜାଙ୍କ ଠାରୁ ଏହି ଜମି ଓ ଜଙ୍ଗଲକୁ ବ୍ରିଟିଶ ସରକାର ଦଖଲ କରି ନେଲେ । ଇଂରେଜ ରାଜତ୍ୱ ସମୟରେ ଏହାର ପରିଚାଳନା ବ୍ୟବସ୍ଥାରେ ବ୍ୟାପକ ପରିବର୍ତ୍ତନ ଅଣାଗଲା, ଗୋଷ୍ଠୀର କର୍ତ୍ତୃତ୍ୱ ହ୍ରାସ ପାଇଲା । ଧୀରେ ଧୀରେ ସାମ୍ରାଜ୍ୟବାଦର ଗର୍ଭଆଡ଼କୁ ଚାଲିଲା ଆଦିବାସୀ, ଦଳିତ ତଥା ସାଧାରଣ ଭାରତୀୟର ଜମି ଓ ଜଙ୍ଗଲ । ରାଜସ୍ୱ ବଢ଼େଇବା ଉଦ୍ଦେଶ୍ୟରେ ଲର୍ଡ କର୍ଣ୍ଣୱାଲିସ୍ ୧୭୯୩ ମସିହାରେ ଚିରସ୍ଥାୟୀ ଜମି ବନ୍ଦୋବସ୍ତ ପ୍ରଥା ପ୍ରଚଳନ କଲେ । ଏ ବ୍ୟବସ୍ଥାରେ ଦେଶୀୟ ରାଜା ଓ ଜମିଦାରମାନେ ସ୍ଥାୟୀ ପଟ୍ଟା ପାଇଲେ ଏବଂ ତଦନୁସାରେ ଲୋକମାନଙ୍କୁ ଧାର୍ଯ୍ୟ ଖଜଣା ବଦଳରେ ଜମିର ସ୍ଥାୟୀ ପଟ୍ଟା ପ୍ରଦାନ କଲେ । ଫଳରେ ଚାଲାକ ଚତୁର ଲୋକେ ଆବଶ୍ୟକତା ଥାଉ କି ନଥାଉ ଗୁଡ଼ାଏ ଜମିର ମାଲିକାନା ପାଇବାର ପଥ ଉନ୍ମୁକ୍ତ ହୋଇଗଲା । ସେମାନଙ୍କୁ ସେଇ ଅନୁପାତରେ ବାର୍ଷିକ ଖଜଣା ଦେବାକୁ ପଡ଼ିଲା । ଯାହା ଫଳରେ ଇଂରେଜ ସରକାରଙ୍କ ରାଜସ୍ୱ ବଢ଼ିଲା ।

ଇଂରେଜ ସରକାରଙ୍କ ଜମିଜମା ଆଇନ ଅନୁସାରେ ବ୍ୟକ୍ତିଗତ ମାଲିକାନାରେ ଥିବା

ଜମିକୁ ମଧ ସରକାରଙ୍କର ବୋଲି ଘୋଷଣା କରାଗଲା । ପରେ ପରେ ସମଗ୍ର ଜଙ୍ଗଲ ସମ୍ପଦ ଉପରେ ମଧ ସରକାରଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । ୧୮୫୫ରେ ଡେଲ୍‌ହାଉସୀ 'ଚାଟାର ଅଫ୍ ଇଣ୍ଡିଆନ୍ ଫରେଷ୍ଟ' ନାମରେ ଏକ ଅଧିସୂଚନା ଜାରି କଲେ । ସେଥିରେ ଶାଗୁଆନ ଗଛକୁ ରାଷ୍ଟ୍ର ସଂପତ୍ତି ଭାବେ ଘୋଷଣା କରାଗଲା । ଅନ୍ୟ ଦିଗରେ ୧୮୫୪ରୁ ରେଲ୍ ଲାଇନ୍ ପଡ଼ିଲା । ଫଳରେ କେତେକ ଶିଳ୍ପ ପାଇଁ କଞ୍ଚାମାଲ ଯୋଗାଡ଼ କରିବା ଦରକାର ହେଲା । ଏଇ ପରିପ୍ରେକ୍ଷୀରେ ଜଙ୍ଗଲ ଉପରେ ବ୍ରିଟିଶର ଲୋଲୁପ ଦୃଷ୍ଟି ଆହୁରି ନିବିଡ଼ ହେବାରେ ଲାଗିଲା । ସେମାନେ ବିପୁଳ ଭାରତୀୟ ଜଙ୍ଗଲକୁ ଲୁଟ୍ କରିବା ପାଇଁ ଯୋଜନା କଲେ । ଫଳ ସ୍ୱରୂପ ୧୮୬୪ରେ ବ୍ରିଟିଶ ସରକାର ଜଙ୍ଗଲ ଆଇନ୍ ପ୍ରଣୟନ କରି ସ୍ୱତନ୍ତ୍ର ଭାବେ ଜଙ୍ଗଲ ବିଭାଗ ଗଠନ କରିଥିଲେ । ୧୮୭୮ ମସିହା ବେଳକୁ ବ୍ରିଟିଶ ସରକାର ଓଡ଼ିଶାର ପଞ୍ଚ ପରମ୍ପରାକୁ ଭାଙ୍ଗି ଚୁର୍ମାର କରିଦେଲେ । ଜଙ୍ଗଲ ସଂପୂର୍ଣ୍ଣ ସରକାରୀ ସଂପତ୍ତି ରୂପେ ଘୋଷଣା କରାଗଲା । ୧୮୭୮ରେ ଇଂରେଜ ସରକାର 'ଭାରତୀୟ ଜଙ୍ଗଲ ଆଇନ ୧୮୭୮' ପ୍ରଣୟନ କଲେ । ସେଥିରେ ଜଙ୍ଗଲକୁ ସଂରକ୍ଷିତ ଜଙ୍ଗଲ, ସୁରକ୍ଷିତ ଜଙ୍ଗଲ ଏବଂ ଗ୍ରାମ୍ୟ ଜଙ୍ଗଲ ଏହିପରି ତିନି ଭାଗରେ ବିଭକ୍ତ କରାଯାଇ ଲୋକଙ୍କ ଅଧିକାର ଉପରେ ନାନାବିଧି କଟକଣା ଜାରି କରାଗଲା । ୧୮୮୪ ମସିହାରେ ସେମାନେ ଆହୁରି ଖୋଲା ଖୋଲି ଭାବେ ଜଙ୍ଗଲ ବିଧ୍ୱଂସୀ ନୀତି ପ୍ରଣୟନ କଲେ । ଯାହା ଫଳରେ ଜଙ୍ଗଲଜାତ ଦ୍ରବ୍ୟକୁ ଇଂରେଜ ମାନେ ବ୍ୟବସାୟ ଉଦ୍ଦେଶ୍ୟରେ 'ସାତ ଦରିଆ ତେର ନଈ' ପାରି କରି ବିଦେଶକୁ ବୋହି ନେଇ ଯାଇ ପାରିବେ । ୧୮୯୪ରେ ସେ ଆଇନକୁ ଦୃଢ଼ମୂଳ କରିବା ପାଇଁ ଅନ୍ୟ ଏକ ଜଙ୍ଗଲ ଆଇନ ପ୍ରଣୟନ କରାଗଲା । ସେଥିରେ ଜଙ୍ଗଲ ଉପରେ ଆହୁରି ଅଧିକ ଅଧିକାର ସାବ୍ୟସ୍ତ କରିବା ସହିତ ତାହା ବ୍ୟବସାୟିକ ଭିତ୍ତିରେ ବ୍ୟବହାର କରି କିପରି ରାଜସ୍ୱ ଅଧିକରୁ ଅଧିକ ବଢ଼ାଯାଇ ପାରିବ ତାର ବ୍ୟବସ୍ଥା ରହିଲା । ପରବର୍ତ୍ତୀ ସମୟରେ ଜଙ୍ଗଲ ଆଇନ ୧୯୨୭ ପ୍ରଣୀତ ହେଲା । ସେଥିରେ ରାଷ୍ଟ୍ରର କର୍ତ୍ତୃତ୍ୱ ଆହୁରି କଡ଼ାକଡ଼ି କରାଯାଇ ରେଲ୍‌ପଥ ନିର୍ମାଣ ଉଦ୍ଦେଶ୍ୟରେ ଜଙ୍ଗଲରୁ ମହାମହା ଦ୍ରୁମ କଟାଗଲା । ଲୋକଙ୍କ ଅଧିକାରକୁ ଆହୁରି ସଂକୁଚିତ କରାଗଲା । ''ଆମ ଭାତହାଣ୍ଡି ଉଜୁଡ଼ି ଗଲା । ଧୂଳି ଧୂଆଁରେ ଭରି ଗଲା ଆମ ମାଟି, ଆମ ଆକାଶ ।''

''ଜଙ୍ଗଲକୁ କେହି ମଂଜି ପୋତି ସୃଷ୍ଟି କରି ନାହିଁ କିମ୍ୱା ଜଗୁଆଳି ରଖି ଅଭିବୃଦ୍ଧି ଘଟାଇ ନାହିଁ ।'' ଏହା ପ୍ରକୃତିର ଦାନ । ଅଥଚ ଇଂରେଜ ମାନେ ଯଥେଚ୍ଛ ଭାବେ ଭାରତୀୟ ଜଙ୍ଗଲକୁ ଧ୍ୱଂସ କରି ବ୍ୟବସାୟିକ ଲକ୍ଷ୍ୟରେ ଏହାକୁ ବ୍ୟବହାର କଲେ । ଏହାଦ୍ୱାରା ଅରଣ୍ୟ-ପର୍ବତରେ ଆଦିବାସୀର ଚିରିକାଳର ଅଧିକାର ଉପରେ ଖୋଲା ଖୋଲି ଆଘାତ କରାଗଲା ।

ଇଂରେଜ ସରକାରଙ୍କର ଏଇ ଜନସ୍ୱାର୍ଥ ବିରୋଧୀ ଆଇନ ବିରୋଧରେ ମହାରାଷ୍ଟ୍ରବାସୀ ମହାତ୍ମା ଜ୍ୟୋତିବାଫୁଲେଙ୍କ ଭଳି ସମାଜ ସଂସ୍କାରକମାନେ ଉତ୍ତୋଳନ କରିଥିଲେ । ସିଦ୍ଧ-କାନ୍ହୁ, ତାମା ଦୋରା, ବିର୍ସା ମୁଣ୍ଡା ତଥା ଆଲୁରୀ ସୀତାରାମ ରାଜୁଙ୍କ ଭଳି ବହୁ ଅଦମ୍ୟ ଆଦିବାସୀ ନେତା ପ୍ରତିରୋଧ ସଂଗ୍ରାମରେ ନେତୃତ୍ୱ ନେଇ ସହିଦ ହୋଇଥିଲେ । ଇଂରେଜ ମାନଙ୍କର ସେଇ କଳା ଜଂଗଲ ନୀତିକୁ ବିରୋଧ କରିବା ପାଇଁ ସେତେବେଳେ ସ୍ୱାଧୀନତା ଆନ୍ଦୋଳନର କାର୍ଯ୍ୟସୂଚୀରେ ମଧ୍ୟ ତାହା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଯେତେବେଳେ ଭାରତର ଆଦିବାସୀମାନେ ଜଙ୍ଗଲ ଉପରେ ସେମାନଙ୍କ ଅଧିକାର ପାଇଁ ବ୍ରିଟିଶ ରାଜ୍ ବିରୋଧରେ ଲଢ଼ି ସହିଦ ହେଉଥିଲେ, ସେତେବେଳେ ଏସିଆ ମହାଦେଶର ଅନ୍ୟାନ୍ୟ ଦେଶର ମୂଳ ଅଧିବାସୀଙ୍କ ସହିତ ଆଫ୍ରିକା, ଅଷ୍ଟ୍ରେଲିଆ ତଥା ଆମେରିକାର ମୂଳ ଆଧିବାସୀ ମାନେ ସେମାନଙ୍କ ନଦୀ ସମୁଦ୍ର ଅରଣ୍ୟ ପର୍ବତ ଏବଂ ଜମିର ଅଧିକାର ପାଇଁ ଇଂରେଜ, ଫରାସୀ ତଥା ୟୁରୋପୀୟ ଉପନିବେଶବାଦୀଙ୍କ ବିରୋଧରେ ଅକପଟ ଆତ୍ମ ବଳିଦାନ ଦ୍ୱାରା ପ୍ରାଣମୂର୍ଚ୍ଛା ସଂଘର୍ଷ ଜାରି ରଖିଥିଲେ । ଏ କ୍ଷେତ୍ରରେ ପୃଥିବୀରେ ସବୁଠୁଁ ଲୋମହର୍ଷକ ଅତ୍ୟାଚାର ଭୋଗିଥିଲେ ଆଫ୍ରିକାର ନିଗ୍ରୋମାନେ । ଏପରିକି ହୋଇଥିଲା, ବିଶ୍ୱବ୍ୟାପୀ ସେମାନଙ୍କୁ ଦାସ ଭାବେ ବ୍ୟବସାୟ କରିଥିଲେ ସାହେବମାନେ । ଆଜି ଆମେରିକାରେ ଯେଉଁ ନିଗ୍ରୋମାନେ ଅଛନ୍ତି, ଜନ୍ମଭୂମି ଆଫ୍ରିକାରୁ ହିଁ ସେମାନଙ୍କୁ ଜନ୍ତୁ ଜାନୁଆର ପରି ଦାସ କରି ନିଆଯାଇଥିଲା ସେଠିକୁ ।

## ଉନବିଂଶ ଶତାବ୍ଦୀରେ ଆମେରିକା

**ପ୍ରଫୁଲ୍ଲ କୁମାର ଗିରି:** "୧୮୩୦ ମସିହାରେ ଆମେରିକାରେ ଏକ ଆଇନ ପ୍ରଣୟନ କରାଯାଇଥିଲା । ଏହାର ପ୍ରଭାବ ଏପରି ଥିଲା ଯେ, ସେତେବେଳେ ଆମେରିକାର ଜଣେ ଜେନେରାଲ ଉଇଲିୟମ ଶେର୍‌ମ୍ୟାନ କହିଥିଲେ- "ଏ ବର୍ଷ ଅଧିକ ସଂଖ୍ୟାରେ ରେଡ୍ ଇଣ୍ଡିଆନ ମାରିଲେ ଆସନ୍ତା ବର୍ଷ ଆମକୁ କମ୍ ମାରିବାକୁ ପଡ଼ିବ ।" ଯେଉଁଠାରେ ଜଣେ ସେନାପତି ନିଜ ଦେଶର ମୂଳ ଅଧିବାସୀଙ୍କୁ ହତ୍ୟା କରିବା ପାଇଁ ଏମିତି ବର୍ବର ବାସନା ପୋଷଣ କରନ୍ତି, ସେମାନେ ପ୍ରକୃତି, ପରିବେଶ, ମଣିଷ ତଥା ବିଶ୍ୱ ଶାନ୍ତିର ମୂଲ୍ୟ କଣ ବୁଝିବେ ?

## ଜଣେ ଆଦିବାସୀ ମୁଖିଆଙ୍କ ଯୁଗାନ୍ତକାରୀ ବିବୃତ୍ତି

ଜୀବନ ସଂକଟର ଭିତ୍ତିଭୂମି ଏଇ ପରିବେଶ ସଂକଟ ଜନିତ ଆଜିକା ପରିବେଶ ଆଇନର ବହୁ ପୂର୍ବରୁ ଜଣେ ସିଆଟଲ୍ ଲୋହିତ ଭାରତୀୟ ମୁଖିଆ ପରିବେଶ ଉପରେ ଏକ ପୃଥିବୀ ବିଖ୍ୟାତ ବିବୃତ୍ତି ଦେଇଥିଲେ । ତାହା ୧୮୫୪ ମସିହାର କଥା । ସେତେବେଳେ

ଆମେରିକାରେ ଲୋହିତ ଭାରତୀୟ ହତ୍ୟାଲୀଳା ଆରମ୍ଭ ହୋଇଯାଇଥାଏ, ଅନ୍ୟ ପକ୍ଷରେ ଆମ ଦେଶରେ ଚାଲିଥାଏ ବ୍ରିଟିଶ ରାଜ୍ । ତତ୍କାଳୀନ ଆମେରିକାର ପ୍ରେସିଡେଣ୍ଟ ସେ ନେତାଙ୍କୁ ଏକ ପତ୍ରରେ ପ୍ରସ୍ତାବ ନିର୍ଦ୍ଦେଶ ଦେଇଥିବଲେ- ଲୋହିତ ଭାରତୀୟ ମାନଙ୍କର ଏକ ବିରାଟ ଅଂଚଳ ଖରିଦି କରି ନେବା ପାଇଁ । କାରଣ ତା' ମାଟି ତଳେ ମୂଲ୍ୟବାନ ପଥରର ସନ୍ଧାନ ମିଳିଥିଲା । ଆଉ ନିମ୍ନମତେ ତାର ଉତ୍ତର ଦେଇଥିଲେ ସିଆଟଲ୍ ମୁଖିଆ :-

ଆକାଶକୁ ତୁମେ କିପରି ବିକିବ ବା କିଣିବ ? ଜମିର ଉଷ୍ମତାକୁ ତୁମେ କିପରି ବିକା କିଣା କରି ପାରିବ ? ତୁମର ଏଇ ଧାରଣା ହିଁ ଆମ ପାଇଁ ବିଚିତ୍ର । ଆମେ ଯଦି ପବନର ସହଜ ପଣ ଏବଂ ପାଣିର ଚକ୍ ଚକ୍ ପଣ ଉପରେ ହାକିମି କରି ନପାରୁ, ତାକୁ ବିକିବା ବା କିଣିବାର ଅର୍ଥ ନାହିଁ । ଏଇ ପୃଥିବୀର ପ୍ରତିଟି ଅଂଶ ମୋ ଲୋକଙ୍କ ପାଇଁ ପବିତ୍ର । ତାଙ୍କ ଅଭିଜ୍ଞତା ଓ ସ୍ମୃତିରେ ପ୍ରତିଟି ଛୁଞ୍ଚ ମୁନିଆ ଉଜ୍ଜ୍ୱଳ ପାଇନ ପତ୍ର, ପ୍ରତିଟି ବାଲୁକାମୟ ବେଳାଭୂମି, ଅନ୍ଧାରୁଆ ବନଭୂମିର ଘନ କୁହୁଡ଼ି, ଖୋଲା ପଡ଼ିଆରେ ପ୍ରତିଟି ପତଙ୍ଗର ଗୁଣୁଗୁଣୁ, ଝିଁ ଝିଁ କାର ଅତି ପବିତ୍ର । ବୃକ୍ଷ ଚୂଳ ଛୁଇଁ ବହି ଯାଉଥିବା ପବନରେ ପବନରେ ଭରି ରହିଛି ଲୋହିତ ମାନବର ସ୍ମୃତି । ପ୍ରତିଟି ଗଛରେ ଯେଉଁ ରସ ପ୍ରବାହ, ତାହା ଆମ ଜୀବନ ପ୍ରବାହ ସହ ମିଶି ଯାଇଛି । ଆମେ ପୃଥବବୀର ଅଂଶ ଓ ପୃଥିବୀ ଆମର ଅଂଶ । ସୁଗନ୍ଧି ଭରା ଫୁଲ ମାନେ ଆମର ଭଉଣୀ । ହରିଣ, ବାଇସନ୍ (ବନ୍ୟ ଘୋଡ଼ା) ଓ ବିରାଟକାୟ ଇଗଲମାନେ ଆମର ଭାଇ । ପଥୁରିଳ ପର୍ବତ ଚୂଡ଼ା, ଚାରଣ ଭୂମିର ଅମୃତ ରସ ଓ ମଣିଷ ଦେହର ଉଷ୍ଣତା- ଆମେ ସବୁ ତ ଗୋଟିଏ ପରିବାରର । ତୁମ ଭଳି ମଣିଷମାନେ ସିନା ମଲା ପରେ ପୃଥିବୀ ମାଆକୁ ଭୁଲି ଦୂର ଆକାଶର ତାରା ହୋଇଯାଆନ୍ତି, କିନ୍ତୁ ଆମର ମରିବା ଲୋକମାନେ କେବେ ବି ଏଇ ସୁନ୍ଦର ପୃଥିବୀକୁ ଭୁଲନ୍ତି ନାହିଁ, ସେମାନେ ଏଇ ମାଟିରେ ମିଶି ରହନ୍ତି । ଆମେ ଆମର ପିଲା ପିଲିଙ୍କୁ ଶିଖାଉ ଯେ- ଆମ ପାଦ ତଳର ମାଟିରେ ଅଛି ଆମ ପିତୃ-ପୁରୁଷଙ୍କ ଦେହାବଶେଷ । ସେମାନେ ଯେମିତି ମାଟି ମାଆକୁ ଶ୍ରଦ୍ଧା କରିବେ ।

ଏଇ ଯେ ଝରଣା ଓ ନଦୀ ମାନଙ୍କର ରୌଦ୍ର ଝଲସା ଚକ୍ ଚକ୍ ପାଣି ବହି ଯାଉଛି, ତାହା ସାଧାରଣ ପାଣି ନୁହେଁ, ଆମ ଆଜି-ଦାଦିଙ୍କ ରକ୍ତର ଧାର । ତୁମକୁ ଆମେ ଯଦି ଜମି ବିକିବୁ, ତୁମକୁ ମନେ ରଖିବାକୁ ପଡ଼ିବ, ୟାର ପବିତ୍ର ନିର୍ମଳ ପାଣିରେ ଯେତେ ଯେତେ ଭୌତିକ ଛାୟା ଦେଖା ଦେବେ, ସେମାନେ କହି ପାରିବେ ଆମ ଲୋହିତ ଆଦିବାସୀ ମାନଙ୍କର ସ୍ମୃତି-ବିସ୍ମୃତି ଓ ଘଟଣା-ଦୁର୍ଘଟଣାର କେତେ କେତେ କାହାଣୀ, କିମ୍ବଦନ୍ତୀ ଓ ଇତିହାସ । ଜଳଧାରର ସମସ୍ତ କଳ କଳ ଛଳ ଛଳ ଧ୍ୱନିର ନୀରବ ଉଚ୍ଚାରଣ ହେଉଛି,

ମୋ ବାପାଙ୍କ ଜେଜେ ବାପାଙ୍କ କଣ୍ଠସ୍ୱର । ତୁମ ମାନଙ୍କ ସହର ନଗର ଆମ ମାନଙ୍କ ଆଖିକୁ ଭଲ ଲାଗେନା । ସେଠାରେ ଲୋହିତ ଜଙ୍ଗଲି ପାଇଁ ବସିବାର ଟିକେ ଜାଗା ନଥାଏ । ବସନ୍ତ ଋତୁରେ ପତ୍ର କଅଁଳିବାର ଦୃଶ୍ୟ, କଢ଼ି ଆସିବାର ଶୋଭା କିମ୍ବା ସୁଲୁସୁଲିଆ ମନ ମତାଣିଆ ମଧୁମଳୟ ସେଠାରେ ଚାହିଁଲେ ବି ମିଳିବ ନାହିଁ । ଆମେ ଭଲ ଭାବେ ଜାଣୁ, ତୁମେ ଗୋରାମାନେ ଆମକୁ କି ଆମ ଚାଲିଚଳନକୁ କିଛି ହେଲେ ବୁଝ ନାହିଁ । ତୁମ ପାଇଁ ଜମିର ଗୋଟିଏ ଅଂଶ ଅନ୍ୟ ଏକ ଅଂଶ ଠାରୁ କୌଣସି ଗୁଣରେ ପୃଥକ ନୁହେଁ । କାରଣ ତୁମେ ମାନେ ବିଦେଶୀ । ରାତି ବେଳେ ଜମି ଭିତରକୁ ଚୋର ପରି ପଶି ଆସି ନିଜର ଲୋଡ଼ା ଦରବ ସବୁ ମାଟିରୁ ଖୋଳି ଦେବା ହେଉଛି ତୁମର କାମ । ଏ ଧରଣୀ ତୁମର ମା ନୁହେଁ, ତୁମ ଶତ୍ରୁ । ତୁମେ ଏହାକୁ ଜୟ କରିବା ସଂଗେ ସଂଗେ ଖାଲି ଆଗକୁ ମାଡ଼ିଯାଅ । ଏଇ ଧରଣୀ ମା' ଓ ଆକାଶ ଭାଇକୁ ତୁମେ ମାନେ ଛେଳି, ମେଣ୍ଢା ବା କାଠମାଳି ପରି ବିକାକିଣା ଦ୍ରବ୍ୟ ରୂପେ ଦେଖ । ତୁମ ମାନଙ୍କ କ୍ଷୁଧା ଦିନେ ଆମର ଏଇ ସମଗ୍ର ବସୁଧାକୁ ଗିଳି ଦେବ ଏବଂ ପଛରେ ଛାଡ଼ିଯିବ ଏକ ନିଷ୍ଫଳା ମରୁଭୂମି ।

କିନ୍ତୁ ଲୋହିତ ଭାରତୀୟ ପାଇଁ ଅରଣ୍ୟର ମୁକ୍ତ-ପବନ ଖୁବ୍ ମୂଲ୍ୟବାନ । କାରଣ ଏଇ ବାୟୁକୁ ସମସ୍ତେ ପ୍ରଶ୍ୱାସରେ ଗ୍ରହଣ କରନ୍ତି । ପଶୁପକ୍ଷୀ ଠାରୁ ଆରମ୍ଭ କରି ଗଛ ଲତା ଓ ମଣିଷ ସମସ୍ତେ । ଗୋରାମାନେ ଏଇ ମାଟିର ପଶୁପକ୍ଷୀଙ୍କୁ ନିଜର ଆତ୍ମୀୟ ପରିଜନ ଭାବେ ଗ୍ରହଣ କରିବା ଦରକାର । ସେମାନଙ୍କୁ ବାଦ୍ ଦେଲେ ମଣିଷ ସଭ୍ୟତାର ବୈଚିତ୍ର୍ୟ କଣ, ଉତ୍କର୍ଷ କଣ ? ପୃଥିବୀରେ ଯଦି ଜୀବଜନ୍ତୁ ନ ରହିବେ, ମଣିଷର ଆତ୍ମା ଏକା ଏକା ନିରସ ହୋଇଯିବ । ଆଜି ପଶୁପକ୍ଷୀଙ୍କ ଉପରେ ଯେଉଁ ବିପଦ ପଡ଼ିବ, କାଲିକୁ ସେଇ ବିପଦ ମଧ୍ୟ ମଣିଷ ଉପରକୁ ଘନେଇ ଆସିବ । ପୃଥିବୀର ସବୁ କିଛି ପ୍ରତ୍ୟେକ ପ୍ରତ୍ୟେକଟି ସହ ରହସ୍ୟମୟ ଯୋଗସୂତ୍ରରେ ଯୋଡ଼ା ହୋଇ ରହିଛି । ସେଇ ବିଚାରରେ ମଣିଷ ଯଦି ଭୂଇଁରେ ଛେପ ପକାଇବ, ତେବେ ସେ ଛେପ ତା' ନିଜ ଉପରେ ପଡ଼ିବ । ମଣିଷ ଏ ପୃଥବବୀର ଅଧିକାରୀ ନୁହେଁ, ବରଂ ପୃଥିବୀ ଏଇ ମଣିଷ ଓ ସୁନ୍ଦର ସୃଷ୍ଟିର ଅଧିକାରୀ । ରକ୍ତ ଯେପରି ଏକ ପରିବାରକୁ ଏକାଠି କରେ, ଏ ପୃଥିବୀ ସେମିତି ତାର ପ୍ରତ୍ୟେକ ସନ୍ତାନକୁ ସଂଯୋଗ ସୂତ୍ରରେ ଗୁନ୍ଥିଥାଏ । ପୃଥିବୀ ଉପରେ ଯେଉଁ ବିପଦ ପଡ଼େ, ତାର ପ୍ରତ୍ୟେକ ସନ୍ତାନ ତାହା ଭୋଗ କରନ୍ତି । ଜୀବନର ଯେ ଅଦୃଷ୍ଟ ରହସ୍ୟମୟ ବୁଢ଼ୀଆଣି ଜାଲ, ତାହା ମଣିଷ ତିଆରି କରେନି, ସେ ଖାଲି ତହିଁର ସାମାନ୍ୟ ଖିଅ ମାତ୍ର । ତେଣୁ ଜାଲ ପ୍ରତି ସେ ଯେଉଁ କ୍ଷତି ଘଟାଏ, ତାହା ନିଜ ପ୍ରତି ମଧ ଆଣିଥାଏ । କାହିଁଗଲା ପୂର୍ବର ସେ ଘଞ୍ଚ ଜଙ୍ଗଲ ? ସବୁ ସଫା ! କାହିଁଗଲେ ସେ ଇଗଲ, ବାଇସନ ଓ ହରିଣମାନେ ? ସବୁ ଶେଷ । ସରଳ

ସ୍ୱଚ୍ଛନ୍ଦ ଜୀବନର ଯବନିକା ପଡ଼ିଛି ଏବଂ ଆରମ୍ଭ ହୋଇଛି ବଂଚିବାର ସଂଘର୍ଷ ।

('ଜୀବନର ଯବନିକା'- ସୌଜନ୍ୟ : 'ନ୍ୟୁୟର୍କ ଟାଇମ୍ସ', ଉପସ୍ଥାପନା- ଡକ୍ଟର ରାଣୀ ରାମମୂର୍ତ୍ତି; ମୋର ସାରସ୍ୱତ ପୁନର୍ଗଠନ ସହ ସୃଜନ ଉପସ୍ଥାପନା : ବିଜୟ ଉପାଧ୍ୟାୟ)

ବୈଚିତ୍ର୍ୟ ହେଲା, ଆଜି ଏଇ ଏକବିଂଶ ଶତାବ୍ଦୀରେ ମଧ୍ୟ ଲୋହିତ ନେତାଙ୍କର ସେଇ ଉକ୍ତି ସମାନ ଭାବେ ସତ୍ୟ । ଆଜିକା ପରିବେଶ ବିଜ୍ଞାନ ସହ ତାର କୌଣସି ଭିନ୍ନତା ନାହିଁ । ପଢ଼ନ୍ତୁ, ଓଡ଼ିଶାର ଜଣେ ପରିବେଶବିତ୍ ତଥା ଆଦିବାସୀର ଅକପଟ ବନ୍ଧୁ ରବି ତ୍ରିପାଠୀଙ୍କ ମତାମତ :

## ଜଙ୍ଗଲ ଆଦିବାସୀ ଓ ଜୀବମଣ୍ଡଳ

ଜଙ୍ଗଲ ଓ ଆଦିବାସୀ, ଗୋଟିକୁ ଅଲଗା କଲେ ଅନ୍ୟର ମୃତ୍ୟୁ । ଏ ଦୁହିଁଙ୍କୁ ଛାଡ଼ି ଦେଲେ ଆହୁରି ଅନେକ ବିଷୟ ରହିଛି, ଯେଉଁମାନେ ଏମାନଙ୍କ ସହ ଗୁଛି ହୋଇ ରହିଛନ୍ତି । ଯେମିତି ବୃକ୍ଷଲତା, ପଶୁପକ୍ଷୀ, କୀଟପତଙ୍ଗ ଏବଂ ମାଟିରେ ଥିବା ଅସଂଖ୍ୟ ଛୋଟ ବଡ଼ ଜୀବ ଓ ଅଣୁଜୀବ । ପ୍ରତ୍ୟେକ ଅନ୍ୟ ଉପରେ ନିର୍ଭର କରି ଗୋଟେ ଜୈବ ଜାଲ ବା ବାଇଓ ୱେବ୍ ସୃଷ୍ଟି କରନ୍ତି । ଏଥିରୁ ଗୋଟେ ହଜିଗଲେ ବା ନଷ୍ଟ ହେଲେ ପ୍ରକୃତିର ଏ ବ୍ୟବସ୍ଥା ଦୋହଲି ଯାଏ । ଭାରସାମ୍ୟ ଫେରାଇ ଆଣିବା ସମ୍ଭବ ହୁଏ ନାହିଁ, କ୍ଷତି ଅପୂରଣୀୟ ରହିଯାଏ । କାରଣ ଏ ବ୍ୟବସ୍ଥା ପୃଥିବୀ ପୃଷ୍ଠରେ ଗଢ଼ି ଉଠିବାକୁ ହଜାର ହଜାର ବର୍ଷ ଲାଗିଥାଏ ।

ପ୍ରକୃତିର ଏ ବ୍ୟବସ୍ଥାକୁ ଜୀବ ମଣ୍ଡଳ କୁହାଯାଏ, ଯାହାକି କେତେକ ନିର୍ଦ୍ଦିଷ୍ଟ ଜୀବମାନଙ୍କ ବାସସ୍ଥଳୀ । ଯାକୁ ଘେରି ରହିଛି ଏବଂ ସୁରକ୍ଷା ଦେଉଛି ମାଟି ପାଣି ପବନ ଉତ୍ତାପ ଓ ଆଲୋକ । ଏମିତି ଦେଖିଲେ ସାରା ପୃଥିବୀ ଗୋଟେ ବିରାଟ ଜୀବମଣ୍ଡଳ ବା ବାଇଓ ସ୍ଫିୟର । ଯା ଭିତରେ ରହିଛି ଗୋଟିଏ ଅଦ୍ଭୁତ ଭାରସାମ୍ୟ ଓ ଯୋଗସୂତ୍ର, ଯାହାକୁ ଆମେ ଏବେ ବି ଆମ ସୂକ୍ଷ୍ମ ବୁଦ୍ଧି ବିବେକକୁ ନେଇ ଏହାର ସମଗ୍ର ରୂପ ଦେଖି ପାରି ନାହୁଁ, ବୁଝିବୁ ବା କେତେକେ ? ସେଇଥିରୁ ଉଠୁଚି କେତେକ ଅସୁବିଧା ଦୁଃଖକଷ୍ଟ । ପ୍ରକୃତିର ସୃଷ୍ଟି ମ୍ରିୟମାଣ ହୋଇଗଲାଣି । ମଣିଷର ଦୁର୍ବୁଦ୍ଧି ଓ ଦୂର ଦୃଷ୍ଟିର ଅଭାବ ଏ ଭାରସାମ୍ୟକୁ ଭାଙ୍ଗି ଦେଇଛି, ଯୋଗସୂତ୍ର ଛିଡ଼ି ଯାଇଛି । ଜୀବ ଜଗତ ଛାରଖାର । ଜୀବମଣ୍ଡଳ ଭିତରେ ପୁଣି ରହିଛି ଛୋଟ ଛୋଟ ପରିବେଶ ସବୁ । ଏ ସବୁ ନେଇ ଗଢ଼ି ଉଠିଛି ଇକୋ ଟାଇପ୍ ଜୀବ ମାନଙ୍କର ଗୋଟେ ଗୋଷ୍ଠୀ ବ୍ୟବସ୍ଥା । ଆଉ ଟିକେ ସୂକ୍ଷ୍ମରେ ଦେଖିଲେ, ଗୋଟେ ଗଛ-ସେ ତା' ନିଜ ଚାରିପାଖେ ପୁଣି ଗୋଟେ କୁନି ପରିବେଶ ସୃଷ୍ଟି କରେ । ମାଟି ତଳେ ଥିବା ତା' ଚେର ମୂଳ ଚାରିପଟର ରିଜୋ ସ୍ଫିୟର ଏବଂ ଗଛ ଉପରି ଭାଗକୁ ମିଶେଇ କୁନି ପରିବେଶ

ବା ମାଇକ୍ରୋ ଏନ୍‌ଭିରନମେଣ୍ଟ । ଚେର ଚାରିପଟେ ଛୋଟ ବଡ଼ ଜୀବ ଅଣୁଜୀବ ସବୁ ଘେରି ରହିଛନ୍ତି । ପୋକ ଜୋକଠୁ ଆରମ୍ଭ କରି ବ୍ୟାକ୍‌ଟେରିଆ ଫୁଙ୍ଗି ପ୍ରୋଟୋଜୋଆ ଆଦି । ଅନେକ ଚେର ଭିତରେ ମଧ୍ୟ ରହନ୍ତି । ଯେମିତି ଗଛ ଉପରି ଭାଗରେ କେତେ ପ୍ରକାର ପଶୁ ପକ୍ଷୀ କୀଟ ପତଙ୍ଗ ଗଛର ଉଚ୍ଚତାକୁ ଦେଖି ନିଜ ନିଜ ଜାଗା ବାଣ୍ଟି ନେଇଛନ୍ତି । ଏ ସବୁ ଦେଖିଲେ ସ୍ୱତଃ ପ୍ରମାଣ ମିଳେ, କୌଣସି ଜୀବ କେତେବେଳେ ହେଲେ ସ୍ୱାଧୀନ ନୁହେଁ, ପ୍ରତ୍ୟେକ ପ୍ରତ୍ୟେକଙ୍କ ସହ ଅନ୍ତର୍ନିହିତ ସଂପର୍କରେ ନିବିଡ଼ ଭାବେ ସଂଯୁକ୍ତ । ହଁ, ଭୁଲିଯିବା କଥା ନୁହେଁ, ଏଠି ମଣିଷର ମଧ୍ୟ ଗୋଟିଏ ସ୍ଥାନ ରହିଛି ।

ଜଙ୍ଗଲ ଗୋଟେ ଜୀବ ମଣ୍ଡଳ । ଏଥିରେ ନିର୍ଦ୍ଦିଷ୍ଟ କେତେକ ଜୀବ ରହିଛନ୍ତି । ମଣିଷର ଏମାନଙ୍କ ସହ ଗଭୀର ସଂପର୍କ, ସେ ବି ଏମାନଙ୍କ ଭିତରେ ଜଣେ । ଜୀବମାନେ ମାଟି ପାଣି ପବନ ସହ ମିଶି, ଏଇ ଅନ୍ତର୍ନିହିତ ସଂପର୍କକୁ ଧରି ପୃଥିବୀର ବିବର୍ତ୍ତନକୁ ସମ୍ଭବ କରିଛନ୍ତି । ସେଥିପାଇଁ ଲାଗି ଯାଇଛି ତିନି ହଜାର ନିୟୁତ ବର୍ଷରୁ ଅଧିକ ସମୟ । କେତେ ପୁରୁଣା ଏ ଜୀବ ଜଗତ, ତା' ମାଟି ପାଣି ପବନ କେତେ ଲକ୍ଷ ବର୍ଷ ଧରି ତିଆରି ହୋଇଛି, ଆଜି ପର୍ଯ୍ୟନ୍ତ ରହିଛି, କେତେ ସ୍ଥିର ସ୍ୱୟଂ ସଂପୂର୍ଣ୍ଣ ଦୃଢ଼ ।

ପୃଥିବୀ ପୃଷ୍ଠରେ ଥିବା ଜଙ୍ଗଲ ତାର ଜୀବମାନଙ୍କୁ ନେଇ ନଦୀ ହ୍ରଦ ଜଳାଶୟ ପାହାଡ଼ ପର୍ବତ ସହ ନିଜ ନିଜ ମଧ୍ୟରେ ଗୋଟିଏ ସ୍ଥାୟୀ ସ୍ୱତଃକ୍ରିୟ ସ୍ୱତଃ ବ୍ୟବସ୍ଥାପକ ଇକୋ ସିଷ୍ଟମ ତିଆରି କରି ଦେଇଛନ୍ତି । ଏ ବ୍ୟବସ୍ଥା ଏତେ ଦୃଢ଼ ଆବଦ୍ଧ ବା କ୍ଲୋଜ୍‌ଡ ଯେ ଅନ୍ୟ ଜୀବମାନେ ବାହାରୁ ଯା ଭିତରେ ପ୍ରବେଶ ବା ଯା ଭିତରୁ ବାହାରକୁ ଯିବାର ପ୍ରୟୋଜନ ହୁଏ ନାହିଁ । ଏପରି ଏକ ଆବଦ୍ଧ ଜୀବ ମଣ୍ଡଳ ଭିତରେ ଜୀବମାନଙ୍କ ସଂଖ୍ୟା ଆପେ ଆପେ ସୀମିତ ରହେ, ମନ ଇଚ୍ଛା ବଢ଼େ ନାହିଁ । ତା' ଭିତରେ ଥିବା ମଣିଷମାନଙ୍କ ସଂଖ୍ୟା ମଧ୍ୟ । ତେଣୁ ଜଙ୍ଗଲ ନଷ୍ଟ ବା କ୍ଷୟ ହେବାର ପ୍ରଶ୍ନ ନଥିଲା । ଜଙ୍ଗଲ ଗୁଡ଼ିକ ପ୍ରାୟତଃ ସେତେବେଳେ ଆବଦ୍ଧ ଥିଲା, ନିଜେ ନିଜକୁ ରକ୍ଷା କରୁଥିଲେ, ନିଜ ଭିତରେ ଭାରସାମ୍ୟ ରଖୁଥିଲେ । ମଣିଷର ଅନ୍ୟ ଜୀବମାନଙ୍କ ସହ କୌଣସି ସଂଘର୍ଷ ନଥିଲା । ଏହା ହେଉଛି ପୃଥିବୀ ଉଦ୍ୟୋଗୀକରଣ ହେବାର ପୂର୍ବାବସ୍ଥା ।

ତା'ପରେ ଯା' ହୋଇଛି ଏ ପୃଥିବୀର ଅବସ୍ଥା, ଯା' ହୋଇଛି ଏ ଜୀବ ମଣ୍ଡଳ ତା' ସମସ୍ତଙ୍କୁ ଜଣା । ପୃଥିବୀରେ ଏବେ ଇମିତି କୌଣସି ଜଙ୍ଗଲ ନାହିଁ, ଯାହାକି ଆଉ ଘଞ୍ଚ ଆବଦ୍ଧ ଅବସ୍ଥାରେ ଅଛି, କେତେକ ସଂରକ୍ଷିତ ଜଙ୍ଗଲକୁ ଛାଡ଼ି ଦେଲେ । ଜୀବମଣ୍ଡଳ ଭାଙ୍ଗି ଯାଇ ଜଙ୍ଗଲ ଉନ୍ମୁକ୍ତ, ସବୁକିଛି ବାହାରି ଯାଉଛି ହଜିଯିବା ପାଇଁ । ଜଙ୍ଗଲର ସେ କ୍ଷମତା ନାହିଁ ଜୀବକୁ ଧରି ରଖିବା ପାଇଁ । ତା' ଭିତରର ଖାଦ୍ୟ ଶିକୁଳି ଫୁଡ୍ ଚେନ୍ ଛିଡ଼ି ଯାଇଛି ।

ଶିକୁଳିର ପ୍ରଥମ ଲିଙ୍କ୍ ଗଛ, ଯେ ଖାଦ୍ୟ ନିଜ ଦେହରେ ତିଆରି କରେ (ଦି ପ୍ରଡ୍ୟୁସର) ଆଉ ସେମିତି କାର୍ଯ୍ୟକ୍ଷମ ନୁହେଁ । ତା' ପର ଲିଙ୍କ୍ ଯେ ଗଛ ମାନଙ୍କୁ ଖାଏ- ଶାକାହାରୀ ଜୀବ (ପ୍ରାଇମେରୀ କଂଜୁମର) ସେ ବି ଲୋପ ପାଇବାକୁ ବସିଲେଣି; ପୁଣି ଏମାନଙ୍କୁ ଖାଉଥିବା ମାଂସାସୀ ପ୍ରାଣୀ (ସେକେଣ୍ଡାରୀ କଂଜୁମର), ସେମାନଙ୍କ ଅବସ୍ଥା ବି ତଦ୍ରୂପ; ବାକି ରହିଲେ ଅରଣ୍ୟବାସୀ ବିଚରା ମଣିଷ, ସେ ଆଦିବାସୀଗଣ, ଯାହାକୁ ଏ ଉଦ୍ୟୋଗୀ ରାକ୍ଷସ ଜଂଗଲ ନଷ୍ଟ କରୁଛି କହି ଉଚ୍ଛେଦ କରିବାକୁ ଆଗେଇ ଆସିଲେଣି । ଏଇ ଖାଦ୍ୟ ଶିକୁଳି ଦେଇ ଶକ୍ତିର ପ୍ରବାହ ବୋହି ଆସେ ଆକାଶରୁ ଗଛ ଦେଇ ପଶୁ ପକ୍ଷୀ ବାଟେ ମଣିଷ ଭିତରକୁ । ଜୀବମାନଙ୍କ ଦେହ ମାଟିରେ ମିଶି ମାଟିକୁ ଫେରାଇ ଦିଏ ତା'ର ପୂର୍ବ ଜୈବିକ ଅବସ୍ଥା । ସେଥିରୁ ପୁଣି ଶକ୍ତି ବାହାରି ଗଛକୁ ଚାଲିଯାଏ, ପୁଣି ଆକାଶକୁ, ଚକ୍ର ପୂରା କରିବାକୁ । ଏଇଟା ଥିଲା ଜୀବର ମାଟି ଆଉ ଆକାଶ ସହ ଗୋଟେ ସହଜ ସରଳ ସଂପର୍କ । ଯାରି ଭିତରୁ ସେ ଜନ୍ମୁ ଥିଲା ଆଉ ଯାରି ଭିତରକୁ ପଶି ଯାଉଥିଲା, ପୃଥିବୀ ସୁରକ୍ଷିତ ଥିଲା । ଆଦିବାସୀଙ୍କୁ ଜଙ୍ଗଲରୁ ବାହାର କରି ଦେବାର ଅର୍ଥ ଶିକୁଳିର ଶେଷ ଲିଙ୍କକୁ ଭାଙ୍ଗି ଦେବା, ଯାହା ଅନେକ ଦିନୁ ଆରମ୍ଭ ହୋଇ ଗଲାଣି ପୃଥବବୀକୁ ନିରସ କରି ।

ତା' ସହ ଜୀବମଣ୍ଡଳରେ ଭାଙ୍ଗି ଗଲା ନାଇଟ୍ରୋଜେନ୍ ଚକ୍ର ଏବଂ କାରବନ୍ ଅକ୍ସିଜେନ୍ ଚକ୍ର । ଯେତେଗୁଡ଼ିଏ ରାସାୟନିକ ପ୍ରକ୍ରିୟାର ଚକ୍ର ଜୀବ ମଣ୍ଡଳରେ ଘଟେ ସେ ସବୁ ମଧ୍ୟରୁ ଏ ଦୁଇଟି ପ୍ରଧାନ । ନାଇଟ୍ରୋଜେନ୍ ଚକ୍ରରୁ 'ଏନ୍' ଆକାଶରୁ ମାଟିକୁ ଆସି ଗଛ ଭିତର ଦେଇ ପଶୁ ପକ୍ଷୀ ବାଟେ ପୁଣି ଆକାଶକୁ ଫେରିଯାଏ । ଏ ପ୍ରକ୍ରିୟାରୁ ଜୀବମାନଙ୍କୁ ମିଳେ ଶରୀର ରକ୍ଷା କରିବା ନାଇଟ୍ରୋଜେନ୍ ଭିତ୍ତିକ ଅନେକ ଜିନିଷ । ଏ ପ୍ରକ୍ରିୟାର ଶେଷ ଅଂଶୀଦାର ମଣିଷ । ଏ 'ଏନ୍' ଚକ୍ର ମଧ ଆଜି ଜଙ୍ଗଲରେ ଅତି କ୍ଷୀଣ ନଷ୍ଟ ପ୍ରାୟ ।

ଠିକ୍ ସେଇ ଅବସ୍ଥା କାରବନ୍ ଅକ୍ସିଜେନ୍ ଚକ୍ରର । ଫଟୋସିନ୍‌ଥେସିସ୍ ଦ୍ୱାରା ଗଛରେ ଶେତ୍ୱସାର ତିଆରି ହୁଏ ଏବଂ ଅକ୍ସିଜେନ୍ ବାହାରିଯାଏ । ଏଇ ଶ୍ୱେତସାର ହୁଏ ଶାକାହାରୀ ଜୀବ ଓ ମଣିଷଙ୍କ ଖାଦ୍ୟ । ବାହାରୁଥିବା ଅକ୍ସିଜେନ୍ ଜୀବ ଓ ମଣିଷ ପ୍ରଶ୍ୱାସରେ ଗ୍ରହଣ କରନ୍ତି ।

ଗଛର ଶ୍ୱାସ କ୍ରିୟାରେ ଶ୍ୱେତସାର ଭାଙ୍ଗି ଶକ୍ତି ବାହାରେ ଏବଂ କାରବନ୍ ଡାଇଅକ୍ସାଇଡ୍ ଓ ଜଳ ବାହାରିଯାଏ । ଶକ୍ତି ଗଛର ବିପାକ କ୍ରିୟାରେ ଲାଗିଯାଏ । ମଣିଷ ଓ ଜୀବ ମଧ ତାଙ୍କ ନିଃଶ୍ୱାସରେ କାରବନ୍ ଡାଇଅକ୍ସାଇଡ୍ ଛାଡ଼ନ୍ତି । ଏହାକୁ ଗଛ ପୁଣି ବ୍ୟବହାର କରି ଶ୍ୱେତସାର ତିଆରି କରେ ।

ଏଇ କେତୋଟି ପ୍ରଧାନ ରାସାୟନିକ ପ୍ରକ୍ରିୟାରୁ ବାହାରୁଥିବା ନାଇଟ୍ରୋଜେନ୍ ଅକ୍ସିଜେନ୍ ଓ କାରବନ୍ ହାଇଅକ୍ସାଇଡ୍ ବାୟୁମଣ୍ଡଳର ପ୍ରଧାନ ଅଂଶ । କେତେ ନିଗୂଢ଼ ସଂପର୍କ

ଏ ଜୀବ ଓ ପ୍ରକୃତି ଭିତରେ । ତା' ଭିତରେ ଖାଦ୍ୟ ଶିକୁଳି, ନାଇଟ୍ରୋଜେନ୍ ଚକ୍ର, କାରବନ୍ ଅକ୍ସିଜେନ୍ ଚକ୍ର, ଜଳଚକ୍ର ପ୍ରଭୃତି ଜୀବନ ରକ୍ଷାକାରୀ ରାସାୟନିକ ପ୍ରକ୍ରିୟା ଏବଂ ସେଥିରୁ ଉତ୍ପନ୍ନ ଶକ୍ତିର ବିନିମୟ ହଜାର ହଜାର ବର୍ଷ ଧରି ଜୀବମଣ୍ଡଳକୁ ଧରି ରଖିଛି ।

ପୁରାକାଳରୁ ଅରଣ୍ୟବାସୀ ଆଦି ମଣିଷକୁ ଇକୋ ସିଷ୍ଟମର ଗୋଟେ ପ୍ରଧାନ ଅଂଶ ରୂପେ ଗ୍ରହଣ କରାଯାଉଥିଲା । ଆଧୁନିକ ମଣିଷ କିନ୍ତୁ ସବୁ ବୁଝି ଅବୁଝା । ସବୁ ଭାଙ୍ଗି ଦେଇଛି, ପ୍ରକୃତି ଠାରୁ ପୁରୁଷକୁ ଅଲଗା କରି ଦେଇଛି, ଦୁହେଁ ହଜି ଗଲେଣି, ଖୋଜିଲେ ବି ମିଳିବେ ନାହିଁ । କେତେ ଜୀବ ମରି ହଜି ଗଲେଣି, ମାଟିର ଜୀବ ଅଣୁଜୀବଙ୍କ ଅସ୍ତିତ୍ୱ କାହିଁ ? ଖାଦ୍ୟ ଶିକୁଳି ଛିଣ୍ଡି ଗଲାଣି, ନାଇଟ୍ରୋଜେନ ଚକ୍ର ଦୁର୍ବଳ ବା କାମ କରିବାକୁ ଅକ୍ଷମ । ମାଟି ତ ବନ୍ଧ୍ୟା ହୋଇଗଲାଣି, କୋଉ ଅଣୁଜୀବ ଅଛନ୍ତି ଆକାଶର ନାଇଟ୍ରୋଜେନ୍‌କୁ ଜୈବିକ ରୂପରେ ଗଛ ବୃକ୍ଷକୁ ଶକ୍ତି ଫେରାଇ ଦେବ ? ନାଇଟ୍ରୋଜେନ୍ ଭିତ୍ତିକ ପ୍ରୋଟିନ୍, ନ୍ୟୁକ୍ଲିକ୍ ଏସିଡ୍, ଏନ୍‌ଜାଇମ୍, ଭିଟାମିନ୍ ଓ ହରମୋନର ଦୁର୍ଭିକ୍ଷ ପଡ଼ିଲାଣି । ଆଜିର ଦୁର୍ଭିକ୍ଷ ପ୍ରୋଟିନ୍ ଅଭାବରୁ, ଖାଦ୍ୟାଭାବରୁ ନୁହେଁ ।

ସେଇ ଜଙ୍ଗଲରେ ଥିଲା ଆଉ ଗୋଟେ ବିଚରା ଜୀବ, ଯେ'କି ଜଙ୍ଗଲକୁ ତା'ର ଶେଷ ସୁରକ୍ଷା ଦେଇଥିଲା । ଖଣ୍ଡିଆ ଦରଖଣ୍ଡିଆ ଖାଦ୍ୟ ଶିକୁଳି ଏବଂ ହଜି ଯାଇଥିବା ରାସାୟନିକ ପ୍ରକ୍ରିୟାରେ ସହଯୋଗ କରୁଥିଲା । ଅଜାଣତରେ ଜୈବିକ ଚକ୍ରରେ ମିଶି ରହିଥିଲା । ଗଛ ସହ ତା'ର ଶେଷ ସଂପର୍କ ରକ୍ଷା କରି ଆସିଥିଲା । ଗଛକୁ ପୂଜା କରୁଥିଲା । ପ୍ରକୃତିର ଶେଷ ବନ୍ଧୁ ସେଇ ବିଚରା ମଣିଷ ଆଦିବାସୀ । ଗଛ ମଧ୍ୟ ସଂପୂର୍ଣ୍ଣ ଭାବରେ ତା' ଉପରେ ନିର୍ଭର କରି ଯାଇଥିଲା । ଜଙ୍ଗଲ ଧ୍ୱଂସକାରୀ କହି ତାକୁ ଉଚ୍ଛେଦ କରାଯାଉଛି, କେତେ ଅବୈଜ୍ଞାନିକ, ଅଶୋଭନୀୟ, ଅନୈତିକ ଓ ଅମାନବୀୟ ।

ଏଇ ଆଦିବାସୀମାନେ ହିଁ ଥିଲେ ଜଙ୍ଗଲର ରକ୍ଷାକର୍ତ୍ତା ଜଗୁଆଳୀ । ବହୁ ପୁରାକାଳରୁ ଆର୍ଯ୍ୟମାନଙ୍କ ସହ ସଘର୍ଷରେ ଏମାନଙ୍କୁ ଜଙ୍ଗଲକୁ ତଡ଼ି ଦିଆଯାଇଥିଲା । ସେଇ ଦିନଠାରୁ ଆଜି ପର୍ଯ୍ୟନ୍ତ ସେମାନଙ୍କ ଘର ଜଙ୍ଗଲ । ଆଜି ଯଦି ଜଙ୍ଗଲରେ କିଛି ଗଛ ରହି ଯାଇଛି ତାହା କେବଳ ଏଇ ଆଦିବାସୀଙ୍କ ବୃକ୍ଷଲତା ବିଷୟରେ ଜ୍ଞାନ ଏବଂ ସେମାନଙ୍କୁ ପୂଜା କରି ସମ୍ମାନ ଦେବା ଦ୍ୱାରା । ସେଇମାନେ ହିଁ ପ୍ରଥମେ ଜାଣିଥିଲେ କେଉଁ ଗଛର ଔଷଧୀୟ ଗୁଣ କେତେ ? ଗଛର ନାଁ, ଖାଦ୍ୟ ପାଇଁ ଉପଯୁକ୍ତ କି ନୁହେଁ ? ସେଇମାନେ ହିଁ ବାଟ ଦେଖାଇଥିଲେ ଗଛମାନଙ୍କୁ କିପରି ରକ୍ଷା କରାଯାଏ । ଆଜି ମଧ୍ୟ ଜଙ୍ଗଲରେ ଗଛମାନଙ୍କୁ ଚିହ୍ନିବାକୁ ହେଲେ ଆଦିବାସୀଙ୍କ ପ୍ରଥମ ଜ୍ଞାନ ବେଶ୍ ସାହାଯ୍ୟ କରେ । ଏମାନଙ୍କ ସାହାଯ୍ୟରେ ୨୦୦୦ରୁ ବେଶୀ ଗଛ ବଛା ଯାଇ ପାରିଥିଲା ଔଷଧ ପାଇଁ; ଖାଦ୍ୟ ଓ ଗୋଖାଦ୍ୟ ପାଇଁ, ଫାଇବର ଘର ଓ ଆସବାବ ପତ୍ର

ପାଇଁ; ବାଦ୍ୟ, ଜାଳ, ତେଲ, ନିଷା (ନାର୍‌କୋଟିକ୍ସ) ଓ ପାନୀୟ (ଲେଭରରେଜ୍) ପାଇଁ (ଗ୍ଲିମ୍ପେସ୍ ଅଫ୍ ଇଣ୍ଡିଆନ୍ ଇଟ୍‌ନୋ ବଟାନି, ୧୯୮୧) । ଗଛମାନଙ୍କ ସ୍ଥାନୀୟ ନାମ ଏଇମାନେ ହିଁ ଦେଇଥିଲେ । ଶାସ୍ତ୍ରରେ ବର୍ଣ୍ଣିତ ସୋମରସ ବାହାରୁଥିବା ସୋମଲତା ଏଇ ଆଦିମାନବ ଖୋଜି ବାହାର କରିଥିଲା । ତେଣୁ ଏମାନଙ୍କୁ ପ୍ରଥମ ସିଷ୍ଟମେଟିକ ବଟାନିଷ୍ଟ କୁହାଯାଇପାରେ । ଏବେ ବି ଏମାନଙ୍କ ଜଙ୍ଗଲି ଗଛ ଓ ଜୀବମାନଙ୍କ ବିଷୟରେ ଜ୍ଞାନ ଯେକୌଣସି ଡିଗ୍ରୀଧାରୀଙ୍କ ଠାରୁ ଯଥେଷ୍ଟ ଗଭୀର ଓ ତତ୍ତ୍ୱଭିତ୍ତିକ ।

ମଣିଷ ଓ ଜୀବମଣ୍ଡଳ ଭିତରେ ଥିବା ସଂପର୍କ ବର୍ତ୍ତମାନ ପରିବେଶବିତ୍ ମାନଙ୍କ ପାଇଁ ଗବେଷଣାର ବିଷୟବସ୍ତୁ । ଯାହାକୁ ମ୍ୟାନ ଆଣ୍ଡ ବାଇଓସ୍ଫିୟର ବା ଏମ୍‌ଏବି କୁହାଯାଉଛି । ଏମାନଙ୍କୁ ନେଇ ଅନେକ ତଥ୍ୟ ଲେଖା ଗଲାଣି । ଏସବୁ କାମ ୟୁନେସ୍କୋ ଦ୍ୱାରା ପରିଚାଳିତ ହେଉଛି । ଏମ୍‌ଏବିର ପ୍ରଧାନ ଲକ୍ଷ୍ୟ (୧) ଜୀବମଣ୍ଡଳର ରକ୍ଷଣାବେକ୍ଷଣ ଏବଂ ସେଥିରୁ ବାହାରୁଥିବା ବିଭବର ଉପଯୁକ୍ତ ବ୍ୟବହାର । (୨) ମଣିଷ ଓ ପରିବେଶ ସଂପର୍କ କିପରି ଗଭୀର ହେବ । (୩) ଜୀବମଣ୍ଡଳର ମଣିଷ ଉପରେ ପ୍ରଭାବ ଏବଂ ମଣିଷର ଜୀବମଣ୍ଡ ଉପରେ । (୪) ଇକୋ ସିଷ୍ଟମ୍‌କୁ ତା'ର ପ୍ରାକୃତିକ ଅବସ୍ଥାରେ ରକ୍ଷା କରିବା । ତା' ଭିତରେ ଥିବା ଖାଦ୍ୟ ଓ ଖାଦକମାନଙ୍କୁ ଯଥେଷ୍ଟ ସୁରକ୍ଷା ଦେବା । (୫) ଜୀବମଣ୍ଡଳର ଜୀବମାନଙ୍କ ସଂଖ୍ୟାରେ ଭାରସାମ୍ୟ ଫେରାଇ ଆଣିବା । (୬) ପ୍ରତ୍ୟେକ ଜାତି ଜୀବର (ସ୍ପେସିଜ୍) ଅନ୍ୟ ଜାତି ସହିତ ଯେପରି ବୁଝାମଣା ରହେ ଏବଂ ପ୍ରତିଯୋଗିତା ବା ସଂଘର୍ଷ ଯେତେ କମ୍ ହୋଇପାରେ ସେଥିପ୍ରତି ନଜର ଦେବା । (୭) ଅଭୟାରଣ୍ୟରେ ଥିବା ଜୀବମାନଙ୍କ ଅବସ୍ଥାର ପରୀକ୍ଷା ନିରୀକ୍ଷା କରି ସେମାନଙ୍କୁ ସୁରକ୍ଷା ଦେବା ।

ଭାରତବର୍ଷରେ ଏଇ ଏମ୍‌ଏବିକୁ କାର୍ଯ୍ୟକାରୀ କରିବା ପାଇଁ ଇଣ୍ଡିଆନ୍ ନ୍ୟାସନାଲ କମିଟି ଅନ୍ ଏମ୍‌ଏବି ଗଢ଼ା ଯାଇଛି । ଯାହା ଡିପାର୍ଟମେଣ୍ଟ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଦ୍ୱାରା ପରିଚାଳିତ । ଏପରି ପରିସ୍ଥିତିରେ ଆଦିବାସୀମାନଙ୍କୁ ଜଙ୍ଗଲରୁ ଉଚ୍ଛେଦ କରିବା କେଉଁ ଉର୍ବର ମସ୍ତିଷ୍କର ଉଦ୍ଭଟ ଚିନ୍ତା ?

ପଶୁପକ୍ଷୀ ମାନଙ୍କୁ ଅଭୟାରଣ୍ୟରେ ସୁରକ୍ଷା ଦେଲା ପରି, ତିବ୍ବତୀୟ ରିଫ୍ୟୁଜି ମାନଙ୍କୁ ଚନ୍ଦ୍ରଗିରି ଜଙ୍ଗଲରେ ଏବଂ ବାଂଲାଦେଶୀ ରିଫ୍ୟୁଜି ମାନଙ୍କୁ ମାଲକାନଗିରି (ଦଣ୍ଡକାରଣ୍ୟ) ଜଙ୍ଗଲରେ ଥଇଥାନ କଲାପରି ଆଦିବାସୀମାନେ ରହିଥିବା ଜଙ୍ଗଲକୁ ସେମାନଙ୍କ ଅରଣ୍ୟ ନିବାସ ହିସାବରେ ଘୋଷଣା କରି ସ୍ଥାୟୀ ସୁରକ୍ଷା ଯୋଗାଇ ଦିଆଯାଉ । ସେମାନେ ଆଦିମାନବଙ୍କ ବଂଶଧର, ମଣିଷ ଇତିହାସ ଜେନେରାଲୋଜିର ଶେଷ ଲିଙ୍କ୍ । ଏମାନଙ୍କୁ ନଷ୍ଟ କରିବା ଅର୍ଥ ମଣିଷ ବଂଶ ବିବରଣକୁ ନଷ୍ଟ କରିବା ।

ଶ୍ରୀଅରବିନ୍ଦଙ୍କ ଭବିଷ୍ୟବାଣୀ ଅନୁସାରେ ଯଦି କେତେବେଳେ କୋଉଠି ଦିବ୍ୟଜୀବନ ବା ଡିଭାଇନ୍ ବିଙ୍ଗ୍‌ର ଆବିର୍ଭାବ ବା ମ୍ୟୁଟେସନ ହୁଏ ତେବେ ଏଇ ଆଦିବାସୀଙ୍କ ଡିଏନ୍‌ଏରୁ । ଆଉ ଗୋଟେ ଆର୍ଯ୍ୟ-ଅନାର୍ଯ୍ୟ ସଂଘର୍ଷର ଅପେକ୍ଷା ନରହୁ ।

## ଜଳ ଓ ଜୀବନ

(ଏହା ଡକ୍ଟର ବନ୍ଦନା ଶିବାଙ୍କ ନିବନ୍ଧର ଏକ ଅଂଶ । 'ବିକଳ୍ପ ବିଚାର'ରୁ ସଂଗୃହୀତ ।) "ଜଳଚକ୍ର ଏକ ପରିବେଶ ଜନିତ ପ୍ରକ୍ରିୟା ଅଟେ । ପ୍ରକୃତି ବର୍ଷା କିମ୍ବା ବରଫ ରୂପରେ ଜଳଧାରଣ କରିଥାଏ । କୌଣସି ଏକ ଅଂଚଳରେ ଆର୍ଦ୍ରତା ବଢ଼ିଲେ ନଦୀ, ଝରଣା ତଥା ଅନ୍ୟାନ୍ୟ ଜଳସ୍ରୋତ ମାନଙ୍କର ପୁନଃ ଜୀବନ ଘଟିଥାଏ । ନିର୍ଦ୍ଦିଷ୍ଟ କୌଣସି ଏକ ଅଂଚଳରେ ଜଳର ଉପଲବ୍ଧତା ସେଠିକାର ଜଳବାୟୁ, ମାଟିର ଚରିତ୍ର, ବୃକ୍ଷଲତା ତଥା ଭୂତଳର ଅବସ୍ଥା ଉପରେ ନିର୍ଭର କରିଥାଏ । ଆଧୁନିକ ମଣିଷ ସବୁ ଦିଗରୁ ପୃଥିବୀକୁ ଅତ୍ୟାଚାର କରିବା ସାଂଗକୁ ପ୍ରକୃତିର ଜଳ ସଂଚୟ ଓ ଧାରଣ କ୍ଷମତାକୁ ନଷ୍ଟ କରି ଚାଲିଛି । ବ୍ୟାପକ ଜଙ୍ଗଲ କଟା ତଥା ଖଣି ଖନନ କାରଣରୁ ସଂପୃକ୍ତ ଅଂଚଳର ଭୂଗର୍ଭ-ପ୍ରବାହିତ ଜଳକୁ ଶୋଷି ନେବାର କ୍ଷମତା କମି ଚାଲିଛି । ଗୋଟିଏ ଅଂଚଳରେ ଗୋଟିଏ କିସମର ଫସଲ କରିବାର କୃଷି ପଦ୍ଧତି (ମନୋକଲଚର) କାରଣରୁ ପର୍ଯ୍ୟାବରଣ ବ୍ୟବସ୍ଥା ଶୁଷ୍କ ହୋଇଚାଲିଛି । କୋଇଲା, ପେଟ୍ରୋଲ ଆଦି ଭଳି ଜୀବାଶ୍ମ ଇନ୍ଧନର ପ୍ରଚୁର ବ୍ୟବହାର ଯୋଗୁଁ ପ୍ରଦୂଷଣ ବଢ଼ିବା ସାଂଗକୁ ଏହା ଜଳବାୟୁ ପରିବର୍ତ୍ତନର ଏକ ମୁଖ୍ୟ କାରଣ ହୋଇଛି । ବନ୍ୟା, ବାତ୍ୟା, ମରୁଡ଼ି ଭଳି ପ୍ରାକୃତିକ ବିପର୍ଯ୍ୟୟ ଏହି ସବୁ କାରଣରୁ ବଢ଼ିବାରେ ଲାଗିଛି ।

ଜଙ୍ଗଲ ଏକ ପ୍ରାକୃତିକ ବନ୍ଧ ଭଳି କାମ କରିଥାଏ । ସଂପୃକ୍ତ କ୍ଷେତ୍ରରେ ବର୍ଷା ଜଳକୁ ଶୋଷି ନେଇ ସଂଚୟ କରି ପ୍ରକୃତି ଝରଣା ତଥା ଜଳ ପ୍ରବାହ ରୂପରେ ଆସ୍ତେ ଆସ୍ତେ ଜଳର ସ୍ରୋତ ସୃଷ୍ଟି କରିଥାଏ । ବର୍ଷା ତଥା ବରଫପାତ ହେଲେ ଜଙ୍ଗଲର ବୃକ୍ଷଲତା ମୃତ୍ତିକା କ୍ଷୟକୁ ରୋକିବାରେ ସହାୟକ ହୋଇଥାନ୍ତି । ବୃକ୍ଷଲତା ମାଟିର ଜଳ ଶୋଷିନେବା କ୍ଷମତାକୁ ବୃଦ୍ଧି କରାଇବାରେ ମଧ୍ୟ ସାହାଯ୍ୟ କରିଥାନ୍ତି । ଏହି ଜଳର ଗୋଟିଏ ଅଂଶ ବାଷ୍ପ ଆକାରରେ ପୁନଶ୍ଚ ବାୟୁମଣ୍ଡଳକୁ ଫେରି ଯାଇଥାଏ । ଜଙ୍ଗଲ ଜମିରେ ଝରି ପଡ଼ିଥିବା ଘାସପତ୍ର ଓ ତଦ୍‌ଜନିତ ଖତ ପ୍ରଚୁର ମାତ୍ରାରେ ଥିଲେ ତାହା ବର୍ଷା ଜଳକୁ ଶୋଷିବା ତଥା ଧାରଣ କରିବାରେ ସହାୟକ ହୋଇଥାଏ । ଜଙ୍ଗଲ କଟା ଏବଂ ଗୋଟିଏ ଅଂଚଳରେ ଏକ ଫସଲ (ମନୋକଲଚର) କୃଷି ପଦ୍ଧତି କାରଣରୁ ମାଟିର ଜଳ ଧାରଣ କ୍ଷମତା ନଷ୍ଟ ହୋଇଚାଲିଛି । ପାଣି ଭୂତଳକୁ ଯିବା ପରିବର୍ତ୍ତେ ଭୂପୃଷ୍ଠରେ ବହି ଚାଲିଯାଉଛି ।

ସାରା ଦୁନିଆରେ କୌଣସି ଏକ ସମାଜର ଭୌତିକ ତଥା ସାଂସ୍କୃତିକ ସୁଖ ସମୃଦ୍ଧି ପାଇଁ ପାଣିର କେନ୍ଦ୍ରୀୟ ଭୂମିକା ରହିଛି । ଯଦିଓ ବିଶ୍ୱଭୂଖଣ୍ଡର ଦୁଇ ତୃତୀୟାଂଶ ଜଳମୟ ତଥାପି ମଣିଷ ଜଳ ସଂକଟର ସମ୍ମୁଖୀନ ।

ପୃଥିବୀର ପରିବେଶଗତ ବିନାଶର ସବୁଠାରୁ ଅଧିକ ଚିନ୍ତାଜନକ, ଅନିଷ୍ଟକାରୀ ତଥା ଅଦୃଶ୍ୟ ପରିଣାମ ହେଉଛି ଜଳ ସଂକଟ । ୧୯୮୮ରେ ଜଳକଷ୍ଟ ଭୋଗୁଥିବା ଦେଶମାନଙ୍କର ସଂଖ୍ୟା ଥିଲା ୨୮ । ୨୦୦୫ ସାଲବେଳକୁ ଏପରି ଦେଶମାନଙ୍କର ସଂଖ୍ୟା ଦୁଇଗୁଣ, ଅର୍ଥାତ ୫୬ ହୋଇଯିବ । ଏକ ଅଧ୍ୟୟନ ରିପୋର୍ଟ ଅନୁସାରେ ୧୯୯୦ରେ ଜଳାଭାବର ଶିକାର ଲୋକଙ୍କ ସଂଖ୍ୟା ଥିଲା ୧୩ କୋଟି ୧୦ ଲକ୍ଷ । ୨୦୨୫ ବେଳକୁ ଏହି ସଂଖ୍ୟା ୮୧ କୋଟି ୭୦ ଲକ୍ଷ ହୋଇଯିବ ବୋଲି ହିସାବ କରାଯାଉଛି । ୨୦୨୫ର ଯଥେଷ୍ଟ ପୂର୍ବରୁ ଭାରତ ଜଳାଭାବର ଶିକାର ଏକ ଦେଶ ରୂପେ ପରିଗଣିତ ହୋଇଯିବ ।

ଯେଉଁ ଦେଶରେ ବର୍ଷକୁ ମୁଣ୍ଡ ପିଛା ଏକ ହଜାର ଘନ ଲିଟର ଠାରୁ କମ୍ ପାଣି ଉପଲବ୍ଧ ହୁଏ, ସେହି ଦେଶକୁ ଜଳ ସଂକଟଗ୍ରସ୍ତ ବୋଲି ଧରାଯାଏ । ଏହି ପରିମାଣରୁ କମ୍ ପାଣି ଉପଲବ୍ଧ ହେଲେ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ତଥା ସେଠିକାର ଆର୍ଥିକ ବିକାଶ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ଏହି ମାତ୍ରା ପାଞ୍ଚ ଶହ ଘନମିଟର ଠାରୁ କମ୍ ହୋଇଗଲେ ଲୋକଙ୍କ ଜୀବନ ଦୁର୍ବିସହ ହୋଇଯାଏ । ଭାରତରେ ୧୯୫୧ ବେଳକୁ ମୁଣ୍ଡପିଛା ବର୍ଷକୁ ୩୪୫୦ ଘନ ଲିଟର ପାଣି ଉପଲବ୍ଧ ଥିଲା । ୧୯୯୫ ବେଳକୁ ଏହି ମାତ୍ରା ୧୨୫୦ ଘନ ଲିଟରକୁ ହ୍ରାସ ପାଇଲା । ୨୦୨୫ ସାଲ ବେଳକୁ ଏହା ୭୬୦ ଘନ ଲିଟରକୁ ଖସି ଯିବାର ସମ୍ଭାବନା ରହିଛି ।

## ସ୍ୱାଧୀନ ଯୁଗର ଚିତ୍ର

ସ୍ୱାଧୀନତା ପରେ ବ୍ରିଟିଶ ସରକାରଙ୍କ ଠାରୁ ଜଙ୍ଗଲ ଆସିଲା ରାଜ୍ୟ ସରକାରଙ୍କ ନିକଟକୁ । ୧୯୭୬ ପର୍ଯ୍ୟନ୍ତ ଜଙ୍ଗଲ ରାଜ୍ୟ ତାଲିକାଭୁକ୍ତ ଥିଲା । ୧୯୫୨ ମସିହାରେ ଜାତୀୟ ଜଙ୍ଗଲ ନୀତିର ପ୍ରଣୟନ ହେଲା । ଏହି ଆଇନରେ ପାହାଡ଼ିଆ ଅଂଚଳର ଶତକଡ଼ା ୬୦ ଭାଗ, ସମତଳ ଅଂଚଳର ୨୦ ଭାଗ ଅଂଚଳକୁ ଜଙ୍ଗଲ ସଂରକ୍ଷଣ କରିବା ପାଇଁ ସ୍ଥିର କରାହେଲା । ୧୯୫୬ ମସିହା ନିୟମାବଳୀ-୨ରେ ଥିବା ଭାଗ-ବି ଅନୁଯାୟୀ ଆଦିବାସୀର ଯେ ଜମି ପାଇବାର ଅଧିକାର, ତାହା ଏବେ ବି କାର୍ଯ୍ୟକାରୀ ହୋଇନି । ୧୯୬୧୯[illegible] ଜଙ୍ଗଲ ଅଂଚଳ ରାଜସ୍ୱ ବିଭାଗ ଓ ବନ ବିଭାଗ ହାତକୁ ଚାଲିଗଲା । ଏହି ବର୍ଷ କାର୍[illegible]ଯ୍ୟକାରୀ ହେଲା କେନ୍ଦୁପତ୍ର ବ୍ୟବସାୟ ନିୟନ୍ତ୍ରଣ ।

୧୯୬୨ରେ ଭୂସଂସ୍କାର ଆଇନ ଏବଂ ୧୯୬୬ର ଚକବନ୍ଦୀ ଆଇନରେ ଜଙ୍ଗଲକୁ ଧ୍ୱଂସମୁଖୀ କରାଗଲା । "୧୯୭୦ ମସିହା ବେଳକୁ 'ରିଓସମ୍ମିଳନୀ'କୁ ଅର୍ଥାନ୍ତର କରାଯାଇ କମ୍ପାନୀ ଗଛ ଲଗାଇଲା, ଯେଉଁ ଗଛର ଫଳ ପତ୍ର ଓ ମୂଳ ଆଦିବାସୀଙ୍କୁ କୌଣସି ଖାଦ୍ୟ ଯୋଗାଏ ନାହିଁ, ସିମିତି ସବୁ ଗଛ । ଅନ୍ୟ ଦିଗରେ ସୌଖିନ ବିଳାସୀ ସଭ୍ୟତା ପାଇଁ ପାରମ୍ପାରିକ ଜଙ୍ଗଲ ନଷ୍ଟ କରି ଦିଆଗଲା । ତା' ଖାଇବା ପତ୍ରରେ ବାଲି ପକାଇ ତାକୁ ବଳି ଦିଆଗଲା ।"

୧୯୭୨ରେ 'ବନ୍ୟଜନ୍ତୁ ସୁରକ୍ଷା ଆଇନ' ପ୍ରଣୟନ ହେଲା । ବାଘ, ହାତୀଙ୍କୁ ପୋଷିବାର ନାରା ଉଠାଇ ଆଦିବାସୀ ବନବାସୀର ଘରଭଙ୍ଗା ଅଭିଯାନ ଆରମ୍ଭ କରାଗଲା । ଅନ୍ୟ ପକ୍ଷରେ ସେମାନଙ୍କ ଥଇଥାନ ପାଇଁ ଯାହାବି ପଟ୍ଟା ଦିଆଯାଇଥିଲା, ତାର ଯୁଗ ଯୁଗର ସେଇ ଭିଟାମାଟି ମା'କୁ ଶିଳ୍ପପତି ବ୍ୟବସାୟୀ ଠିକାଦାର ଓ ଜମି ମାଫିଆମାନେ ଶାଗମାଛ ମୂଲ୍ୟରେ କିଣି ନେଲେ । ଯେହେତୁ ଏମାନେ ସରକାରଙ୍କର ପୃଷ୍ଠପୋଷକ ତେଣୁ ସରକାରୀ କଳ ଜାଣି ମଧ୍ୟ ଅଜଣା ରହିଲେ । "୧୯୭୯ ମସିହା ବେଳକୁ କୋରାପୁଟ ଜିଲ୍ଲା ପରି ଆଦିବାସୀ ଅଂଚଳରେ କଳକାରଖାନା ବାବଦରେ ୩୫,୦୦୦ ହେକ୍ଟରରୁ ଅଧିକ ଜଙ୍ଗଲ ଜମି ନଷ୍ଟ କରାଗଲା । ନଦୀବଂଧ ଯୋଜନାରେ ସହସ୍ରାଧିକ ହେକ୍ଟର ଜଙ୍ଗଲ ପାଣିରେ ବୁଡ଼ିଗଲା ।"

୧୯୭୬ ମସିହା ଜରୁରୀ ଶାସନ କାଳରେ ୪୨ତମ ସମ୍ବିଧାନ ସଂଶୋଧନ ବଳରେ ଜଙ୍ଗଲକୁ ଯୁଗ୍ମ ତାଲିକାଭୁକ୍ତ କରାଗଲା । ଏହା ହୋଇଯିବା ପରେ କେନ୍ଦ୍ର ସରକାର ଜଙ୍ଗଲ ଉପରେ ଆଇନ ପ୍ରଣୟନ କରିବାର ଅଧିକାର ପାଇଲେ । ୨୪ ଅକ୍ଟୋବର ୧୯୮୦ରେ ବନ ସଂରକ୍ଷଣ ଅଧ୍ୟାଦେଶ ଜାରି କରାଗଲା, ସେଥିରେ କେନ୍ଦ୍ର ସରକାରଙ୍କ ବିନାନୁମତିରେ ରାଜ୍ୟ ସରକାରମାନେ ଜଙ୍ଗଲ ଜମିକୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରି ପାରିବେ ନାହିଁ ବୋଲି କଟକଣା ଜାରି ହେଲା । ଏହି ଅଧ୍ୟାଦେଶକୁ ପରବର୍ତ୍ତୀ ସମୟରେ ଆଇନରେ ପରିଣତ କରାଗଲା । ଜଣକର ଜମିକୁ ଅନ୍ୟ ଜଣେ ଦଖଲ କରି ନେଲେ ତାହା ଜବରଦଖଲ କୁହାଯାଏ । ପ୍ରଥମତଃ ଜଙ୍ଗଲ ଓ ଜଙ୍ଗଲ ଜମିକୁ ପ୍ରକୃତିର ଦାନ ଭାବି ଆଦିବାସୀ ମୁକ୍ତ ଭାବେ ବ୍ୟବହାର କରି ଆସୁଥିଲା । ସାମନ୍ତ ଯୁଗରେ ଥରେ ଯେ ତାହା ତା' ଅଧିକାରକୁ କୋହଳ କରିଦେଲା, ପରେ ଉପନିବେଶ ଯୁଗରେ ତାହା ଚୂଡ଼ାନ୍ତ ଭାବେ ଚାଲିଗଲା ଫିରିଙ୍ଗି ପ୍ରଭୁଙ୍କ ହାତ ମୁଠାକୁ । ସ୍ୱାଧୀନତା ପରେ ଉତ୍ତରାଧିକାର ସୂତ୍ରରେ ଭାଗ ବଣ୍ଟୁଆରାରେ ରାଜ୍ୟ ସରକାର ମାନେ ତାହା ପାଇଲେ ଏବଂ ଏବକୁ ତାହା କେନ୍ଦ୍ର ସରକାରଙ୍କ ହାତ ମୁଠାରେ । ତେବେ କିଏ ଜଙ୍ଗଲ ଜବରଦଖଲକାରୀ ? ଆଦିବାସୀ ନା ଶାସକ ସରକାର ମାନେ ? କିଏ କାହା ପାଖରୁ ଜଙ୍ଗଲ ଜବରଦଖଲ କରିଛି ?

ସ୍ୱାଧୀନତା ପରେ ଇଂରେଜ ସରକାରଙ୍କ ଜନସ୍ୱାର୍ଥ ବିରୋଧୀ ଜଙ୍ଗଲ ଆଇନକୁ ଉଚ୍ଛେଦ କରାଯିବ ବୋଲି ଆଶା କରାଯାଉଥିଲା । ଇଂରେଜ ହଟିଲେ ଜଙ୍ଗଲ ଉପରେ ନିଜର ଅଧିକାର ଫେରି ପାଇବାର ଆଶା ରଖି ଯେଉଁ ଆଦିବାସୀ ସଂପ୍ରଦାୟ ଲକ୍ଷ ଲକ୍ଷ ସଂଖ୍ୟାରେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଅବର୍ଣ୍ଣନୀୟ ବଳିଦାନ ରଖିଥିଲେ ସ୍ୱାଧୀନତା ପରେ ଏ ଦେଶର ଶାସକମାନେ ସେମାନଙ୍କ ପ୍ରତି ଚରମ ବିଶ୍ୱାସ ଘାତକତା କଲେ । 'ଏହା କେହି ଅସ୍ୱୀକାର କରି ପାରିବେନି ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଭାରତର ସ୍ୱାଧୀନତା ଆନ୍ଦୋଳନରେ ପ୍ରଥମେ ସଶସ୍ତ୍ର ସଂଗ୍ରାମର ମୁଖ୍ୟ ବିଦ୍ରୋହୀ ଥିଲେ ଏଇ ଆଦିବାସୀମାନେ । ଦେଶ ସ୍ୱାଧୀନ ହେଲା ପରେ ଏଇ ମହାନ କର୍ଣ୍ଣଧାର ମାନଙ୍କୁ କୁଚକ୍ରୀ ଶାସନତନ୍ତ୍ର, ଭଡ଼ାଟିଆ ଅମଲତାତନ୍ତ୍ର ଆଉ ସହରୀ ଅର୍ଥନୀତିର ଚତୁର ଚାଣକ୍ୟମାନେ କି ସୂକ୍ଷ୍ମ-କପଟ-କୌଶଳ ବଳରେ ଆଲୋକିତ କେନ୍ଦ୍ର ନିକଟରୁ ଦୂରେଇ ରଖି ଆସିଛନ୍ତି ସତରେ । କି କାଇଦାରେ ଫିଙ୍ଗି ଦେଇଛନ୍ତି ପ୍ରଗତିର ପରିଧି ବାହାରେ ।'' ଆଦିବାସୀ ମାନେ ଏ ଯାଏଁ ବି ଠିକ୍ ବୁଝିପାରି ନାହାନ୍ତି, ବ୍ରିଟିଶ ମାନେ ତାଙ୍କର ସ୍ୱାର୍ଥ ରକ୍ଷାକାରୀ ଭାରତର ଯେଉଁ ବୋଲକରା ଦଲାଲ ଶାସକବର୍ଗଙ୍କୁ କ୍ଷମତା ହସ୍ତାନ୍ତର କରିଗଲେ, ସେମାନେ କେବେ ବି ଆଦିବାସୀର ବନ୍ଧୁ ନୁହନ୍ତି । ସେମାନେ ଭାରତୀୟ ପୁଞ୍ଜିପତି, ସାମନ୍ତ ଶ୍ରେଣୀ ତଥା ଅମଲା ସାହିର ପ୍ରତିନିଧି । ସେମାନେ ସାମ୍ରାଜ୍ୟ ସାହିର ଖାସ୍ ଦଲାଲ । ସ୍ୱାଧୀନତା ପରେ କିନ୍ତୁ ସେଇ ମୂଳ ଇଂରେଜ ଆଇନ ବଳବତ୍ତର ରହିଲା । ବରଂ ବିଭିନ୍ନ ସଂଶୋଧନୀ ବଳରେ ଭାରତ ସରକାର ଜଙ୍ଗଲ ଉପରେ ଥିବା ବନବାସୀର ଅଧିକାର ଉପରେ ଅଧିକରୁ ଅଧିକ କଟକଣା ଜାରି କଲେ ।

ଅନ୍ୟ ଦିଗରେ ଆଇନ ଅପହଞ୍ଚ ପାହାଡ଼ ଜଙ୍ଗଲ ଇଲାକାର ଆଦିବାସୀମାନେ ଏଇ ସବୁ ଜଙ୍ଗଲ ଆଇନ ସଂପର୍କରେ ଅବଗତ ନଥିଲେ । ଅଶିକ୍ଷା, କୁସଂସ୍କାର ଓ ଗୋଷ୍ଠୀ ଜୀବନର ସୀମିତ ଦୃଷ୍ଟିଭଙ୍ଗୀ ଏହାର ବାଧକ ଥିଲା । ଅନେକ ଜାଗାରେ ନିଜ ଅଂଚଳ ବ୍ୟତୀତ ସେମାନେ ଅଧିକ କିଛି ଦେଖି ନଥିଲେ, ଜାଣି ନଥିଲେ । ସେମାନଙ୍କ ପାଇଁ ସେ ସବୁର ଆବଶ୍ୟକତା ପଡୁନଥିଲା । ଜଙ୍ଗଲ ଜମିକୁ ନିଜର ଦରକାର ମୁତାବକ ବ୍ୟବହାର କରିବାରେ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଏପରିକି ସ୍ୱାଧୀନୋତ୍ତର ଭାରତବର୍ଷରେ ବହୁଦିନ ଧରି) କୌଣସି ପ୍ରତିବନ୍ଧକର ସାମ୍ନା କରି ନଥିଲେ । ତେଣୁ ନିଜ ଦଖଲରେ ଥିବା ଜମିର ପଟ୍ଟା ନିଜ ନାମରେ କରାଇ ନେବାର ଆବଶ୍ୟକତା ସେମାନେ ଅନୁଭବ କରି ନଥିଲେ । ଅନ୍ୟ ଦିଗରେ ଯେଉଁମାନେ ତାହା ଅନୁଭବ କରି ପଟ୍ଟା କରିବା ପାଇଁ ଯତ୍ନବାନ ହୋଇଥିଲେ, ସେମାନଙ୍କ ଭିତରୁ ବେଶୀ ଭାଗକୁ ତାଙ୍କ ଟଙ୍କା ପଇସା ଖାଇ କଚେରୀ ବରଗଛ ତଳେ ଘୁରି ବୁଲୁଥିବା ଟାଉଟରମାନେ ସହଜରେ ଠକି ଦେଇଥିଲେ । ସରଳ ଭାଷାରେ କହିଲେ,

ଆଇନର ଜଟିଳତା ଓ କୂଟିଳତା ଭିତରେ ସେମାନେ ପଶି ପାରି ନଥିଲେ । ପୁଣି ଆଇନର ଭବିଷ୍ୟତର ଧାରା ଓ ଦିଶା ସେମାନଙ୍କୁ କେଉଁ ପାତାଳୀ ନରକକୁ ଠେଲି ଦେବ- ସେ ସମ୍ବନ୍ଧରେ ମଧ୍ୟ ସେମାନଙ୍କର ଜ୍ଞାନ କି ଅଭିଜ୍ଞତା ନଥିଲା । ଏମିତି ବହୁଲୋକ ଏବେ ସରକାରୀ ଆଇନ ଆଖିରେ ଜଙ୍ଗଲ ଏବଂ ଜମି ଜବରଦଖଲକାରୀ । ଆମ ଭାରତବର୍ଷରେ ଯେଉଁମାନଙ୍କ ଉଚ୍ଛେଦ ପର୍ବ ଆରମ୍ଭ ହୋଇଯାଇଛି ।

ସ୍ୱାଧୀନତା ପରେ ସାରା ଦେଶରେ ଯେତେ ସବୁ ଭୂସଂସ୍କାର ନୀତି କାର୍ଯ୍ୟକାରୀ ହୋଇଛି, ତା' ଭିତରୁ କୌଣସିଟିକୁ ବାସ୍ତବ ସମ୍ମତ-ପୂର୍ଣ୍ଣାଙ୍ଗ ତଥା ଜନ-ଦରଦୀ ଭୂସଂସ୍କାର ନୀତି ବୋଲି କୁହାଯାଇ ପାରିବ ନାହିଁ । ପ୍ରଶାସନିକ ଅବହେଳା କାରଣରୁ ଭୂସଂସ୍କାର ନୀତି ସଫଳତାର ସହ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ବୋଲି ଖୋଦ୍ ସରକାର ସ୍ୱୀକାର କରୁଥିବା ବେଳେ, ବାସ୍ତବରେ ଶ୍ରେଣୀ ସ୍ୱାର୍ଥ ଦୃଷ୍ଟିରୁ ସରକାର ହିଁ ସେଥିପାଇଁ ଦାୟୀ; ଅର୍ଥାତ ଜାଣି ଶୁଣି ସେ ଆଇନରେ ଏପରି ଫାଙ୍କ ରଖି ଦିଆଗଲା, ପୁଣି ଏପରି ଚତୁରତାରେ ତାହା ଶୀତଳ ଭଣ୍ଡାରର ବସ୍ତୁ କରି ଦିଆଗଲା ଯେ, ଯେପରି ତାହା ଯଥାଯଥ ଭାବେ କାର୍ଯ୍ୟକାରୀ ହୋଇ ପାରିବ ନାହିଁ । ଅନ୍ୟ ପକ୍ଷରେ ୧୯୪୬ରୁ ୧୯୫୧, ଯଦି ହାଇଦ୍ରାବାଦ ନିଜାମ ତଥା ତାଙ୍କର ବର୍ବର ରାଜାକାର ବାହିନୀ ବିରୁଦ୍ଧରେ ତେଲେଙ୍ଗାନାରେ ରକ୍ତରଂଜିତ ସଶସ୍ତ୍ର କୃଷକ ଅଭ୍ୟୁତ୍ଥାନ ଘଟି ନଥାନ୍ତା- ଏବଂ ତାକୁ ଧୂଳିସାତ୍ କରି ବିକଳ୍ପ ଆବିର୍ଭାବ ରୂପେ ସନ୍ଥ ବିନୋବା ଭାବେଙ୍କ ଶାନ୍ତି ଯଜ୍ଞ ଏବଂ ଭୂଦାନ ଯାତ୍ରା ଯଦି ପ୍ରହସନରେ ପରିଣତ ହୋଇନଥାନ୍ତା- ତେବେ ସ୍ୱାଧୀନତାର ଆଦ୍ୟ ପର୍ବର ଯେଉଁ ଭୂସଂସ୍କାର ତାହା କେବେ ବି ହୋଇ ନଥାନ୍ତା । (ଏଠାରେ ପ୍ରକାଶ ଥାଉକି ସ୍ୱାଧୀନତା ପରେ ୧୯୪୭ର ଶେଷଭାଗ ଆଡ଼କୁ ଦେଶୀୟ ରାଜ୍ୟ ନୀଳଗିରିରେ ମଧ୍ୟ ଦେଖା ଦେଇଥିଲା ରାଜା ବିରୋଧୀ ସଶସ୍ତ୍ର ଉତ୍‌ଥାନ ଏବଂ ସାରା ଭାରତବର୍ଷରେ ନୀଳଗିରି ହିଁ ପ୍ରଥମ ଗଡ଼ଜାତ, ଯାହାର ୧୯୪୭ ନଭେମ୍ବର ୧୪ରେ ଓଡ଼ିଶା ସହ ମିଶ୍ରଣ ଘଟିଥିଲା ।) ସେଇଭଳି ୧୯୬୭ ଏବଂ ୧୯୬୯ରେ ପଶ୍ଚିମବଂଗର ନକ୍ସାଲବାଡ଼ି ଓ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମରେ ଯଦି ଭାରତ କଂପେଇ ଦେବା ଭଳି ମହାନ କୃଷି ବିପ୍ଳବ ଘଟି ନଥାନ୍ତା- ତେବେ ପରବର୍ତ୍ତୀ କାଳର ଯେତେ ଯାହା ଭୂସଂସ୍କାର ତାହା କେବେ ବି ଆସି ନଥାନ୍ତା । ଖାଲି ଏ ଦୁଇଟି ଜାଗା ନୁହେଁ, ସେତେବେଳେ ତାହା ପ୍ରତିଧ୍ୱନିତ ହୋଇଥିଲା- ଆନ୍ଧ୍ରର ପାର୍ବତୀପୁରମ୍, ତେଲେଙ୍ଗାନା/ଓଡ଼ିଶା ସୀମା ପଶ୍ଚିମବଂଗର ମେଦିନୀପୁର ଜିଲ୍ଲାର ଗୋପୀବଲ୍ଲଭପୁର, ଦେବ୍ରା/ଉତ୍ତର ପ୍ରଦେଶର ଲକ୍ଷ୍ମୀପୁର/ବିହାରର ଭୋଜପୁର/ ମଧ୍ୟପ୍ରଦେଶର ଛତିଶଗଡ଼/ କେରଳର ୱାଇନାଦ ତଥା ଓଡ଼ିଶାର କୋରାପୁଟ-ଗଞ୍ଜାମ ସହ ପଞ୍ଜାବ, ମହାରାଷ୍ଟ୍ର ଆଦି ରାଜ୍ୟରେ । ବିପ୍ଳବୀ

ଆଦିବାସୀ ଓ କ୍ରାନ୍ତିକାରୀ ଦଳିତ ସତ୍ତା ଶ୍ରେଣୀ ସଂଗ୍ରାମର ବେସାଲିସ୍ ତୋଫାନରେ ସେଦିନ ଥରାଇ ଦେଇଥିଲେ ଭାରତ ଆକାଶ । ସେଦିନ ବିଶ୍ୱ ଚମତ୍କୃତ ହୋଇ ଦେଖିଥିଲା ବିପ୍ଳବ ପଥରେ ଆଗେଇ ଚାଲିଚି ଭାରତୀୟ ଜନତା । (ଏଠାରେ ପ୍ରକାଶ ଥାଉ କି, ଏହି କ୍ରାନ୍ତିକାରୀ ଅଭ୍ୟୁତ୍‌ଥାନରେ ହଜାର ହଜାର ଛାତ୍ରଛାତ୍ରୀ, ତରୁଣ-ତରୁଣୀ, ବୁଦ୍ଧିଜୀବୀ ଏବଂ ଅଣଆଦିବାସୀ କୃଷକ ସହିତ ଆଦିବାସୀ କୃଷକ ମଧ୍ୟ ନିଜର ଚରମ ଆତ୍ମବଳିଦାନରେ ଗୌରବାନ୍ୱିତ କରିଥିଲେ ଦେଶକୁ ।) ଏହା ଖୋଲା କଥା ଯେ, ଏଇ ସବୁ ଭୂସଂସ୍କାରରେ ଶାସକ ଓ ପ୍ରଶାସକ କାହାରିବି ତିଳେ ହେଲେ ଆନ୍ତରିକତା ନଥିଲା । କେବଳ ସିଂହାସନ ଟଳିଯିବା ଭୟରୁ ସେସବୁ ବାଧ୍ୟତାରେ ହୋଇଥିଲା ।

(ଏଠାରେ ଉଲ୍ଲେଖଯୋଗ୍ୟ ଯେ, ବାମପନ୍ଥୀ ସରକାର ଦ୍ୱାରା ୭୦ ଦଶକର ଶେଷ ଓ ୮୦ ଦଶକର ପ୍ରଥମାର୍ଦ୍ଧରେ ପ୍ରବର୍ତ୍ତିତ ଭୂସଂସ୍କାର କାର୍ଯ୍ୟକ୍ରମ ବସ୍ତୁତଃ ବିଫଳ ହୋଇଯିବା କଥା ରାଜ୍ୟ ଯୋଜନା ଓ ବିକାଶ ମନ୍ତ୍ରଣାଳୟ ପକ୍ଷରୁ ନିକଟରେ ପ୍ରକାଶ ପାଇଥିବା ରିପୋର୍ଟରୁ ଜଣାପଡ଼ିଛି ।)

## ଆଦିବାସୀ ଉଚ୍ଛେଦ ପ୍ରସଙ୍ଗ

ଭାରତବର୍ଷରେ ସମୁଦାୟ ଲୋକସଂଖ୍ୟାର ଦଶକୋଟି ହେଉଛନ୍ତି କେବଳ ଆଦିବାସୀ । ଏମାନଙ୍କର ସାମାଜିକ, ରାଜନୈତିକ, ଅର୍ଥନୈତିକ ତଥା ଶିକ୍ଷା ସ୍ୱାସ୍ଥ୍ୟର ବିକାଶ ବୋଲି ଯାହା କୁହାଯାଉଛି, ତାହା କେତେ ଦୂର, କେଉଁ ଢଙ୍ଗରେ ?? (ଏଠାରେ ଏତିକି ସ୍ମରଣ କରି ଦେଲେ ଯଥେଷ୍ଟ ହେବ ଯେ, ବ୍ରିଟିଶ ପରାଧୀନ ଭାରତବର୍ଷରେ ତତ୍କାଳୀନ ସମାଜର ମଧ୍ୟବର୍ଗ ଓ ଉଚ୍ଚବର୍ଗ ଭିତରୁ କିଛି ଚାକିରିଆ, କିଛି ବ୍ୟବସାୟୀ ଏବଂ କିଛି ରାଜନୀତିଜ୍ଞ ସୃଷ୍ଟି କରିଥିଲେ । ଆଜି ଆଦିବାସୀଙ୍କ ଭିତରେ ସିମିତି ଏକ ବର୍ଗ ନିର୍ମାଣ କରୁଛନ୍ତି ଭାରତୀୟ ଶାସକ ଶ୍ରେଣୀ) ।

ଆଜି ଯେ ସାରା ଦେଶରେ ଆଦିବାସୀ ଉଚ୍ଛେଦ ନାମରେ ଜାଗାକୁ ଜାଗା ସଶସ୍ତ୍ର ଆକ୍ରମଣର ପର୍ବ ଆରମ୍ଭ ହୋଇଯାଇଛି, ଯାର ପୃଷ୍ଠଭୂମି କ'ଣ ? ପର୍ଦ୍ଦା ଅନ୍ତରାଳରୁ କେଉଁମାନେ ଏହାର ଗୋଟି ଚଳାଇଛନ୍ତି ? ପୁଣି କେଉଁ ପ୍ରୟୋଜନରେ ଏଇ ବର୍ବର ଆୟୋଜନ ???

## ଇତି କଥା

ଏହା ସତ ଯେ ବର୍ତ୍ତମାନ ସମଗ୍ର ବସୁଧା ବିପନ୍ନ ଅବସ୍ଥାରେ ଅଛି । କିନ୍ତୁ ସେଥିପାଇଁ ଆଦିବାସୀ କେତେ ମାତ୍ରାରେ ଦାୟୀ ?

ସେତେବେଳେ ୧୯୯୫ ମସିହା । କେରଳର ବାସିନ୍ଦା ଟି.ଏନ୍. ଗୋଦାବର୍ମନ ଥିରୁମୁଲକ୍ପାଡ୍‌ଙ୍କ ଦ୍ୱାରା ଆଗତ ଜଙ୍ଗଲ ଓ ପରିବେଶ ସଂକ୍ରାନ୍ତୀୟ ରିଟ୍ ପିଟିସନ୍ (ନଂ.୨୦୨/୯୫) ଯାହାକି ଜୈବିକ ଦୃଷ୍ଟିକୋଣରୁ ଆବେଗଶୀଳ ଅଂଚଳ, ଯଥା: ପାହାଡ଼ିଆ ଅଂଚଳ, ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ ଇତ୍ୟାଦିକୁ କେନ୍ଦ୍ର କରି ମୁଖ୍ୟତଃ ଦାଏର ହୋଇଥିଲା । ଏହା ଉପରେ ବିଚାର ଆରମ୍ଭ କରି ସୁପ୍ରିମ୍ କୋର୍ଟ ପର୍ଯ୍ୟାୟକ୍ରମେ ଜଙ୍ଗଲ ସଂକ୍ରାନ୍ତୀୟ ସମସ୍ୟାବଳୀକୁ ବିସ୍ତୃତ ଭାବେ ତର୍ଜମା କରିବାର ଆବଶ୍ୟକତା ଅନୁଭବ କଲେ । ପରବର୍ତ୍ତୀ କାଳରେ ଜଙ୍ଗଲ ସଂପର୍କୀତ ଅନ୍ୟାନ୍ୟ ସମସ୍ୟା ସହ ଜଙ୍ଗଲ ଜମି ଜବରଦଖଲ ମଧ୍ୟ ସୁପ୍ରିମକୋର୍ଟଙ୍କ ବିଚାର ପରିସରକୁ ଆସିଗଲା । ତା୪.୩.୧୯୯୭ରେ ସୁପ୍ରିମକୋର୍ଟ ତାଙ୍କର ମଧ୍ୟବର୍ତ୍ତୀକାଳୀନ ନିର୍ଦ୍ଦେଶନାମା ବଳରେ ବନମହା ନିରୀକ୍ଷକ ସଦସ୍ୟ ଥାଇ ଗୋଟିଏ ଉଚ୍ଚ କ୍ଷମତାପନ୍ନ କମିଟି ଗଠନ କଲେ । ଏହି କମିଟି ଜଙ୍ଗଲ ସମ୍ପର୍କୀତ ସୁପ୍ରିମ କୋର୍ଟଙ୍କର ସମସ୍ତ ନିର୍ଦ୍ଦେଶନାମାକୁ କାର୍ଯ୍ୟକାରୀ କରିବା ନିମିତ୍ତ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିବାକୁ ଆଦେଶ ଜାରି କଲେ ଏବଂ ଏହି ଉଚ୍ଚ କ୍ଷମତାସଂପନ୍ନ କମିଟିକୁ କ୍ଷମତା ପ୍ରଦାନ କରାଗଲା ।

ତା୨୩.୧୧.୨୦୦୧ରେ ଉକ୍ତ ରିଟ୍ ପିଟିସନ୍‌କୁ ଆଧାର କରି ସୁପ୍ରିମ କୋର୍ଟ ତାଙ୍କର ମଧ୍ୟବର୍ତ୍ତୀକାଳୀନ ନିର୍ଦ୍ଦେଶରେ ଜବରଦଖଲ ନିୟମିତ କରାଯିବାକୁ ନିଷିଦ୍ଧ କଲେ । ସେଇ ନିର୍ଦ୍ଦେଶରେ ଓଡ଼ିଶା ସମେତ ପଶ୍ଚିମବଂଗ, କର୍ଣ୍ଣାଟକ, ତାମିଲନାଡୁ, ଆସାମ, ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଛତିଶଗଡ଼ ଏବଂ କେରଳ ରାଜ୍ୟର ମୁଖ୍ୟ ଶାସନ ସଚିବ ମାନଙ୍କୁ ସତ୍ୟପାଠ ଦାଖଲ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଉକ୍ତ ସତ୍ୟପାଠରେ ନିମ୍ନଲିଖିତ ବିଷୟବସ୍ତୁକୁ ଉପସ୍ଥାପନା କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । (୧) ଜଙ୍ଗଲରୁ ଜବର ଦଖଲ ହଟାଇବା ପାଇଁ କେଉଁ କେଉଁ ପଦକ୍ଷେପ ଗ୍ରହଣ କରାଯାଇଛି, ତାର ସଂପୂର୍ଣ୍ଣ ବିବରଣୀ; (୨) ଉଚ୍ଛେଦ କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ହେବେ କି କି ପଦକ୍ଷେପ ନେବାର ଆବଶ୍ୟକତା ରହିଛି । ତା୩.୫.୨୦୦୨ରେ ବନ ମହାନିରୀକ୍ଷକ ଯେଉଁ ଜବରଦଖଲ ଗୁଡ଼ିକ ମାର୍ଗ ଦର୍ଶିକା ଅନୁସାରେ ନିୟମିତ ହେବାକୁ ଅଯୋଗ୍ୟ, ସେ ସବୁକୁ ତା୩୦.୯.୨୦୦୨ ପୂର୍ବରୁ ଉଚ୍ଛେଦ କରିବାକୁ ରାଜ୍ୟ ସରକାର ମାନଙ୍କୁ ନିର୍ଦ୍ଦେଶ ଦେଲେ ଏବଂ ରାଜ୍ୟରେ ଥିବା ଜବରଦଖଲକାରୀଙ୍କର ଏକ ବିସ୍ତୃତ ତାଲିକା ପ୍ରସ୍ତୁତ କରି ତା୩୦.୬.୨୦୦୨ ସୁଦ୍ଧା ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟକୁ ଜଣାଇବାକୁ କହିଲେ ।

ଭାରତ ସରକାରଙ୍କ ପରିବେଶ ମନ୍ତ୍ରଣାଳୟ ସମସ୍ତ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ମୁଖ୍ୟ ଶାସନ ସଚିବ ମାନଙ୍କ ନିକଟକୁ ପତ୍ର ପଠାଇ ଜଣାଇଲେ- ବର୍ତ୍ତମାନ ଆମ ଦେଶରେ

ପ୍ରାୟ ୧୨.୫ ଲକ୍ଷ ହେକ୍ଟରରୁ ଉର୍ଦ୍ଧ୍ୱ ଜଙ୍ଗଲ ଜମି ଜବର ଦଖଲକାରୀଙ୍କ କବ୍‌ଜାରେ ରହିଛି । ଏହି ଜବରଦଖଲକାରୀଙ୍କୁ ହଟେଇବା ପାଇଁ ରାଜ୍ୟ ସରକାରଙ୍କୁ ବିଭିନ୍ନ ସମୟରେ ଅନୁରୋଧ କରାଯାଇଥିଲେ ମଧ୍ୟ ସମୟାନୁସାରେ ଏହାର କୌଣସି ଫଳ ମିଳି ନାହିଁ । ଏହାଦ୍ୱାରା ଜଙ୍ଗଲ ସମ୍ପଦ ନଷ୍ଟ ହୋଇଛି, ବନ୍ୟଜନ୍ତୁ ଶିକାର ମଧ୍ୟ ବୃଦ୍ଧି ପାଇଛି । ଏଥିପାଇଁ ପରିବେଶ ମନ୍ତ୍ରଣାଳୟ ଦ୍ୱାରା ଜାରି କରାଯାଇଥିବା ପଥ ପ୍ରଦର୍ଶିକା ନଂ.୧୩.୧/୯୦-ଏଫ୍.ପି.(୧) ତା୧୮.୯.୯୦ ଅନୁଯାୟୀ ଯେଉଁ ଜବର ଦଖଲ ଗୁଡ଼ିକ ନିୟମିତ ହେବା ପାଇଁ ଅଯୋଗ୍ୟ, ସେ ଗୁଡ଼ିକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଉଚ୍ଛେଦ କରାଯିବା ଦରକାର ଏବଂ ଯେକୌଣସି ପରିସ୍ଥିତିରେ ମଧ୍ୟ ଏହା ୩୦ ସେପ୍ଟେମ୍ବର ୨୦୦୨ ସୁଦ୍ଧା ଶେଷ ହେବା ଦରକାର । ଏହି ନିର୍ଦ୍ଦେଶ ପରେ ପରେ ରାଜ୍ୟ ସରକାର ମାନେ ଆଦିବାସୀ ଉଚ୍ଛେଦ ପର୍ବରେ ବେଶ୍ ସକ୍ରିୟ ହୋଇଉଠିଲେ । ଫଳରେ ଉଚ୍ଛେଦ ଅଭିଯାନକୁ ନେଇ ବିଭିନ୍ନ ମହଲରେ ବିଭିନ୍ନ ପ୍ରତିକ୍ରିୟା ପ୍ରକାଶ ପାଇଲା ।

ତା.୯.୫.୨୦୦୨ରେ ସୁପ୍ରିମକୋର୍ଟ ପରିବେଶ (ସଂରକ୍ଷଣ) ଆଇନ-୧୯୮୬, ଧାରା ୩ ମୁତାବକ କେନ୍ଦ୍ର ସରକାର ଗୋଟାଏ ଷ୍ଟାଚୁଟୋରୀ ଏଜେନ୍ସି ଗଠନ କରିବା ପର୍ଯ୍ୟନ୍ତ ଜାତୀୟସ୍ତରରେ ଏକ କେନ୍ଦ୍ରୀୟ କ୍ଷମତାସଂପନ୍ନ କମିଟି ଗଠନ ହେବା ଦରକାର ବୋଲି କହିଲେ । ଜବରଦଖଲ ଉଚ୍ଛେଦ, ୱାର୍କିଂ ପ୍ଲାନ, କମ୍ପେନ୍‌ସେଟୋରୀ ଆଫରେଷ୍ଟେସନ, ବନୀକରଣ ଏବଂ ସଂରକ୍ଷଣ ସମ୍ବନ୍ଧିତ ସମସ୍ତ ମଧ୍ୟବର୍ତ୍ତୀକାଳୀନ ଦରଖାସ୍ତ ତଥା ରାଜ୍ୟ ସରକାରଙ୍କ ଦ୍ୱାରା ଉପସ୍ଥାପିତ କରାଯାଉଥିବା ସତ୍ୟ ପାଠକୁ ଏହି କମିଟି ଯାଞ୍ଚ କଲାପରେ ସୁପାରିଶ ସହ ମାନ୍ୟବର ସୁପ୍ରିମକୋର୍ଟଙ୍କ ସମ୍ମୁଖରେ ଆଦେଶ ପାଇଁ ଉପସ୍ଥାପିତ କରିବେ ।

ଏଇ ଭିତ୍ତିରେ ସେଇଦିନ ସୁପ୍ରିମକୋର୍ଟ ଏକ ପାଞ୍ଚ ସଭ୍ୟ ବିଶିଷ୍ଟ କମିଟି ସେଣ୍ଟ୍ରାଲ ଏମ୍‌ପାୱାରଡ୍ କମିଟି (ସିଇସି) ଗଠନ କଲେ । ଏହାର ଅଧ୍ୟକ୍ଷ ହେଲେ ଜଙ୍ଗଲ ଓ୍ ପରିବେଶ୍ ମନ୍ତ୍ରଣାଳୟର ସଚିବ ପି.ବି. ଜନକୃଷନ । ଏହି କମିଟି ବିସ୍ତୃତ ଆଲୋଚନା ପରେ ସୁପାରିଶ (ରେକମେଣ୍ଡେସନ)ସୁପ୍ରିମକୋର୍ଟକୁ ପଠାଇଥିଲେ । ନିମ୍ନରେ ତାହା ରଖାଗଲା ।

## କେନ୍ଦ୍ରୀୟ କ୍ଷମତାପନ୍ନ କମିଟିର ସୁପାରିଶ

୧. ଭବିଷ୍ୟତରେ ଯଦି ଅଧିକ ଜବରଦଖଲ ହୁଏ ତା' ହେଲେ ସେଭଳି କୌଣସି ଜବରଦଖଲକୁ କୌଣସି ପରିସ୍ଥିତିରେ ମଧ୍ୟ ନିୟମିତ କରାଯିବ ନାହିଁ ।

୨. ଜଙ୍ଗଲ ଅପରାଧ ରିପୋର୍ଟକୁ ଆଧାର ଭାବେ ବିଚାର କରି ୧୯୮୦ ପୂର୍ବବର୍ତ୍ତୀ ଜବରଦଖଲକାରୀଙ୍କୁ ଚିହ୍ନଟ କରାଯିବ ।

୩. ନିୟମିତ ହେବା ପାଇଁ ଅଯୋଗ୍ୟ ବିବେଚିତ ସମସ୍ତ ଜବରଦଖଲକୁ ଉଚ୍ଛେଦ କରାଯିବ ।

୪. ରାଜ୍ୟର ମୁଖ୍ୟ ସଚିବମାନେ ଏହାର ସଠିକ କାର୍ଯ୍ୟକାରିତା ପାଇଁ ବ୍ୟକ୍ତିଗତ ଭାବେ ଦାୟୀ ରହିବେ ।

୫. ମୁଖ୍ୟ ଶାସନ ସଚିବ, ପୋଲିସ ମହାନିର୍ଦ୍ଦେଶକ, ମୁଖ୍ୟ ବନସଂରକ୍ଷକ ଏବଂ ଜଙ୍ଗଲ ସଚିବଙ୍କୁ ନେଇ ରାଜ୍ୟସ୍ତରରେ ଏକ କମିଟି ଗଢ଼ାଯିବ, ଯେ କି ଏ କାର୍ଯ୍ୟ ତଦାରଖ କରିବେ ।

୬. ଅତି କମ୍‌ରେ ଜବରଦଖଲ ଉଚ୍ଛେଦର ୭ ଦିନ ପୂର୍ବରୁ ସ୍ଥାନୀୟ ଭାଷାରେ ପ୍ରକାଶିତ ଏକ ଖବରକାଗଜରେ ଏ ସଂପର୍କରେ ତଥ୍ୟ ପ୍ରକାଶିତ ହେବ ।

୭. ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଉଚ୍ଛେଦ କାର୍ଯ୍ୟକ୍ରମ ସଫଳ ନହେଲେ ରାଜ୍ୟକୁ କେନ୍ଦ୍ରୀୟ ସହାୟତା ବନ୍ଦ କରାଯିବ ।

୮. ଯଦି ରାଜ୍ୟ ସରକାରମାନେ ଜବରଦଖଲ ଉଚ୍ଛେଦ କରିବାରେ ବିଫଳ ହୁଅନ୍ତି, ତା'ହେଲେ ରାଜ୍ୟ ସରକାରଙ୍କୁ ପରିବେଶ କ୍ଷତି ବାବଦକୁ ପ୍ରତି ହେକ୍ଟର ପିଛା ମାସିକ ୧୦୦୦ ଟଙ୍କା ହାରରେ କ୍ଷତି ପୂରଣ ଦେବାକୁ ପଡ଼ିବ ।

୯. ଉଚ୍ଚ କ୍ଷମତାପନ୍ନ କମିଟି ଉଚ୍ଛେଦ ଦାୟିତ୍ୱରେ ଥିବା ଯେକୌଣସି ଅଧିକାରୀଙ୍କୁ କାର୍ଯ୍ୟରେ ଅବହେଳା ପାଇଁ ମାସିକ ୧୦୦ ଟଙ୍କା ହାରରେ ଜୋରିମାନା କରି ପାରିବେ ।

୧୦. ରାଜସ୍ୱ, ପୋଲିସ ଓ ଜଙ୍ଗଲ ବିଭାଗ ଅଧିକାରୀଙ୍କ ଜବର ଦଖଲ ଉଚ୍ଛେଦ କାର୍ଯ୍ୟର ଦକ୍ଷତା ତାଙ୍କର ବାର୍ଷିକ ଗୁପ୍ତ ପଞ୍ଜିକାରେ ଲିପିବଦ୍ଧ ରହିବ ।

୧୧. କୌଣସି ଭାରପ୍ରାପ୍ତ ଅଧିକାରୀ ଜବରଦଖଲ ଉଚ୍ଛେଦ କରିବାକୁ ଯାଇ ଯଦି କୌଣସି ପ୍ରକାରେ ନିର୍ଯାତିତ ହୁଅନ୍ତି, ତା'ହେଲେ ସେ ଉଚ୍ଚ କ୍ଷମତାପନ୍ନ କମିଟି ମାଧ୍ୟମରେ ସୁପ୍ରିମକୋର୍ଟର ଦ୍ୱାରସ୍ଥ ହୋଇପାରିବେ ।

୧୨. ସବୁଠୁଁ ମଜା କଥା ହେଲା, ଯଦି ଉଚ୍ଛେଦ ସମୟରେ କୌଣସି ପଦାଧିକାରୀ ଅଧିକ ବଳ ପ୍ରୟୋଗ କରିଥାନ୍ତି, ସେପରି ଘଟଣାଗୁଡ଼ିକୁ ଆଦିବାସୀ ହରିଜନ ଆଟ୍ରୋସିଟି ଆକ୍ଟ ଅନ୍ତର୍ଗତ ଗ୍ରହଣ କରାନଯାଇ ତାର ସମୀକ୍ଷା ନିମନ୍ତେ କେନ୍ଦ୍ରୀୟ କମିଟିକୁ ଦିଆଯିବ । କେନ୍ଦ୍ରୀୟ କ୍ଷମତାପନ୍ନ କମିଟି ତାର ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଫଳାଫଳ ନିର୍ଣ୍ଣୟ କରିବେ ।

୧୩. ନିୟମିତ କରାଯାଇଥିବା ଜବରଦଖଲ ଜମିର ମାଲିକାନା ଭବିଷ୍ୟତରେ କେବଳ ଉତ୍ତରାଧିକାରୀ ସୂତ୍ରରେ ପରିବର୍ତ୍ତିତ ହୋଇ ପାରିବ, ବିକ୍ରି-ଖର୍ଦ୍ଦି ସୂତ୍ରରେ ନୁହେଁ ।

୧୪. ପରିବେଶ କ୍ଷତି ବାବଦକୁ ଜବରଦଖଲକାରୀଙ୍କ ଠାରୁ କ୍ଷତି ଭରଣା କରାଯିବ ।

୧୫. ରାଜ୍ୟ ସରକାର ମାନେ ଚାହିଁଲେ ଜବର ଦଖଲରୁ ଉଚ୍ଛେଦ ହେଉଥିବା ଲୋକମାନଙ୍କୁ, ବିଶେଷ କରି ଆଦିବାସୀମାନଙ୍କୁ ଆବଶ୍ୟକୀୟ କ୍ଷତିପୂରଣ ଦେଇ ପାରନ୍ତି ।

୧୬. ରାଜ୍ୟସ୍ତରୀୟ କମିଟି ଜବରଦଖଲ ଉଚ୍ଛେଦ ପାଇଁ ଆବଶ୍ୟକୀୟ ଭିତ୍ତିଭୂମି ଅଛି କି ନାହିଁ ତାର ସମୀକ୍ଷା କରିବା ସହ ଶୂନ୍ୟ ପଦବୀ ପୂରଣ ଇତ୍ୟାଦି କାର୍ଯ୍ୟ କରି ପାରିବେ ।

୧୭. ଉପରୋକ୍ତ ଆଦେଶମାନଙ୍କୁ ଯଦି ପୂର୍ବରୁ କୌଣସି ସରକାର, ଟ୍ରିବ୍ୟୁନାଲ କି ହାଇକୋର୍ଟଙ୍କ ଦ୍ୱାରା ଦିଆଯାଇଥିବା କୌଣସି ନିର୍ଦ୍ଦେଶ ବିରୁଦ୍ଧାଚରଣ କରୁଥାଏ, ତା'ହେଲେ ଏଇ ନିର୍ଦ୍ଦେଶ ନାମା ହିଁ ବଳବତ୍ତର ରହିବ ।

ମାନ୍ୟବର ସୁପ୍ରିମକୋର୍ଟ କେନ୍ଦ୍ରୀୟ ଉଚ୍ଚ କ୍ଷମତାପନ୍ନ କମିଟି (ସିଇସି)ର ଏହି ସୁପାରିଶକୁ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ ବ୍ୟତୀତ ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଂଚଳରେ କାର୍ଯ୍ୟକାରୀ କରିବାକୁ ଆବଶ୍ୟକୀୟ ନିର୍ଦ୍ଦେଶନାମା ଜାରି କରନ୍ତୁ ।

## କେନ୍ଦ୍ର ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟର ଭୂମିକା

ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ୦୩ ମଇ ୨୦୦୨ରେ ଏକ ବିଷଦ ଆଦେଶନାମା ସମସ୍ତ ରାଜ୍ୟ ସରକାରଙ୍କ ନିକଟକୁ ପଠାଇଥିଲେ । ସେଥିରେ ରାଜ୍ୟ ସମୂହଙ୍କ ପ୍ରତି ଜଙ୍ଗଲ ଭିତରେ ଥିବା ଜବରଦଖଲକାରୀମାନଙ୍କୁ ତୁରନ୍ତ ହଟାଇ ଦେବା ଲାଗି ନିର୍ଦ୍ଦେଶ ରହିଥିଲା । ୧୯୮୦ ଜଙ୍ଗଲ ଆଇନ, ଅକ୍ଟୋବର ୨୫, ୧୯୮୦କୁ ସେଥିରେ ବିଭାଜନ ରେଖା ରୂପେ ଉପସ୍ଥାପିତ କରାଯାଇଥିଲା । ବାସ୍ତବରେ କେନ୍ଦ୍ର ସରକାର ଓ ସୁପ୍ରିମକୋର୍ଟଙ୍କ ଭୂମିକା ଥିଲା ସଣ୍ଢୁଆସୀ ପରି, ଆଦିବାସୀ ଉଚ୍ଛେଦ ପାଇଁ ଯାହା ପ୍ରସ୍ତୁତ ହୋଇଥିଲା ।

ଏଥି ସହିତ ଭାରତ ସରକାର ବିଚାରପତି କ୍ରିପାଲଙ୍କ ଅଧ୍ୟକ୍ଷତାରେ ଏକ ଜାତୀୟ ଜଙ୍ଗଲ କମିଶନ ବସାଇଛନ୍ତି । ୨୦୧୩ ମସିହା ସୁଦ୍ଧା କିପରି ଜଙ୍ଗଲ ପରିମାଣ ୨୫% ବଢ଼ି ପାରିବ ସେଥିପାଇଁ ପ୍ରଚଳିତ ନୀତିନିୟମର ତର୍ଜମା କରି ଆବଶ୍ୟକୀୟ ପ୍ରସ୍ତାବ ଦେବା ପାଇଁ କମିଶନଙ୍କୁ କୁହାଯାଇଛି । ଏହାର ସରଳ ଅର୍ଥ ହେଲା, ଆହୁରି ଅଧିକରୁ ଅଧିକ ଅଭୟାରଣ୍ୟ, ଜାତୀୟ ପାର୍କ, ବନୀକରଣ ତଥା କମ୍ପାନୀମାନଙ୍କ ଦ୍ୱାରା ପ୍ଲାଣ୍ଟେସନ୍ ପ୍ରୋଜେକ୍ଟ, ତାହା କେବଳ ପ୍ରସ୍ତାବ ଆକାରରେ ନ ଆସି ବିଭିନ୍ନ ବଳ ପ୍ରୟୋଗ ମାଧ୍ୟମରେ କାର୍ଯ୍ୟକାରୀ ହେବ ।

## ପୂର୍ବ ଇତିହାସ

୨୪ ଅକ୍ଟୋବର ୧୯୮୦ରେ ବନସଂରକ୍ଷଣ ଅଧ୍ୟାଦେଶ ଜାରି ହୋଇଥିଲା । ଏଥିରେ କଟକଣା ରହିଥିଲା, ୨୫ ଅକ୍ଟୋବର ୧୯୮୦ ଠାରୁ କେନ୍ଦ୍ର ସରକାରଙ୍କ ବିନାନୁମତିରେ ରାଜ୍ୟ ସରକାର ମାନେ ଜଙ୍ଗଲ ଜମିକୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରି ପାରିବେ ନାହିଁ ।

୧୯୭୬ରେ ଜାତୀୟ କୃଷି କମିଶନ ୧୯୨୭ର ପୁରୁଣା ଜଙ୍ଗଲ ଆଇନ ସ୍ଥାନରେ ନୂଆ ଜଙ୍ଗଲ ଆଇନ ପ୍ରଣୟନ କରିବାକୁ ସୁପାରିଶ କଲେ । ସେଥିରେ ଜଙ୍ଗଲର ବ୍ୟବସାୟିକରଣ କରାଯାଇ ମୁଖ୍ୟତଃ ସେନା ବିଭାଗ ଓ ଶିଳ୍ପ ବିଭାଗର ଚାହିଦା ପୂରଣ ପାଇଁ ତାହା ବ୍ୟବହାର ହେବ ବୋଲି ସେ ଦୃଢ଼ ମତ ପୋଷଣ କରିବା ସହିତ ଜଙ୍ଗଲ ଜମି ଓ ଜଙ୍ଗଲ ଫସଲ ଉପରେ ଜଙ୍ଗଲ ଅଧିବାସୀଙ୍କର ଥିବା ଅଧିକାରକୁ ସଂକୁଚିତ କରିବା ପାଇଁ ସୁପାରିଶ କଲେ । ଏହି ପ୍ରକ୍ରିୟାର ଫଳ ସ୍ୱରୂପ ଜଙ୍ଗଲ ସଂରକ୍ଷଣ ଆଇନ-୧୯୮୦ ପ୍ରଣୀତ ହେଲା ଓ ଜଙ୍ଗଲର ମୂଳ ଅଧିବାସୀଙ୍କ ଠାରୁ ଆରମ୍ଭ କରି ଜଙ୍ଗଲ ବିଭାଗ ଦ୍ୱାରା ବିଭିନ୍ନ ସମୟରେ ବସା ଯାଇଥିବା ଜଙ୍ଗଲ ଗାଁର ଅଧିବାସୀ ଏବଂ ଜଙ୍ଗଲ ଜମି ଚାଷ କରି ପେଟ ପୋଷୁଥିବା ଭୂମିହୀନ ଗରିବ ସହ ଲାଭଖୋର ଜମି ମାଫିଆ ତଥା ବହିରାଗତ ଅନୁପ୍ରବେଶକାରୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଧୂଆମୂଳା ଅଧୂଆ ମୂଳା ନ୍ୟାୟରେ ଏକା ଭଳି ତଉଲ କରାଗଲା । ଏମାନେ ସମସ୍ତେ ଜଙ୍ଗଲ ଜମି ଜବରଦଖଲକାରୀ ଭାବେ ବିବେଚିତ ହେଲେ । ଏହା ଆଶ୍ଚର୍ଯ୍ୟର କଥା ନୁହେଁ କି ?

ଅନ୍ୟ ଦିଗରେ ଚରମ ଅବାସ୍ତବତା, ଏକ ଦିଗ ଦର୍ଶୀତା ତଥା ଉଦ୍ଦେଶ୍ୟ ମୂଳକ ଭାବେ ଗଠନ କରାଗଲା କେନ୍ଦ୍ରୀୟ ଉଚ୍ଚ କ୍ଷମତାପନ୍ନ କମିଟି । ଏହି କମିଟିରେ କୌଣସି ଆଦିବାସୀ ପ୍ରତିନିଧି ନାହାନ୍ତି । ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟକୁ ସିଇସି ନିଜର ସୁପାରିଶ ପଠାଇବା ପୂର୍ବରୁ ଜାତୀୟ ଆଦିବାସୀ କମିଶନ ସହ କୌଣସି ପରାମର୍ଶ କଲେ ନାହିଁ କିମ୍ବା ମନ୍ତ୍ରଣାଳୟ ତରଫରୁ ମଧ୍ୟ କ୍ଷମତାପନ୍ନ କମିଟିକୁ ସେଭଳି କିଛି ପରାମର୍ଶ ଦିଆଗଲା ନାହିଁ । ଅନ୍ୟ ପକ୍ଷରେ ଏ ସଂପର୍କରେ ନ୍ୟାସନାଲ କମିଶନ ଫର୍ ଏସ୍‌ସି ଆଣ୍ଡ ଏସ୍‌ଟି (ଜାତୀୟ ହରିଜନ ଓ ଆଦିବାସୀ କମିଶନ)ଙ୍କ ୨୯ତମ ରିପୋର୍ଟ, ଅର୍ଥାତ ବି.ଡି. ଶର୍ମାଙ୍କ ରିପୋର୍ଟରେ ଦିଆଯାଇଥବବା ପୂର୍ବର ସବୁ ଜନଦରଦୀ ସୁପାରିଶ- ଏବଂ ସେଇ ଅନୁଯାୟୀ କେନ୍ଦ୍ର ସରକାରଙ୍କ ଦ୍ୱାରା ଜାରି ହୋଇଥିବା ବିଭିନ୍ନ ସରକୁଲାରକୁ ମଧ୍ୟ ବିଚାରକୁ ନିଆଗଲା ନାହିଁ । ବରଂ ଏହାଦ୍ୱାରା ସେଥିପ୍ରତି ଖୋଲାଖୋଲି ବେଖାତିର ପ୍ରକାଶ ପାଇଲା । ଏସବୁ ବିଚାରକୁ

ନେଲେ ଯେ କେହି ନିଷ୍ପକ୍ଷ ଲୋକ ଆଖି ବୁଜି କହି ପାରିବ ଯେ, ଏଇ ଉଚ୍ଛେଦ ଆୟୋଜନ ଉଦ୍ଦେଶ୍ୟମୂଳକ, ଯେକୌଣସି ମୂଲ୍ୟରେ ଏହା ଯେପରି କାର୍ଯ୍ୟକାରୀ ହୋଇ ପାରିବ କେନ୍ଦ୍ର ସରକାର ସେଇ ବାଟରେ ଚାଲିଛନ୍ତି ।

୧୯୮୯ ବେଳକୁ ହରିଜନ ଓ ଆଦିବାସୀ ଜାତୀୟ କମିଶନ ତାଙ୍କର ୨୯ତମ ରିପୋର୍ଟରେ ୧୯୮୦ ସୁଦ୍ଧା ଜବରଦଖଲରେ ଥିବା ସମସ୍ତ ଆଦିବାସୀଙ୍କୁ ଜଙ୍ଗଲ ଜମିର ପଟ୍ଟା ଦେବା ପାଇଁ କହିଥିଲେ । ତତ୍ ସଂଗେ ସଂଗେ ୧୯୮୦ ପରେ ଦଖଲ ହୋଇଥିବା ଜଙ୍ଗଲ ଜମିର କେଶକୁ ପରୀକ୍ଷା କରି ନିଷ୍ପତ୍ତି ନେବା ସହିତ ପ୍ରକୃତ ଭୂମିହୀନ ବନବାସୀଙ୍କୁ ଜମି ପଟ୍ଟା ଦେବା ପାଇଁ ମଧ୍ୟ କହିଥିଲେ । ୧୯୯୦ ମସିହା ସେପ୍ଟେମ୍ବର ୧୮ରେ ଖୁଦ୍ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ୬ଟି ସର୍କୁଲାର ମାଧ୍ୟମରେ ଏକ ମାର୍ଗଦର୍ଶିକା ଜାରି କରି ୧୯୮୦ ଅକ୍ଟୋବର ୨୫ ସୁଦ୍ଧା ଆଦିବାସୀମାନେ ଜବରଦଖଲ କରିଥିବା ସମସ୍ତ ଜଙ୍ଗଲ ଜମି ପଟ୍ଟା ଦେଇଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସର୍କୁଲାର ଅନୁଯାୟୀ ଜଙ୍ଗଲ ଅପରାଧ ବିବରଣୀ ଏହାର ମୂଳଭିତ୍ତି ହେବ । ଜଙ୍ଗଲ ବିଭାଗ ଓ ରେଭିନ୍ୟୁ ବିଭାଗ ପ୍ରତି ଗାଁକୁ ଯାଇ ଗ୍ରାମ ସଭା ସାହାଯ୍ୟରେ ଏହାର ମିଳିତ ତଦନ୍ତ କରିବେ । କିନ୍ତୁ ୧୯୯୦ରେ ଜାରି ଏହି ସର୍କୁଲାର ତଥା ତତ୍ପରବର୍ତ୍ତୀ ରାଜ୍ୟ ସରକାରଙ୍କ ବିଭିନ୍ନ ନିର୍ଦ୍ଦେଶନାମା କିଛି ହେଲେ କାର୍ଯ୍ୟକାରୀ ହେଲା ନାହିଁ ।

ସିମିତି ୧୯୯୫ ମସିହାରେ ମହାରାଷ୍ଟ୍ରର କଷ୍ଟକାରୀ ସଂଗଠନର ପ୍ରଦୀପ ପ୍ରଭୁ ବନାମ ମହାରାଷ୍ଟ୍ର ସରକାର ମାମଲାରେ ସୁପ୍ରିମକୋର୍ଟଙ୍କ ଦିଶା ନିର୍ଦ୍ଦେଶ ଅନୁଯାୟୀ ୧୯୮୦ ମସିହା ପୂର୍ବରୁ ଜଙ୍ଗଲ ଭିତରେ ରହି ଆସୁଥିବା ଲୋକଙ୍କୁ ଚିହ୍ନଟ କରି ପଟ୍ଟା ଦେବା ପାଇଁ ସରକାର ଯେଉଁ ସତ୍ୟ ପାଠ କରିଥିଲେ- ତାହା ଏ ଯାଏଁ କାଣିଚେ ବି କାର୍ଯ୍ୟକାରୀ କରାଗଲାନି । ସରକାର ଯେତେବେଳେ ସୁପ୍ରିମ କୋର୍ଟଙ୍କ ତତ୍କାଳୀନ ଦିଶା ନିର୍ଦ୍ଦେଶକୁ ଦୀର୍ଘ ସାତ ବର୍ଷ ଧରି ଲାଗୁ କଲେ ନାହିଁ, ସେତେବେଳେ ସେଇ ସୁପ୍ରିମକୋର୍ଟଙ୍କ ନଭେମ୍ବର ୨୩, ୨୦୦୧ ମସିହାର ଅନ୍ୟ ଏକ ନିର୍ଦ୍ଦେଶକୁ ଆଳ କରି ସେମାନଙ୍କୁ ଉଚ୍ଛେଦ କରିବା ପାଇଁ ଆଗେଇ ଆସିବା ଅଭିସନ୍ଧିମୂଳକ ନୁହେଁ କି ? ସେହିପରି ମାନ୍ୟବର ସୁପ୍ରିମକୋର୍ଟଙ୍କର ଏଇ ନିର୍ଦ୍ଦେଶ ଦେଶର ସବୁଠୁଁ ପଛୁଆ ବନବାସୀଙ୍କ ପ୍ରତି ଚରମ ଅବିଚାର ନୁହେଁ କି ?

ଏପରି ଏକ ଅପରିଣାମଦର୍ଶୀ ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରାଗଲେ (କେତେକ ରାଜ୍ୟରେ କାର୍ଯ୍ୟକାରୀ ହେଲାଣି) ସାରା ଭାରତରେ ୧୫.୫ ଲକ୍ଷ ହେକ୍ଟର ଜଙ୍ଗଲ ଜମି (ଏକ ହିସାବ ଅନୁଯାୟୀ ୩୧ ଲକ୍ଷ ୨୫ ହଜାର ଏକର ଜଙ୍ଗଲ ଜମି)ରୁ ଉତ୍ଖାତ ହୋଇ ଜୀବିକା ହରାଇ ଅନିର୍ଦ୍ଦିଷ୍ଟ ମରଣ ପଥରେ ଚାଲିବେ ୧୦ ଲକ୍ଷ ଆଦିବାସୀ ପରିବାର ।

ଅବଶ୍ୟ ଏହା ସରକାରୀ ତଥ୍ୟ, ଯାହା ଖବରକାଗଜରେ ପ୍ରକାଶ ପାଇଛି । କିନ୍ତୁ ବାସ୍ତବରେ ଆହୁରି ଅଧିକ ଆଦିବାସୀ ପରିବାର ଏହାଦ୍ୱାରା ସାରା ଦେଶରୁ ଉଚ୍ଛେଦ ହେବେ ଏବଂ ଯାଯାବର ବନିବେ ।ସେମାନଙ୍କ ସଂଖ୍ୟା ଅଧକୋଟିଏରୁ ଅଧିକ ହେବ । ଏତେ ସଂଖ୍ୟକ ସ୍ୱନିର୍ଭର ବନବାସୀଙ୍କୁ ଏକାଥରକେ ସର୍ବସ୍ୱହରା କରି ଅନିର୍ଦ୍ଦିଷ୍ଟ ପଥରେ ଠେଲି ଦେଲେ ଏ ଉପମହାଦେଶ ସ୍ଥିର ରହିବ ତ ?

ଅନ୍ୟ ପକ୍ଷରେ ଏହା ସମ୍ବିଧାନ ବିରୋଧୀ । ସରକାରଙ୍କର ଏଇ ନିର୍ଦ୍ଦେଶ ସମ୍ବିଧାନର ୫ମ ଓ ୬ଷ୍ଠ ଅନୁଚ୍ଛେଦକୁ ବିରୋଧ କରେ । ଆଦିବାସୀଙ୍କୁ ଜବରଦଖଲକାରୀ କହି ସେମାନଙ୍କୁ ଭିଟାମାଟିରୁ ହଟାଇବାକୁ ଏଇ ଯେ ନିର୍ଦ୍ଦେଶ, ତାହା ସମ୍ବିଧାନର ଧାରା ୨୧ର ବିପରିତ ଭାବେ ଦେଶର ଲକ୍ଷ ଲକ୍ଷ ବନବାସୀଙ୍କ ଜୀବନ ଓ ଜୀବିକାର ଶେଷ ସମ୍ବଳକୁ ଛଡ଼ାଇ ନିଏ । କାହିଁକି ନା ଜଙ୍ଗଲରେ, ବିଶେଷ କରି ଅନୁସୂଚିତ ଅଂଚଳରେ ଜମିର ଅଧିକାର କେବଳ ଆଦିବାସୀର, ଅନ୍ୟ କାହାରି ନୁହେଁ । ଆମର ଜାତୀୟ ଜଙ୍ଗଲ ନୀତି ଅନୁଯାୟୀ, କେନ୍ଦ୍ର ସରକାରଙ୍କର ଯେଉଁ ମୂଳ ଭାବନା ରହିବା ଉଚିତ, ତାହାହେଲା ଜଙ୍ଗଲ ଉପରେ ଆଦିବାସୀର ପାରମ୍ପରିକ ଅଧିକାରର ସଂପର୍କକୁ ସମ୍ମାନ ଦେବା । କିନ୍ତୁ ଏଇ ଉଚ୍ଛେଦ ନିର୍ଦ୍ଦେଶ ତାର ବିରୁଦ୍ଧାଚରଣ କରୁଛି ।

ପ୍ରଫୁଲ ସାମନ୍ତରା 'ସ୍ୱାଭିମାନ'ରୁ ସଂଗୃହୀତ- ''ଏଠାରେ ୧୯୯୭ ମସିହା ଜୁଲାଇ ମାସରେ ସୁପ୍ରିମ କୋର୍ଟ ଦେଇଥିବା ଏକ ରାୟ ବିଷୟରେ କୁହାଯାଇ ପାରିବ । ସମତା ବନାମ ଆନ୍ଧ୍ରପ୍ରଦେଶ ମଧ୍ୟରେ ହୋଇଥିବା ଏକ ମାମଲା ସଂକ୍ରାନ୍ତୀୟ ଶୁଣାଣିରେ ସୁପ୍ରିମକୋର୍ଟ ସାରା ଭାରତବର୍ଷରେ ଥିବା ସଂରକ୍ଷିତ ଅଂଚଳ ଉପରେ ତାଙ୍କ ରାୟରେ କହିଥିଲେ ଯେ, ସମ୍ବିଧାନର ୫ମ ଧାରାରେ ଲେଖାଅଛି, ଯେଉଁଠି ଆଦିବାସୀ ଅଂଚଳ ଅଛି, ସେଠିକାର ଜଙ୍ଗଲ ଓ ପ୍ରାକୃତିକ ସମ୍ପଦକୁ କୌଣସି ଅଣଆଦିବାସୀଙ୍କୁ ଦିଆଯାଇ ପାରିବ ନାହିଁ । ଏପରିକି 'A government as a person is a non tribal'-ଏହା ଥିଲା ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ । ସୁପ୍ରିମକୋର୍ଟ କହିଥିଲେ ଯେ, ସଂରକ୍ଷିତ ଅଂଚଳର ସମସ୍ତ ଅଧିକାର ସେ ଅଂଚଳର ଆଦିବାସୀଙ୍କ ପାଇଁ ସୁରକ୍ଷିତ । ସମ୍ବିଧାନକାରମାନେ ସମ୍ବିଧାନର ୫ମ ଧାରାରେ ଏ କଥା କହିବାର କାରଣ ହେଉଛି, ଦେଶର ଜଙ୍ଗଲ ଅଂଚଳ ଯଦି ଆଦିବାସୀ ଅଧିକାରରେ ରହିବ, ତାହେଲେ ତାହା ସୁରକ୍ଷିତ ରହି ପାରିବ । ମଣିଷ ସଭ୍ୟତା ବଂଚି ରହି ପାରିବ । ଏ ପ୍ରକୃତି ରହିଲେ ପରିବେ। ରହିବ । କିନ୍ତୁ ଏବେ ଆଦିବାସୀ ଅଂଚଳରେ କଣ ଘଟୁଛି ? ମାନ୍ୟବର ସୁପ୍ରିମକୋର୍ଟ ଓ ସରକାର କେଉଁ ରାସ୍ତାରେ ଚାଲିଛନ୍ତି ? ଏ ଉଚ୍ଛେଦ ଚକ୍ରାନ୍ତର ଶେଷ ଫଳାଫଳ କଣ ?'' ଅନ୍ୟ ପକ୍ଷରେ ସୁପ୍ରିମକୋର୍ଟଙ୍କର ୧୯୯୭ର ରାୟ ସହ ୨୦୦୧

ମସିହାର ଏଇ ଆଦିବାସୀ ଉଚ୍ଛେଦ ନିର୍ଦ୍ଦେଶ ନିଜର ସ୍ୱବିରୋଧୀତା ପ୍ରକଟ କରୁ ନାହିଁ କି ? ସମାଜର ସବୁଠୁଁ ତଳେ ଥିବା ଆଦିବାସୀ ସୁପ୍ରିମକୋର୍ଟଙ୍କର କେଉଁ ବିଚାରକୁ ଗ୍ରହଣ କରିବ ?

## ରାଷ୍ଟ୍ରପତି କେ.ଆର୍. ନାରାୟଣନଙ୍କ ସ୍ୱୀକାରୋକ୍ତି

ପ୍ରଫୁଲ୍ଲ ସାମନ୍ତରା, 'ସ୍ୱାଭିମାନ'- ''ଆଦିବାସୀ ସମାଜ ଉପରେ ଚାଲିଥିବା ଅତ୍ୟାଚାରକୁ ଲକ୍ଷ୍ୟରେ ରଖି ପୂର୍ବତନ ରାଷ୍ଟ୍ରପତି କେ.ଆର୍. ନାରାୟଣନ ଜାନୁଆରୀ ୨୬,୨୦୦୧ ପୂର୍ବଦିନ ରାତିରେ ଜାତି ଉଦ୍ଦେଶ୍ୟରେ ଯେ ଅଭିଭାଷଣ ରଖିଥିଲେ ତାହା ଏଠାରେ ଉପସ୍ଥାପନ କରାଗଲା । ସେ କହିଥିଲେ- ''ଯେଉଁମାନେ ହଜାର ହଜାର ବର୍ଷ ଧରି ପ୍ରକୃତି ସହିତ ମାନବ ପ୍ରଗତିକୁ ଧରି ରଖିଛନ୍ତି, ବଂଚିଛନ୍ତି- ସେମାନଙ୍କ ଶବ ଉପରେ ଯେ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଠିଆ ହୋଇଛି, ଏ କଥା ଯେମିତି ଭବିଷ୍ୟତ ବଂଶଧର ନକୁହନ୍ତୁ- ସେଥି ପାଇଁ ଅବଶ୍ୟ ଆମକୁ ବିଚାର କରିବାକୁ ପଡ଼ିବ । ଏବେ ଏହି ପ୍ରଚଳିତ ଧାରାର ପରିବର୍ତ୍ତନ ଆଣିବାକୁ ହେବ, ତେବେ ଯାଇ ଏ ଦେଶର ଗଣତନ୍ତ୍ର ସେମାନଙ୍କ ସହ ସମସ୍ତଙ୍କ ପାଇଁ ବଂଚି ରହିବ ।'' ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ ହେଉ ବରଂ ଦେଶର ପ୍ରଥମ ନାଗରିକ ଜଣେ ରାଷ୍ଟ୍ରପତି ଆଦିବାସୀ ସମସ୍ୟା ଉପଲବ୍ଧି କରିବା ସହିତ ତାହା ଖୋଲାଖୋଲି ସ୍ୱୀକାର କରିଥିଲେ । କିନ୍ତୁ ଏଇ ଗୁରୁତ୍ୱପୂର୍ଣ୍ଣ ଉକ୍ତିର ବ୍ୟାଖ୍ୟା ଏ ଯାଏଁ ଦେଶ କଲା କି ? ସମାଧାନ ତ ବହୁ ଦୂରର କଥା ।''

## ସ୍ୱାଧୀନତା ପରେ ରାଜ୍ୟ ଅଧୀନରେ ଜଙ୍ଗଲ

ଡକ୍ଟର ନିରୁପମା ବଡ଼ପଣ୍ଡା - ''କୌଣସି ସ୍ଥାନରେ ଜମିର ସ୍ୱତ୍ୱ ଦେବାର ଅଧିକାର ରାଜ୍ୟ ସରକାରଙ୍କର ଅଛି । ଏଥିପାଇଁ ତାଙ୍କର ବନ୍ଦୋବସ୍ତ ବିଭାଗ କାର୍ଯ୍ୟକ୍ରମ ଗ୍ରହଣ କରିଥାଏ । ଏକ ନିର୍ଦ୍ଦିଷ୍ଟ ସମୟସୀମା ଭିତରେ ଏଇ ବିଭାଗ କାର୍ଯ୍ୟକ୍ରମ ଗ୍ରହଣ କରି ଜମି ସ୍ୱତ୍ୱର ଅଧିକାର ପ୍ରଦାନ କରିଥାଏ । ଓଡ଼ିଶାର ଅନେକ ଅଂଚଳରେ ଏହି ବନ୍ଦୋବସ୍ତ କାର୍ଯ୍ୟକ୍ରମ ସନ୍ତୋଷଜନକ ଭାବରେ ହୋଇ ନାହିଁ ଓ ଯେତିକି ବି ହୋଇଛି ତାହା ଉପର ଠାଉରିଆ ଭାବରେ ହୋଇଛି । ଅତୀତ ଭାରତରେ ରାଜା ରାଜୁଡ଼ା ସମୟରେ ଏହି ଜମି ଚାଷ କରିବା ପାଇଁ ପ୍ରଜାମାନେ ବିଶେଷ ଅନୁମତି ପାଉଥିଲେ, କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ ସମୟରେ ଏହି ସୁଯୋଗ ଗୁଡ଼ିକ ସଂକୁଚିତ ହୋଇଯାଇଛି । ଏଥିପାଇଁ କିଛି ଉଦାହରଣ ଦିଆଯାଇ ପାରେ । ବାମରା, ବଣାଇ, କେଉଁଝର, ବୌଦ, ରଣପୁର, ମୟୂରଭଂଜ ଓ ନୀଳଗିରି ଆଦି ଅନେକ ଗଡ଼ଜାତ ଅଂଚଳରେ ଜଙ୍ଗଲ ଉପରେ ନିର୍ଭର କରୁଥିବା ଆଦିବାସୀମାନଙ୍କୁ ଅଣସଂରକ୍ଷିତ ଜମି ଚାଷ କରିବା ପାଇଁ ଅଧିକାର ଦିଆଯାଇଥିଲା । ଏ ଜମିଗୁଡ଼ିକ ପ୍ରାୟ ଖେସରା ଓ ଅନ୍ୟାନ୍ୟ କିସମର ଥିଲା । କିନ୍ତୁ ପରବର୍ତ୍ତୀ

କାଳରେ ଗଡ଼ଜାତ ରାଜ୍ୟ ମାନଙ୍କର ସମ୍ମିଶ୍ରଣ ଏବଂ ଜମିଦାରୀ ପ୍ରଥା ଉଚ୍ଛେଦ ପରେ ଏପରି ଅଂଚଳ ଗୁଡ଼ିକୁ ରାଜ୍ୟ ସରକାର ଜଙ୍ଗଲ ଜମି ଭାବରେ ଗ୍ରହଣ କରି ନେଲେ । ଏଥିପାଇଁ ୧୯୫୭ ମସିହା ମଇ ୯ ତାରିଖରେ ରାଜ୍ୟ ସରକାର ଏକ ଫରେଷ୍ଟ ଇନ୍‌କୁଆରୀ କମିଟି ଗଠନ କରି ସୁପାରିଶ ପ୍ରଦାନ-କରିଥିଲେ । ଠିକ୍ ସେଇ ପରି କେନ୍ଦ୍ରୀୟ ଜଙ୍ଗଲ ବୋର୍ଡ ଏକ ସବ୍‌କମିଟି ଗଠନ କରି ଏସବୁ ଅଂଚଳ ଗୁଡ଼ିକୁ ଅଧୀନସ୍ଥ କରାଯାଇଥିଲା । ଏହାର ସୁପାରିଶକୁ ଭିତ୍ତି କରି ରାଜ୍ୟ ସରକାର ୧୯୭୨ ମସିହାରେ 'ଓଡ଼ିଶା ଜଙ୍ଗଲ ଆଇନ ୧୯୭୨' ପ୍ରଣୟନ କରିଥିଲେ । ଏଇ ଆଇନର ଧାରା ୩ ଉପଧାରା ୩ମ ଓ ଧାରା ୮୧ ଉପଧାରା ୪ ଅନୁସାରେ ଅଧିକାଂଶ ଖେସରା ଓ ଖୋଲା ଜଙ୍ଗଲ ଗୁଡ଼ିକୁ ରକ୍ଷିତ ଜଙ୍ଗଲ ଭାବରେ ବିବେଚନା କରାଯାଇଛି । ଏଥିରୁ ସ୍ପଷ୍ଟ ଅନୁମାନ କରାଯାଉଛି ଯେ, ଏହି ଅଂଚଳ ଗୁଡ଼ିକର ସଠିକ ସର୍ଭେ ଓ ବନ୍ଦୋବସ୍ତ କରାଯାଇ ନାହିଁ କିମ୍ୱା ରକ୍ଷିତ ଜଙ୍ଗଲ ଭାବରେ ବିଧିବଦ୍ଧ ଘୋଷଣା ହୋଇନାହିଁ । ରାଜସ୍ୱ ବିଭାଗରେ ଥିବା ରେକର୍ଡ ଅଫ୍ ରାଇଟ୍ (ଆର୍‌ଓଆର୍)ରେ ରକ୍ଷିତ ଜଙ୍ଗଲ ଭାବରେ ନାମକରଣ କରାନଯାଇ ପୂର୍ବନାମ- ଖେସରା ଜଙ୍ଗଲ, ଖୋଲା ଜଙ୍ଗଲ ଇତ୍ୟାଦି ନାମରେ ରହି ଯାଇଛି । ଏଥିରୁ ରାଜ୍ୟ ସରକାରଙ୍କ ଖାମଖିଆଲି ବେପରୁଆ ନୀତିର ସ୍ପଷ୍ଟ ସୂଚନା ମିଳୁଛି । ଏହି ଦାୟିତ୍ୱହୀନ କାର୍ଯ୍ୟକଳାପର ପରିଣାମ ନିରୀହ ଆଦିବାସୀ ଲୋକମାନଙ୍କୁ ଭୋଗ କରିବାକୁ ପଡୁଛି । ଯଦି ସେଇ ସମୟରୁ ଏହି ସବୁ ଜମି ମାନଙ୍କର ବନ୍ଦୋବସ୍ତ ହୋଇଥାନ୍ତା, ତେବେ ଆଜି ସେଇ ଜମିଗୁଡ଼ିକର ମାଲିକ ଭାବରେ ଆଦିବାସୀମାନେ ପରିଗଣିତ ହୋଇଥାନ୍ତେ । ସେମାନଙ୍କୁ ଜବରଦଖଲକାରୀ କହି ଉଚ୍ଛେଦ କରିବାର କଥା ଉଠି ନଥାନ୍ତା । ଏଇ ଅବସ୍ଥାରେ ସେମାନଙ୍କ ଜୀବନ ଜୀବିକାର ସୁରକ୍ଷା ପରିବର୍ତ୍ତେ ସେମାନଙ୍କୁ ଜବରଦସ୍ତ ବାସଚ୍ୟୁତ କରିବା କେତେ ଦୂର ଯୁକ୍ତି ସଂଗତ ?'' ଓଡ଼ିଶା ଜଙ୍ଗଲ ଆଇନ ୧୯୭୨ ତା' ପରିସର ଭିତରେ ରାଜସ୍ୱ ବିଭାଗର ରିଜୋଲ୍ୟୁସନ- ୧୯୭୨ ଅନୁଯାୟୀ ଓଡ଼ିଶାର ଜଙ୍ଗଲ ଅଧ୍ୟୁଷିତ ଅଂଚଳରେ ଭୂମିହୀନ ଗରିବ, ହରିଜନ ଓ ଆଦିବାସୀମାନଙ୍କୁ ଚାଷୋପଯୋଗୀ ଜମି ଯୋଗାଇ ଦେବା ଉଦ୍ଦେଶ୍ୟରେ ୭ ଏପ୍ରିଲ, ୧୯୭୨ ମସିହାରେ ରାଜ୍ୟ ଯୋଜନା ବୋର୍ଡର ଅଷ୍ଟମ ବୈଠକ ବସି ସେମାନଙ୍କ ପାଇଁ ରିଜର୍ଭ ଫରେଷ୍ଟ ସମେତ ଚାଷଯୋଗ୍ୟ ଜମିର ଆକଳନ କରିବା ପାଇଁ ସୁପାରିଶ କରାଯାଇଥିଲା । ସରକାର ସେଥିପାଇଁ ସବ୍‌ଡିଭିଜନ ସ୍ତରୀୟ କମିଟି ଗଠନ କରିଥିଲେ । ୧୮ ଫେବୃଆରୀ ୧୯୭୩ ସୁଦ୍ଧା ଜିଲ୍ଲାପାଳ ମାନେ ସରକାରଙ୍କ ପାଖରେ ରିପୋର୍ଟ ଦାଖଲ କରିବାର ସମୟ ଧାର୍ଯ୍ୟ ହୋଇଥିଲା । ପ୍ରଶାସନିକ ଅବହେଳା କାରଣରୁ ଏହି ସମୟସୀମାକୁ ୩୧ ଡିସେମ୍ବର ୧୯୭୫ ପର୍ଯ୍ୟନ୍ତ ବଢ଼ାଇ ଦିଆଗଲା । କିନ୍ତୁ ତା' ସତ୍ତ୍ୱେ ମଧ୍ୟ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ- ଏବଂ ଜଙ୍ଗଲର କର୍ତ୍ତୃତ୍ୱ କେନ୍ଦ୍ର ସରକାରଙ୍କ ଅଧୀନକୁ ଚାଲିଗଲା । ତେଣେ ଭୂମିହୀନ

ତଥା ବନବାସୀଙ୍କ ଆବଶ୍ୟକତା ଓ ଅସନ୍ତୋଷକୁ ଆଖି ଆଗରେ ରଖି ରାଜ୍ୟ ସରକାର ମାନେ ୧୯୮୦ ସୁଦ୍ଧା ବନବାସୀମାନେ ଦଖଲ କରିଥିବା ଜଙ୍ଗଲ ଜମିକୁ ତାଙ୍କ ନାମରେ ବନ୍ଦୋବସ୍ତ କରିଦେବା ପାଇଁ କେନ୍ଦ୍ର ସରକାରଙ୍କ ଠାରେ ଦାବି କଲେ । ମଇ ୧୯୮୯ରେ ଅନୁଷ୍ଠିତ ରାଜ୍ୟ ସମୂହର ଜଙ୍ଗଲ ମନ୍ତ୍ରୀ ସମ୍ମିଳନୀରେ ଏହି ଆଲୋଚନାକୁ ମୁଖ୍ୟ ପ୍ରସଙ୍ଗ କରାଯାଇ ଅକ୍ଟୋବର ୨୫-୧୯୮୦ ପୂର୍ବର ଜବରଦଖଲକୁ ବୈଧିକରଣ କରିବା ପାଇଁ କେନ୍ଦ୍ର ଜଙ୍ଗଲ ବିଭାଗ ରାଜି ହେଲେ ଏବଂ ଏଥିପାଇଁ ୧୮.୦୯.୧୯୯୦ରେ ଏକ ମାର୍ଗଦର୍ଶିକା ଜାରି କଲେ ।

## ଅନ୍ତରାଳରେ କିଏ ?

କେନ୍ଦ୍ର ସରକାରଙ୍କର ଉଚ୍ଛେଦ ନିର୍ଦ୍ଦେଶ ଓ ତାହା କାର୍ଯ୍ୟକାରୀ କରିବା ପାଇଁ ରାଜ୍ୟ ସରକାରମାନଙ୍କର ତରବରିଆ ଅଭିଯାନକୁ ଦେଖିଲେ- ଏହା ପଛରେ ଯେ ଏକ ଶକ୍ତିଶାଳୀ ଲବି କାମ କରୁଛି, ବୁଝିବାରେ ଅସୁବିଧା ହୁଏନି । ଆମ ଦେଶ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ତଥା ବିଶ୍ୱ ବାଣିଜ୍ୟ ସଂଗଠନର ରଣନୀତିର ଶିକାର ହୋଇ ଜଗତୀକରଣ, ଉଦାରୀକରଣ ଏବଂ ଘରୋଇକରଣର ମୁକ୍ତ ଅର୍ଥନୀତି ନାଁରେ ଆର୍ଥିକ ସଂସ୍କାର ପ୍ରକ୍ରିୟା ଲାଗୁ କରିବା ପରଠାରୁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଚାରଣ ଭୂମିରେ ପରିଣତ ହୋଇଛି । ଆମ ଦେଶର ମାଟିତଳେ ଥିବା ଖଣିଜ ସମ୍ପଦ, ଜଳ ଓ ଜଙ୍ଗଲ ସମ୍ପଦକୁ ଲୁଟ୍ କରିବା ପାଇଁ ବିଶ୍ୱର ଶହ ଶହ କମ୍ପାନୀ ଓ କର୍ପୋରେଟମାନେ ଜୋର୍‌ଦାର ଉଦ୍ୟମ ଚଳାଇଛନ୍ତି । ସଂଯୋଗକୁ ପ୍ରାୟ ଉପରୋକ୍ତ ସମସ୍ତ ସମ୍ପଦର ଭଣ୍ଡାର ଆମ ଦେଶର ଆଦିବାସୀ ଅଂଚଳରେ ହିଁ ରହିଛି ।

ଏହି ମୁନାଫା-ସୌଦାଗର ମାନେ ଗୋଟେ ପକ୍ଷରେ ଗରିବ ଦେଶ ମାନଙ୍କରେ ଅର୍ଥ ସଂକଟ ତିଆରି କରି ଅନ୍ୟ ପକ୍ଷରେ ଅହେତୁକ ଉଦାରତାର ଯେଉଁ ହାତ ବଢ଼ାନ୍ତି, ଆଜି ସେଇ ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚି ଯାଇଛି ଭାରତବର୍ଷ, ଯାହାର ଫଳ ସ୍ୱରୂପ ବ୍ୟାପକ ଭାବେ ଅରଣ୍ୟ ଓ ଆଦିବାସୀ ସମାଜକୁ ଆକ୍ରମଣର କେନ୍ଦ୍ରବିନ୍ଦୁ କରି ଦିଆଯାଇଛି ।

ଆମ ଜଙ୍ଗଲକୁ କମ୍ପାନୀ ଓ କର୍ପୋରେଟ ହାତରେ ଟେକି ଦେବାର ରାସ୍ତାକୁ ସୁଗମ କରିବା ପାଇଁ ବିଶ୍ୱବ୍ୟାଙ୍କ୍ ସରକାରଙ୍କୁ 'ମିଳିତ ଜଙ୍ଗଲ ପରିଚାଳନା' ନାଁରେ ଶହ ଶହ କୋଟି ଟଙ୍କାର ଋଣ ଯୋଗାଇ ଦେବାର ଥୋପ ପକାଇଛନ୍ତି ।

## ଉଚ୍ଛେଦର ପରିଣାମ

ସରକାରଙ୍କ ଦ୍ୱାରା ବିଶ୍ୱବ୍ୟାଙ୍କର 'ମିଳିତ ଜଙ୍ଗଲ ପରିଚାଳନା' କାର୍ଯ୍ୟକ୍ରମ ଆରମ୍ଭ କରିବାକୁ ଯାଇ ୨୦୦୧ରେ ମଧ୍ୟପ୍ରଦେଶର ଦେୱାସ ଠାରେ ଆଦିବାସୀ ଉଚ୍ଛେଦ ପର୍ବ ଆରମ୍ଭ କରାଗଲା । କଂଗ୍ରେସ ଶାସିତ ସେ ରାଜ୍ୟ ସରକାର ଯଥେଷ୍ଟ ଆଗ୍ରହ ଓ ତତ୍‌ପରତାର ସହିତ

ଏହା ଲାଗୁ କରି ଆଦିବାସୀଙ୍କୁ ତଡ଼ିବାକୁ ଗଲାବେଳେ ପ୍ରବଳ ପ୍ରତିକ୍ରିୟା ଓ ପ୍ରତିରୋଧ ସୃଷ୍ଟି ହେଲା । ଶେଷ ପର୍ଯ୍ୟନ୍ତ ସେଇ ଉଚ୍ଛେଦ ଅଭିଯାନକୁ ପ୍ରତିହତ କରିବାକୁ ଯାଇ ଆଦିବାସୀମାନେ ପୋଲିସ ଗୁଳିରେ ସହିଦ ହୋଇଥିଲେ । ସିମିତି ୨୦୦୩, ଫେବୃଆରୀ ୧୯- କେରଳର ୱାଇନାଦ ଜଙ୍ଗଲର ମୁଥଙ୍ଗା ଠାରେ ଉଚ୍ଛେଦ ଅଭିଯାନରେ ଆଦିବାସୀଙ୍କୁ ହଟାଇବାକୁ ଯାଇ ଯେଉଁ ଗୁଳିକାଣ୍ଡ ଘଟିଲା ସେଥିରେ ମଧ ଆଦିବାସୀଙ୍କୁ ଆତ୍ମବଳିଦାନ ଦେବାକୁ ପଡ଼ିଲା । ସେମାନଙ୍କ ଗାଁଗଣ୍ଡା ଘର ଦ୍ୱାର ସବୁ ଜାଳି ଦିଆଗଲା । ସେଠାରେ ମଧ କଂଗ୍ରେସ ସରକାର । ଆହୁରି ଆଶ୍ଚର୍ଯ୍ୟର କଥା, କେଉଁ ପ୍ରତିଯୋଗିତା କଲା ପରି ଅନ୍ୟ ଏକ କଂଗ୍ରେସ ଶାସିତ ରାଜ୍ୟ ଆସାମ ପ୍ରଦେଶରେ ମଧ ସଶସ୍ତ୍ର ପୋଲିସ ଫୋର୍ସ ସହିତ ପୋଷା ହାତୀ ଲଗାଇ ଅତି ଅମାନବୀୟ ବର୍ବର ପଦ୍ଧତିରେ ଆଦିବାସୀ ପଲ୍ଲୀ ସବୁ ଧ୍ୱସ୍ତବିଧ୍ୱସ୍ତ କରି ମାଟିରେ ମିଶାଇ ଦିଆଗଲା ଏବଂ ସେମାନଙ୍କୁ ଭିଟାମାଟିରୁ ତଡ଼ି ଦିଆଗଲା । ସିମିତି କଂଗ୍ରେସ ଶାସିତ ମହାରାଷ୍ଟ୍ର ଏବଂ ତେଲଗୁ ଦେଶମ ଶାସିତ ଆନ୍ଧ୍ରପ୍ରଦେଶରେ ସଶସ୍ତ୍ର ପୋଲିସ ଫୌଜ ଦ୍ୱାରା ପାହାଡ଼ ଅରଣ୍ୟରୁ ଆଦିବାସୀ ଗାଁର ଉଚ୍ଛେଦ ଅଭିଯାନ ଆରମ୍ଭ କରାଗଲା । ପୁଣି ଅନ୍ୟ ଏକ ଜ୍ୱଳନ୍ତ ଉଦାହରଣ ଏବେ କଂଗ୍ରେସ ଶାସିତ ରାଜସ୍ଥାନରୁ ମିଳିଛି । ଅଭୟାରଣ୍ୟ ସୁରକ୍ଷା ନାମରେ ରାଜସ୍ଥାନର ବିଭିନ୍ନ ଜଙ୍ଗଲରୁ ଆଦିବାସୀ ମାନଙ୍କୁ ଯେଭଳି 'ମେରିରାୟ' ଢଙ୍ଗରେ ଉଚ୍ଛେଦ କରାଗଲା, ତାହା ମାନବ ଇତିହାସରେ ଏକ କଳଙ୍କମୟ ଅଧ୍ୟାୟ । ସିମିତି ଆମ ଓଡ଼ିଶାରେ ଜଙ୍ଗଲ ବିଭାଗ କର୍ମକର୍ତ୍ତାଙ୍କ ଦ୍ୱାରା ଆଦିବାସୀ ମାନଙ୍କୁ ଉଚ୍ଛେଦ ନୋଟିସ୍ ଦିଆଗଲାଣି । ଯାହାର ପ୍ରତିବାଦରେ ୨୦୦୩ ନଭେମ୍ବରରେ 'ଲୋକ ଅଧିକାର ମଂଚ' ପକ୍ଷରୁ ବିଧାନସଭା ସମ୍ମୁଖରେ ବିରାଟ ଗଣଧାରଣା ପ୍ରଦର୍ଶନ କରାଯାଇଥିଲା । ଏହା ବନ୍ଦ ହେବା ଉଚିତ, ତାହା ନ ହେଲେ ପରିସ୍ଥିତି ଭୟଙ୍କର ହେବ, ଏଥିରେ ସନ୍ଦେହ ନାହିଁ ।

## ଦିନ ରାତି ଭଳି ସତ୍ୟ

ଜଗତବାଦୀ ନରସିଂହ ରାଓ ଓ ମୁକ୍ତ ବଜାର ଅର୍ଥନୀତିର ପ୍ରବକ୍ତା ମନମୋହନ ସିଂହ ଦିନେ ବିଶ୍ୱୀକରଣ, ଉଦାରୀକରଣ ଓ ଘରୋଇକରଣକୁ ଆର୍ଥିକ ସଂସ୍କାର ନାମ ଦେଇ ଆମ ଭାରତ ବଜାରର ସିଂହ ଦରଜା ଖୋଲି ଦେଇଥିଲେ । ଆଜି ଆଦିବାସୀର ବଳିବେଦି ଉପରେ କଂଗ୍ରେସ ତାହା କାର୍ଯ୍ୟକାରୀ କରିବ ନାହିଁ ତ କିଏ କରିବ ? ଏବେ ତାର ଉତ୍ତର ଦାୟିତ୍ୱ ପଡ଼ିଛି ବାଜପେୟୀ (ଏନ୍‌ଡିଏ) ସରକାର ଉପରେ । ଆଜିକୁ ବି.ଜେ.ପି.ର ସ୍ୱଦେଶୀ ଜାଗରଣ କାର୍ଯ୍ୟକ୍ରମ କେତେଦୂର ତଳେଇ ଗଲା, କେଉଁଠି ? ଏମାନଙ୍କ ପାଖରୁ ସାଧାରଣ ମଣିଷ କଣ କେବେ କିଛି ଆଶା କରି ପାରିବ ? ପୁଣି ଆଜିକା ଭାରତବର୍ଷରେ ସବୁଠୁଁ

ଆଧୁନିକ ପ୍ରଯୁକ୍ତିବାଦୀ ମୁଖ୍ୟମନ୍ତ୍ରୀ ହେଲେ ଚନ୍ଦ୍ରବାବୁ ନାଇଡୁ । କିନ୍ତୁ ପ୍ରମାଣ କହେ, ତାଙ୍କର ଶାସନ ଧାରା କେବଳ ଆଦିବାସୀ ସଂହାର ପାଇଁ ହିଁ ଅଭିପ୍ରେତ । ଆଡଭାନିଙ୍କ ହାତ ଧରି କେତେବେଳେ ତାହା ନକ୍ସାଲ ଦମନ ନାମରେ ତ ପୁଣି କେତେବେଳେ ଆଦିବାସୀ ଉଚ୍ଛେଦ ନାମରେ । ଆଦିବାସୀ ମାରଣ ଯଜ୍ଞରେ ବାଜପେୟୀ-ଆଡଭାନି-ସୋନିଆ ଠାରୁ ଚନ୍ଦ୍ରବାବୁ ଓ ନବୀନ- ସମସ୍ତେ ଏକ । ସାମ୍ରାଜ୍ୟବାଦୀ କରୁଣା କଣିକେ ପାଇଁ ଏମାନେ ନିର୍ଲ୍ଲଜ ପରି ଧାଇଁଛନ୍ତି । ଆଜି ଖୋଲାଖୋଲି ଭାବେ ସେମାନଙ୍କ ବନବାସୀ ସ୍ୱାହା ଯଜ୍ଞରେ ଏମାନେ ଜହ୍ଲାଦ ସାଜିଛନ୍ତି । ଆଜିକା ପରିପ୍ରେକ୍ଷୀରେ ୩୦ ବର୍ଷ ତଳେ ଲେଖିଥିବା 'ସାବଧାନୀ' କବିତାର କେତୋଟି ପଙ୍‌କ୍ତି ଏବେ ମୋର ମନେ ପଡୁଛି-

"ଏ ଯେତେ ଦଳର ଝଣ୍ଡା ଉଡୁଛି କାଲି ହେଲେ ବିପ୍ଳବ
ଗୋଟିଏ ଶିବିରେ ଯୋଗ ଦେବେ ଯାଇ ଶୋଷକ ଏ ନବ ନବ;
କେହି ନାହିଁ ଏଠି ମଣିଷର ଦଳ ସବୁ ଚାଲ୍ ପ୍ରତାରଣା
ଶୋଷକ ସ୍ୱାର୍ଥ କରୁଛି ଯା' ନିତି ମଣିଷକୁ ବାଟବଣା ।"

ଏଇ ତଥାକଥିତ ପୁଞ୍ଜିବାଦୀ ଗଣତନ୍ତ୍ରର ଛତ୍ର ତଳେ ହାଉଯାଉ ହେଉଥିବା ସବୁ ଦଳର ସବୁ ନେତା ଗୋଟିଏ ଯାତ୍ରା ଦଳର ଅଭିନେତା-ଅଭିନେତ୍ରୀ । ବିଦେଶୀ ପ୍ରଭୁଙ୍କ ଆନ୍ତର୍ଜାତିକ ନିର୍ଦ୍ଦେଶନା ମୁତାବକ ମଂଚ ଉପରେ ଖାଲି ଯାହା ନାୟକ-ନାୟିକା, ଖଳନାୟକ-ଖଳନାୟିକା ସହ ଭିନ୍ନ ଭିନ୍ନ ଅଭିନୟରେ ରହିଛନ୍ତି । କିନ୍ତୁ ସାଜ ଘରକୁ ଲେଉଟି ପଡ଼ିଲେ ଏମାନେ ଏକ୍- ଏକାକାର । ଏମାନଙ୍କର ଅତୁଟ ମଧୁଚନ୍ଦ୍ରିକା । ଚିରକାଳ ଏମାନଙ୍କର ସ୍ୱାର୍ଥଗତ ମିଳିତ ମେଣ୍ଟ ଥିଲା, ରହିବ । ଏମାନଙ୍କର ବିରୋଧ ବାହ୍ୟିକ । ବିପ୍ଳବ ହେଲେ ତାହା ବି ରହିବ ନାହିଁ, ଏମାନେ ଖୋଲାଖୋଲି ଏକ ହୋଇଯିବେ । ଆଜି ଏମାନେ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି, ବିଶ୍ୱ ବାଣିଜ୍ୟ ସଂଗଠନ ଓ ବୃହତ କୃଷି ବ୍ୟବସାୟ ପ୍ରତିଷ୍ଠାନ ନିକଟରେ ନତଜାନୁ ହୋଇ ହାତ ପାତିଛନ୍ତି । ଏ ଦେଶର ସୁପ୍ରାଚୀନ କୃଷି ବ୍ୟବସ୍ଥାକୁ ସେମାନଙ୍କ ନିକଟରେ ବନ୍ଧା ପକାଇ ଦେଇ ସେମାନଙ୍କ ପ୍ରଣୀତ କୃଷିନୀତିକୁ ନୂତନ କୃଷି ନୀତି ବୋଲି ଘୋଷଣା କରୁଛନ୍ତି । ଯାହା ଆମ ଦେଶର କୃଷିଜୀବୀଙ୍କ ପାଇଁ ଦୁର୍ଦ୍ଦଶାର ବୀଜ ବୁଣୁଛି । କୃଷକମାନେ ଆତ୍ମହତ୍ୟା ଓ ଅନାହାର ମୃତ୍ୟୁର ଶିକାର ହେଉଛନ୍ତି ।

## କାନ୍‌କୁନ୍ ସମ୍ମିଳନୀ

ମେକ୍ସିକୋର ସମୁଦ୍ର ତଟବର୍ତ୍ତୀ ସୁନ୍ଦର ସହର କାନ୍‌କୁନ୍ । ଛବି ଭଳି ଏହାର ସୌନ୍ଦର୍ଯ୍ୟ । ସେପ୍ଟେମ୍ବର ମାସର ମଧ୍ୟ ଭାଗରେ ଏଠାରେ ଅନୁଷ୍ଠିତ ହୋଇଥିଲା ୱାର୍ଲ୍ଡ

ଟ୍ରେଡ୍ ଅର୍ଗାନାଇଜେସନ୍ ବା ବିଶ୍ୱ ବାଣିଜ୍ୟ ସଂଗଠନର ପ୍ରଥମ ମନ୍ତ୍ରୀସ୍ତରୀୟ ସମ୍ମିଳନୀ । ଏଥିରେ ବିକଶିତ ରାଷ୍ଟ୍ରର ପ୍ରତିନିଧି ମାନଙ୍କ ସହ ଯୋଗ ଦେଇଥିଲେ ବିକାଶମୁଖୀ ରାଷ୍ଟ୍ରମାନଙ୍କର ପ୍ରତିନିଧି ବୃନ୍ଦ । ସମୁଦାୟ ୧୮୪ଟି ସଦସ୍ୟ ରାଷ୍ଟ୍ର ଏଥିରେ ଯୋଗ ଦେଇଥିଲେ । ସେଥିରୁ ଦୁଇ ତୃତୀୟାଂଶ ଥିଲେ ଗରିବ ଓ ବିକାଶୀଳ ଦେଶ । ସେଠାରେ କିନ୍ତୁ ବିକଶିତ ଓ ବିକାଶଶୀଳ ରାଷ୍ଟ୍ରମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଓ ତର୍କ ବିତର୍କ ଚରମ ଅବସ୍ଥାରେ ପହଞ୍ଚିବ ଶେଷ ପର୍ଯ୍ୟନ୍ତ ସମ୍ମିଳନୀ ବିଫଳ ହୋଇଯାଇଥିଲା ।

ବିଶ୍ୱବାଣିଜ୍ୟ ସଂଗଠନ ସୃଷ୍ଟି ହେବା ଠାରୁ କୃଷି ଏକ ବିବାଦୀୟ ପ୍ରସଙ୍ଗ ହୋଇ ରହି ଆସିଛି । ଉନ୍ନତ ଓ ବିକଶିତ ରାଷ୍ଟ୍ରରେ ୩ରୁ ୪ ପ୍ରତିଶତ ଜନସାଧାରଣ କୃଷି ଉପରେ ନିର୍ଭର କରୁଥିବା ବେଳେ ବିକାଶଶୀଳ ରାଷ୍ଟ୍ରରେ ୬୦ରୁ ୭୦ ପ୍ରତିଶତ ଜନଗଣ କୃଷି ଉପରେ ନିର୍ଭର କରନ୍ତି । ଏଣୁ ବିକଶିତ ରାଷ୍ଟ୍ରମାନେ ଗରିବ ତଥା ବିକାଶଶୀଳ ରାଷ୍ଟ୍ରମାନଙ୍କର କୃଷି ବଜାରକୁ ସଂପୂର୍ଣ୍ଣ ଦଖଲ କରିବା ପାଇଁ କୃଷି ସଂପର୍କିତ ବିଭିନ୍ନ ଦୋମୁହାଁ ନୀତି ପ୍ରଣୟନ ଉପରେ ବିଶ୍ୱବାଣିଜ୍ୟ ସଂଗଠନକୁ ବ୍ୟବହାର କରୁଛନ୍ତି ।

କାନ୍‌କୁନ୍ ସମ୍ମିଳନୀରେ ବିକାଶଶୀଳ ରାଷ୍ଟ୍ରମାନଙ୍କୁ ଆମଦାନୀ ଶୁଳ୍କ ହ୍ରାସ କରି କୃଷି ବଜାରକୁ ଉନ୍ମୁକ୍ତ କରିବା ପାଇଁ ବାଧ କରାଯାଇଥିଲା । ସେଠାରେ ଯେଉଁ ଚିଠା ପ୍ରସ୍ତାବ ଆଗତ କରାଯାଇଥିଲା;. ସେଥିରେ ଅଳ୍ପ ସବ୍‌ସିଡି ଦେଉଥିବା ବିକାଶଶୀଳ ରାଷ୍ଟ୍ରମାନଙ୍କୁ ୭୦ ପ୍ରତିଶତ ସବ୍‌ସିଡି ହ୍ରାସ ପାଇଁ ପ୍ରସ୍ତାବ ରହିଥିଲା ବେଳେ ପ୍ରଚୁର ସବ୍‌ସିଡି ଦେଉଥିବା ଇଉରୋପୀୟ ରାଷ୍ଟ୍ର ସଂଘକୁ ୫୧ ପ୍ରତିଶତ ଏବଂ ଆମେରିକାକୁ ମାତ୍ର ୩୬ ପ୍ରତିଶତ ସବ୍‌ସିଡି ହ୍ରାସ ପାଇଁ ପ୍ରସ୍ତାବ ରହିଥିଲା । ପୁନଶ୍ଚ ବିଶ୍ୱ ବାଣିଜ୍ୟ ସଂଗଠନ ସବ୍‌ସିଡି ହ୍ରାସ କରିବା କଥା କହୁଥିଲା ବେଳେ ବାସ୍ତବରେ ବିକଶିତ ରାଷ୍ଟ୍ରମାନେ ଏହାକୁ ହ୍ରାସ ନ କରି ବୃଦ୍ଧି କରି ଚାଲିଛନ୍ତି । ଉଦାହରଣ ସ୍ୱରୂପ ବିଶ୍ୱ ବାଣିଜ୍ୟ ସଂଗଠନ ଆରମ୍ଭ ବେଳେ ଆମେରିକା ଏବଂ ଇଉରୋପୀୟ ରାଷ୍ଟ୍ର ସଂଘର ମୋଟ ବାର୍ଷିକ ସବ୍‌ସିଡିର ପରିମାଣ ୧୦୦ ବିଲିୟନ ଡଲାର ଥିଲା ବେଳେ ତାହା ଏବେ ବୃଦ୍ଧି ପାଇ ୩୬୦ ବିଲିୟନ ଡଲାରରେ ପହଞ୍ଚିଛି ।

ଯଦି କାନ୍‌କୁନ୍ ପ୍ରସ୍ତାବରେ ଥିବା ପୁଞ୍ଜିନିବେଶ ନୀତି, ସରକାରୀ କ୍ରୟନୀତି, ଆମଦାନୀ ଓ ରପ୍ତାନି ନୀତିର ସରଳୀକରଣ ଏବଂ ପ୍ରତିଯୋଗିତା ନୀତି ବିଶ୍ୱ ବାଣିଜ୍ୟ ସଂଗଠନ ଦ୍ୱାରା ନିୟନ୍ତ୍ରିତ ହୁଏ, ତେବେ ବିକାଶଶୀଳ ଦେଶମାନେ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ କ୍ଷତିଗ୍ରସ୍ତ ହେବେ । ଏପରିକି ସେମାନଙ୍କ ସାର୍ବଭୌମତ୍ୱ ପ୍ରତି ବିପଦ ସୃଷ୍ଟି ହୋଇପାରେ, ଏପରି ଆଶଙ୍କା କରି ଆଫ୍ରିକା ମହାଦେଶ ଓ ପଶ୍ଚିମ ଉପସାଗରିୟ ଅଂଚଳର ୬୦ଟି ଅନୁଦାନ ପ୍ରାପ୍ତ ଗରିବ ଦେଶ ଆଲୋଚନାରୁ ଓହରି ଯାଇଥିଲେ । ବହୁରାଷ୍ଟ୍ରୀୟ କମ୍ପାନୀମାନେ ତାଙ୍କ

ଦେଶର ସରକାରୀ ନୀତି ପ୍ରଣୟନ କ୍ଷେତ୍ରରେ ନେପଥ୍ୟରେ ଥାଇ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି ଏବଂ ସେଇ କାରଣରୁ ବିଶ୍ୱ ବାଣିଜ୍ୟ ସଂଗଠନର କାର୍ଯ୍ୟ ପ୍ରଣାଳୀକୁ ମଧ୍ୟ ସେମାନେ ବିଶେଷ ଭାବେ ପ୍ରଭାବିତ କରି ଆସୁଛନ୍ତି । ବାଣିଜ୍ୟରେ ଅସାଧୁ ବୃତ୍ତି ଆଚରଣ ଏବଂ ବିକାଶଶୀଳ ଦେଶରେ ଦୁର୍ନୀତିର ପ୍ରସାରଣ ପାଇଁ ଏମାନେ ମୁଖ୍ୟତଃ ଦାୟୀ । କାନ୍‌କୁନ୍‌ରେ ଯଦିଓ ଏଇ ବହୁରାଷ୍ଟ୍ରୀୟ କମ୍ପାନୀ ମାନଙ୍କର କୂଟୀଳ ବାଣିଜ୍ୟ ନୀତି ଏବଂ ସେମାନଙ୍କୁ ପୃଷ୍ଟପୋଷକତା କରି ଆସିଥିବା ସରକାରଙ୍କ କପଟ ଆଚରଣର ପରାଜୟ ଘଟିଲା, କିନ୍ତୁ ବାସ୍ତବ ହେଲା- ଏହା ପରେ ସେମାନେ ଅଧିକ ମାରାତ୍ମକ କୂଟନୀତି ପ୍ରୟୋଗ କରି ତାଙ୍କର ବିଶ୍ୱ ଅଭିଯାନ ଚାଲୁ ରଖିବେ । ବ୍ରିଟିଶ ଓ ଆମେରିକାର ବାଣିଜ୍ୟ ପ୍ରତିନିଧି ଦ୍ୱୟ ବିଶ୍ୱବାଣିଜ୍ୟ ସଂଗଠନର ଢାଞ୍ଚାଗତ ପରିବର୍ତ୍ତନ ଆବଶ୍ୟକ ବୋଲି କହି ଏହାର ସୂଚନା ମଧ୍ୟ ଦେଇଛନ୍ତି । ଏହାର ଅର୍ଥ ହେଲା, ବିଶ୍ୱବାଣିଜ୍ୟ ସଂଗଠନ ତାର ପ୍ରଚଳିତ ବହୁ ପାକ୍ଷୀକ ପଦ୍ଧତିକୁ ପରିହାର କରି ଜାତିସଂଘର ନିରାପତ୍ତା ପରିଷଦ ପରି ଏକ କମିଟି ଗଢ଼ି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ସବୁ ଗ୍ରହଣ କରିବ । ବିଶ୍ୱବାଣିଜ୍ୟ ସଂଗଠନ ବାସ୍ତବରେ ଆମେରିକା ପରି ବିକଶିତ ତଥା ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କର ସ୍ୱାର୍ଥ ସାଧନ ପାଇଁ କାର୍ଯ୍ୟ କରୁଛି । ଏଣୁ ସମସ୍ତ ବିକାଶଶୀଳ ରାଷ୍ଟ୍ର ଏକଜୁଟ୍ ହୋଇ ଏହି ନୀତି ବିରୋଧରେ ସଂଗ୍ରାମ କରିବା ଉଚିତ ।

ଭୁବନେଶ୍ୱର ଠାରେ ଭାରତୀୟ ମଜଦୁର ସଂଘ ଓ ଭାରତୀୟ କିଷାନ ସଂଘର ପ୍ରତିଷ୍ଠାତା ତଥା ଶ୍ରମିକ ନେତା ଦତ୍ତୋପନ୍ତ ଠେଙ୍ଗଡ଼ି ନିଜ ଦଳର ସରକାର ପ୍ରତି ଗଭୀର ସନ୍ଦେହ ବ୍ୟକ୍ତ କରି କହିଛନ୍ତି- କାନ୍‌କୁନ୍‌ରେ ବିକଶିତ ରାଷ୍ଟ୍ରମାନଙ୍କ ସହ ବିକାଶଶୀଳ ରାଷ୍ଟ୍ର ସମୂହର ସଂଗ୍ରାମର ସଫଳତା ସାମୟିକ । ଭାରତ ପ୍ରାରମ୍ଭରେ ଆମେରିକାର ଗୋଡ଼ାଣିଆ ହେବାକୁ ଉଦ୍ୟମ କରୁଥିଲା ବେଳେ କେବଳ ଜନମତର ଚାପରେ ହିଁ ଏ ସଂଗ୍ରାମରେ ଭାଗିଦାର ହୋଇଛି । ଏହି ସାମୟିକ ସଫଳତାରେ ଭାରତୀୟ ଚାଷୀ ଆତ୍ମସନ୍ତୋଷ ଲାଭ କରିବାର କିଛି ନାହିଁ । କାରଣ ବର୍ତ୍ତମାନ ବିକଶିତ ଦେଶ ଗୁଡ଼ିକ ବିକାଶଶୀଳ ଦେଶର କିଛି ମନ୍ତ୍ରୀ ଓ ଅଫିସରଙ୍କୁ କିଣିବାକୁ ଚେଷ୍ଟା କରୁଛନ୍ତି । ବିଶ୍ୱ ବାଣିଜ୍ୟ ସଂଗଠନର ଆଗାମୀ ବୈଠକରେ କୌଣସି ମତେ ନିଜ ସ୍ୱାର୍ଥ ହାସଲ ପାଇଁ ସେମାନେ ଏବେ ଠାରୁ ଉଦ୍ୟମ ଆରମ୍ଭ କଲେଣି । ଆମ ଦେଶର କୃଷକ ସମାଜର ସ୍ୱାର୍ଥ ପାଇଁ ଭାରତୀୟ ଜନଗଣ ସରକାର ଉପରେ ଲଗାତର ଜନମତର ଚାପ ପକାଇବା ଉଚିତ ବୋଲି ସେ କହିଥିଲେ ।

## କୃଷି ଉପରେ କୁପ୍ରଭାବ

ରମେଶ କୁମାରଙ୍କ ଲେଖାର ଅଂଶ : ଯୁକ୍ତରାଷ୍ଟ୍ର ଆମେରିକାରେ କୃଷି କ୍ଷେତ୍ରକୁ

ହାରାହାରି ଦୈନିକ ୪,୫୦୦ କୋଟି ଟଙ୍କା ସବ୍‌ସିଡି ଦିଆଯାଉଛି । ବର୍ଷକୁ ମୁଣ୍ଡପିଛା ଏହା ହାରାହାରି ୩୦,୦୦୦ ଡଲାର (ପ୍ରାୟ ଚଉଦ ଲକ୍ଷ ଟଙ୍କା) । ସେଇପରି ଇଉରୋପୀୟ ସଂଘରେ ଏହାର ପରିମାଣ ୧୪,୦୦୦ ଡଲାର (ପ୍ରାୟ ସାଢ଼େ ଛ' ଲକ୍ଷ ଟଙ୍କା) । ଏଇ ଧନୀ ଦେଶ ମାନଙ୍କରେ ଗାଈଗୋରୁ ପୋଷୁଥିବା ଚାଷୀମାନେ ପ୍ରଚୁର ମାତ୍ରାରେ ସବ୍‌ସିଡି ପାଉଛନ୍ତି । ଆମେରିକା, ଇଉରୋପୀୟ ସଂଘ ତଥା ଜାପାନରେ ପ୍ରତିଦିନ ଗୋରୁ ପ୍ରତି ସବ୍‌ସିଡିର ପରିମାଣ ହେଉଛି, ଯଥାକ୍ରମେ ୧୦୦ ଟଙ୍କା, ୧୨୫ ଟଙ୍କା ଓ ୮୦ ଟଙ୍କା । ଧନୀ ଦେଶ ଗୁଡ଼ିକ ସେମାନଙ୍କ ପ୍ରତିରକ୍ଷା ବାବଦରେ ୬୦,୦୦୦ କୋଟି ଡଲାର ଓ କୃଷି ସବ୍‌ସିଡି ବାବଦରେ ୩୦,୦୦୦ କୋଟି ଡଲାର ବ୍ୟୟ କରୁଥିବା ବେଳେ ଗରିବ ଦେଶମାନଙ୍କୁ ବିକାଶମୂଳକ ସହାୟତା ଆକାରରେ ଦେଇଥାନ୍ତି ମାତ୍ର ୫,୬୦୦ କୋଟି ଡଲାର ।

ବିଶ୍ୱ ବାଣିଜ୍ୟ ସଂଗଠନ ତଥା ବିକଶିତ ରାଷ୍ଟ୍ରମାନଙ୍କର ଏଇ ସବ୍‌ସିଡି ରାଜନୀତି ବିକାଶଶୀଳ ଦେଶମାନଙ୍କ ଉପରେ ନକରାତ୍ମକ ପ୍ରଭାବ ପକାଉଛି । ଭାରତ ସରକାର ଧାର୍ଯ୍ୟ ସମୟର ବହୁ ପୂର୍ବରୁ ୧୪୨୯ଟି କୃଷିଜାତ ଦ୍ରବ୍ୟ ଉପରେ ଥିବା ପରିମାଣ ଗତ କଟକଣା ଉଠାଇ ଦେବା ଫଳରେ ରପ୍ତାନି ବାଧାପ୍ରାପ୍ତ ହୋଇଛି ଏବଂ ଆଶାତୀତ ଭାବେ ହ୍ରାସ ପାଇଛି । ଫଳରେ ଭାରତ କ୍ରମଶଃ ତାର ଆତ୍ମନିର୍ଭରଶୀଳତା ହରାଇଛି ।

ଏଇ ପରିପ୍ରେକ୍ଷୀରେ ଭାରତୀୟ ଚାଷୀକୂଳର ଅବସ୍ଥା ଅତ୍ୟନ୍ତ ଦୟନୀୟ । ସବ୍‌ସିଡି କଥା ଛାଡ଼, ବର୍ଷକୁ ମାତ୍ର ୧୬,୯୦୦ ଟଙ୍କା ସେମାନଙ୍କ ମୁଣ୍ଡ ପିଛା ଆୟ । ଅର୍ଥାତ ମାତ୍ର ୪୬ ଟଙ୍କା ସେମାନେ ପ୍ରତିଦିନ ପାଆନ୍ତି ।

୧୯୮୦-୯୦ ଦଶକରେ ଭାରତ ସରକାର ସାର ଉପରେ ଶତକଡ଼ା ୨୯.୨୬ ଭାଗ ସବ୍‌ସିଡି ପ୍ରଦାନ କରୁଥିବା ବେଳେ ୧୯୯୦-୨୦୦୦ ଦଶକରେ ଏହାକୁ ଶତକଡ଼ା ୧୨.୮୫ ଭାଗକୁ ହ୍ରାସ କରିଛନ୍ତି । ସିମିତି କୀଟ ନାଶକ ଔଷଧ, ବିହନ, ଜଳସେଚନ ବ୍ୟବସ୍ଥା, ଯନ୍ତ୍ରପାତି ତଥା ଅନ୍ୟାନ୍ୟ କୃଷି ସବ୍‌ସିଡିକୁ ହ୍ରାସ କରିବା ପାଇଁ ଷଡ଼ଯନ୍ତ୍ର ଚାଲିଛି । ଏଣେ କୃଷି ସବ୍‌ସିଡି ଯେଉଁ ପରିମାଣରେ ହ୍ରାସ ପାଉଛି, ସେଇ ଅନୁଯାୟୀ ଚାଷୀମାନଙ୍କର ଉତ୍ପାଦନ ଖର୍ଚ୍ଚ ବଢ଼ି ଯାଉଛି । ଏପରିକି ବର୍ଷ ପରେ ବର୍ଷ ଚାଷର ଇଗାଣକାରୀ ଖର୍ଚ୍ଚ ମଧ୍ୟ ବଢ଼ିବାରେ ଲାଗିଛି । ଅନ୍ୟ ପକ୍ଷରେ ଚାଷୀର ଉତ୍ପାଦନର ଦରଦାମ ଖସି ଖସି ଚାଲିଛି । ଫଳ ସ୍ୱରୂପ ଚାଷୀମାନେ ଋଣ କବଳରେ ପଡ଼ି ଜମିଜମା ହରାଇ ଆତ୍ମହତ୍ୟା କରୁଛନ୍ତି । ଏ ପର୍ଯ୍ୟନ୍ତ ଦୁଇ ହଜାର ବିପନ୍ନ ଭାରତୀୟ ଚାଷୀ ଆତ୍ମହତ୍ୟା କରି ସାରିଲେଣି । ଜାତିସଂଘର ଖାଦ୍ୟ ଓ କୃଷି ସଂଗଠନର ସଦ୍ୟତମ ରିପୋର୍ଟ ଅନୁଯାୟୀ ୧୯୯୫-୯୬ରେ ଭାରତରେ ଭୋକିଲାଙ୍କ ସଂଖ୍ୟା ଥିଲା ୧୯ କୋଟି ୪୭ ଲକ୍ଷ । କିନ୍ତୁ ୨୦୦୧ରେ ଏହି ସଂଖ୍ୟା ବୃଦ୍ଧି

ପାଇ ପହଞ୍ଚିଛି ୨୧ କୋଟି ୩୭ ଲକ୍ଷରେ । ବିଶ୍ୱର ଚାରିଜଣ ଭୋକିଲାଙ୍କ ମଧ୍ୟରୁ ଜଣେ ଭାରତୀୟ । ଏହା ହିଁ ସବୁଠୁଁ ବିଡ଼ମ୍ବନା ବୋଲି ଏହି ରିପୋର୍ଟ ଅଭିହିତ କରିଛି ।

କୃଷିଜାତ ଦ୍ରବ୍ୟର ସମର୍ଥନ ମୂଲ୍ୟ ପ୍ରଣାଳୀକୁ ଅବିଳମ୍ବେ ବନ୍ଦ କରିବା, କୃଷି ଉତ୍ପାଦନର ସରକାରୀ କ୍ରୟକୁ ତୁରନ୍ତ ବନ୍ଦ କରିବା ଏବଂ ସବୁ କୃଷିଜାତ ଦ୍ରବ୍ୟ ଖୋଲା ବଜାରରେ ବିକ୍ରୟ କରିବା ପାଇଁ ସାମ୍ରାଜ୍ୟବାଦୀ ସଂସ୍ଥାମାନେ ଭାରତ ସରକାର ଉପରେ ନିରନ୍ତର ଚାପ ପକାଇ ଆସୁଛନ୍ତି । ଏହା ହେଲେ ଘରୋଇ ବେପାରୀମାନେ ମନଇଚ୍ଛା ଦାମରେ ଚାଷୀମାନଙ୍କର ବେଉଷଣ ଫସଲ ସବୁ କିଣି ନେବେ । ଚାଷୀ ବିଚରା ଅଭାବୀ ଦରରେ ଆପଣା ଦ୍ରବ୍ୟ ବିକିବା ପାଇଁ ବାଧ୍ୟ ହେବ । ଶସ୍ତାରେ ଚାଷୀ ବିକି ଥିବା ଜିନିଷକୁ ବେପାରୀମାନେ ପୁଣି ଚଢ଼ା ଦାମରେ ଲୋକଙ୍କୁ ବିକିବେ । ପ୍ରତିବର୍ଷ ବେପାରୀମାନେ ଧାନ କିଣିବା ବେଳେ ଚାଷୀଙ୍କୁ କିପରି ହନ୍ତସନ୍ତ କରି ପାଣି ମୂଲ୍ୟରେ ତାହା କିଣିଥାନ୍ତି, ନିଜ ଅଭିଜ୍ଞତାରୁ ଚାଷୀକୂଳ ତାହା ଭଲ ଭାବେ ଜାଣି ଗଲେଣି । ଏପରି ଚାଲୁ ରହିଲେ ନିକଟ ଭବିଷ୍ୟତରେ ଭାରତୀୟ କୃଷିକ୍ଷେତ୍ର ନିଶ୍ଚିତ ମରୁଭୂମିରେ ପରିଣତ ହେବ ।

ଅନ୍ୟ ପକ୍ଷରେ ବିଶ୍ୱବ୍ୟାଙ୍କ୍, ବିଶେଷ କରି ବିଶ୍ୱ ବାଣିଜ୍ୟ ସଂଗଠନ ଭାରତ ସରକାର ଉପରେ ଭାରତର କୃଷି କ୍ଷେତ୍ର ଓ କୃଷି ବଜାରକୁ ବିଦେଶାଗତ କୃଷି ଦ୍ରବ୍ୟ ପାଇଁ ଖୋଲି ଦେବାକୁ ତଥା ବିଭିନ୍ନ ଆମଦାନୀ କରକୁ କମାଇ ଦେବା ପାଇଁ ଦିନୁ ଦିନ ଅଧିକରୁ ଅଧିକ ଚାପ ପକାଇ ଚାଲିଛନ୍ତି । ଭାରତ ସରକାର ସେମାନଙ୍କ ଚାପ ଆଗରେ ମୁଣ୍ଡ ନୁଆଁଇ କେତେକ ଆମଦାନୀ କର ମଧ୍ୟ ହ୍ରାସ କରି ସାରିଲେଣି । ବିଦେଶୀ କୃଷିଜାତ ଦ୍ରବ୍ୟର ଅବାଧ ଆମଦାନୀ କାର୍ଯ୍ୟକାରୀ ହେଲେ, ଭାରତର କୃଷି ଧ୍ୱଂସ ହେବା ସୁନିଶ୍ଚିତ । କାରଣ ଧନୀ ରାଷ୍ଟ୍ରମାନଙ୍କ କୃଷି ପ୍ରଯୁକ୍ତିର ମାନ ଅତି ଉନ୍ନତ, କୃଷି ସବ୍‌ସିଡିର ପରିମାଣ ଭାରତ ଠୁଁ ବହୁଗୁଣ ଅଧିକ ତଥା କୃଷି ଫାର୍ମଗୁଡ଼ିକ ଅତି ବଡ଼ ବଡ଼ । ଏହା ସଂଗେ ସଂଗେ ଧନୀ ରାଷ୍ଟ୍ରମାନେ ସେମାନଙ୍କ କୃଷକମାନଙ୍କୁ ପ୍ରଚୁର ମାତ୍ରାରେ କୃଷି ରପ୍ତାନି ସବ୍‌ସିଡି ଦେଇଥାନ୍ତି । ସେମାନଙ୍କ ତୁଳନାରେ ଭାରତୀୟ ଚାଷୀ ମୁଖ୍ୟତଃ ଛୋଟକାଟ ଗରିବ ଚାଷୀ, ତାକୁ ମିଳୁଥିବା ସବ୍‌ସିଡିର ପରିମାଣ ଅତି ସାମାନ୍ୟ । ଏଠିକାର କୃଷି ପ୍ରଯୁକ୍ତି ବେଶ୍ ପଛୁଆ ଓ ଅବିକଶିତ । ସେଥିପାଇଁ ଭାରତୀୟ ଦରିଦ୍ର ଚାଷୀ ଧନୀଦେଶ ମାନଙ୍କର ଅତି ବିକଶିତ ଚାଷୀ ସହ ପ୍ରତିଯୋଗିତା କରିବା ପାଇଁ ସକ୍ଷମ ନୁହେଁ । ଏଇ ଅବସ୍ଥାରେ ଭାରତୀୟ କୃଷି କ୍ଷେତ୍ରକୁ ଅବାଧ ଆବଦାନୀ ପାଇଁ ଖୋଲି ଦେଲେ ହଜାର ହଜାର ସଂଖ୍ୟାରେ ଭାରତୀୟ ଚାଷୀ ସର୍ବସ୍ୱାନ୍ତ ହୋଇଯିବା ସହିତ ଭାରତୀୟ କୃଷି କ୍ଷେତ୍ର ସାମ୍ରାଜ୍ୟବାଦର ଚରାଭୂମି ପାଲଟିଯିବ ।

ଏଇ କଥା ନିର୍ଦ୍ଦିଷ୍ଟ ଭାବେ ବୁଝିବା ପାଇଁ ଗହମ ସଂପର୍କରେ ଆଲୋଚନା କରାଯାଉ ।

ମୁମ୍ବାଇ ବଜାରରେ ପଞ୍ଜାବ, ହରିଆଣା ଇତ୍ୟାଦି ଉତ୍ତରାଞ୍ଚଳରୁ ଆସୁଥିବା ଗହମର ମେଟ୍ରିକ ଟନ୍ ପ୍ରତି ଦାମ ପଡ଼େ ୮,୦୦୦ ଟଙ୍କା । କିନ୍ତୁ ଅଷ୍ଟ୍ରେଲିଆରୁ ଆମଦାନୀ ଗହମର ମୂଲ୍ୟ ମେଟ୍ରିକ ଟନ୍ ପ୍ରତି ପଡ଼େ ୬,୫୦୦ ଟଙ୍କା । ଯଦି ଗହମର ଆମଦାନୀ ଉପରୁ ସବୁ କଟକଣା ପ୍ରତ୍ୟାହାର କରି ନିଆଯାଏ, ଭାରତରେ ଅଷ୍ଟ୍ରେଲିଆ, ଆମେରିକା, କାନାଡ଼ା ପ୍ରଭୃତି ବିକଶିତ ଦେଶ ମାନଙ୍କରୁ ଆମଦାନୀ ଗହମର ବନ୍ୟା ଆସିଯିବ । ପଞ୍ଜାବ, ହରିଆଣା ଇତ୍ୟାଦିର ଗହମ ଚାଷୀ ଏଇ ବଢ଼ିରେ ଭାସିଯିବେ, ସର୍ବସ୍ୱାନ୍ତ ହୋଇଯିବେ । ସେଇଭଳି ଯଦି ଡେନମାର୍କ ପ୍ରଭୃତି ଦେଶରୁ ଦୁଗ୍ଧଜାତ ଦ୍ରବ୍ୟ ଉପରେ ଆମଦାନୀ କଟକଣା ଉଠାଇ ନିଆଯାଏ, ଭାରତର ସମସ୍ତ ଦୁଗ୍ଧ ଚାଷୀ ଧ୍ୱଂସ ହୋଇଯିବେ । ଅବାଧ ଆମଦାନୀ ହେଲା ପରେ କୃଷିଜାତ ଦ୍ରବ୍ୟ ଲୋକମାନଙ୍କୁ ଶସ୍ତାରେ ମିଳି ପାରିବ ବୋଲି ଡିଣ୍ଡିମ ପିଟୁଥିବା ସାମ୍ରାଜ୍ୟବାଦୀ ସଂସ୍ଥା ଓ ତାଙ୍କ ଦଲାଲ ଆମର ଏଇ ଶାସକ ମାନଙ୍କ ଯୁକ୍ତିରେ ଆଦୌ କୌଣସି ସତ୍ୟତା ନାହିଁ । ସାମ୍ରାଜ୍ୟବାଦୀ କମ୍ପାନୀମାନେ କେବଳ ସେଇ ପର୍ଯ୍ୟନ୍ତ ସେମାନଙ୍କ ଜିନିଷ ଗୁଡ଼ିକୁ ଶସ୍ତାରେ ବିକିବେ, ଯେ ପର୍ଯ୍ୟନ୍ତ ସେମାନେ ଭାରତୀୟ ଚାଷୀମାନଙ୍କୁ ସର୍ବସ୍ୱାନ୍ତ କରି ସେମାନଙ୍କ କୃଷି ବଜାରକୁ ଦଖଲ କରି ସାରି ନାହାନ୍ତି । ଥରେ ବଜାର ଦଖଲ ହୋଇଗଲେ ସେମାନେ ଏକଚାଟିଆ ଭାବରେ ମନଇଚ୍ଛା ଦରଦାମ ବଢ଼ାଇ ଚାଲିବେ । ବିକଳ୍ପ ନଥିବାରୁ ଲୋକେ ସେତେବେଳେ ତାହା ଚଢ଼ା ଦାମରେ କିଣିବାକୁ ବାଧ ହେବେ । ବିଶୋଧିତ ପିଇବା ପାଣି ହେଉ କି ମୃଦୁ ପାଣି ହେଉ ବଡ଼ ବଡ଼ ପୁଞ୍ଜିପତି କମ୍ପାନୀମାନଙ୍କ ଦ୍ୱାରା ଯେଉଁ ବଡ଼ ଧରଣର ଠକେଇ କାରବାର ସବୁ ଚାଲିଛି, ସେଥିରୁ ମିଳି ପାରିବ ତାର ଜ୍ୱଳନ୍ତ ପ୍ରମାଣ । ସେମାନଙ୍କ ଦ୍ୱାରା ପିଇବା ପାଣିର ବୋତଲ ୧୦ ଟଙ୍କାରେ ବିକ୍ରି ହେଉଥିବା ବେଳେ ମୃଦୁ ପାଣିର ଲିଟର ୩୦-୪୦ ଟଙ୍କାରେ ବିକ୍ରି ହେଉଛି । ଶିଳ୍ପ ହେଉ କି କୃଷି, ସାମ୍ରାଜ୍ୟବାଦୀ ସଂସ୍ଥାମାନେ ଭାରତ ସରକାରକୁ ଅଧିକରୁ ଅଧିକ ରପ୍ତାନିମୁଖୀ ଉତ୍ପାଦନ ଆଡ଼କୁ ମୁହାଇବାକୁ ନିର୍ଦ୍ଦେଶ ଦେଉଛନ୍ତି । ସେମାନଙ୍କ ନିର୍ଦ୍ଦେଶଗୁଡ଼ିକୁ ଆଖିବୁଜି ପାଳନ କରିବା ପାଇଁ ଭାରତ ସରକାର ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଚାଷୀମାନଙ୍କୁ ସେମାନଙ୍କ ପରମ୍ପରାଗତ କୃଷି ପଦ୍ଧତିକୁ ଜଳାଞ୍ଜଳି ଦେଇ ରପ୍ତାନିମୁଖୀ ଚାଷ କରିବା ପାଇଁ ପ୍ରୋତ୍ସାହିତ କରୁଛନ୍ତି । ଧାନ, ଗହମ ଓ ମକା ଇତ୍ୟାଦିର ଦରଦାମକୁ ଖସାଇ ଖସାଇ ତଥା ଏସବୁ ବିକ୍ରୟ ସମୟରେ ଚାଷୀମାନଙ୍କୁ ହଇରାଣ ହରକତ କରି ସେମାନଙ୍କୁ ଏହି ସବୁ ଚାଷରୁ ଦୂରେଇ ଯିବା ପାଇଁ ବାଧ କରାଯାଉଛି । ପରିବର୍ତ୍ତେ ବିଦେଶରେ ଚାହିଦା ଥିବା ଫଳ-ଫୁଲ, ଔଷଧୀୟ ଗଛ, ଛତୁ ଓ ପନିପରିବା ଇତ୍ୟାଦିର ଚାଷ ପାଇଁ ପ୍ରୋତ୍ସାହନ ଦିଆଯାଉଛି । ଏହା ପଛରେ ଧନୀ ରାଷ୍ଟ୍ରମାନଙ୍କର ନିହିତ ସ୍ୱାର୍ଥ ରହିଛି । କାରଣ ୧୦୦ କୋଟି ଲୋକ ସଂଖ୍ୟାର ଦେଶ

ଭାରତବର୍ଷ ଖାଦ୍ୟ ଶସ୍ୟର ଗୋଟିଏ ବିରାଟ ବଜାର । ଅନ୍ୟ ପକ୍ଷରେ ଖାଦ୍ୟ ଶସ୍ୟ ବହୁଳ ଆମେରିକା କାନାଡ଼ା ଓ ଅଷ୍ଟ୍ରେଲିଆ ଭଳି ଧନୀ ଦେଶ ମାନଙ୍କରେ ପର୍ଯ୍ୟାପ୍ତ ଶସ୍ୟ ଅର୍ଥାତ କୃଷି କ୍ଷେତ୍ର ବଜାର ଅଭାବରୁ ଘୋର ସଂକଟର ସମ୍ମୁଖୀନ ହୋଇ ସାରିଛି । ସେମାନଙ୍କ କୃଷି ଅର୍ଥନୀତିକୁ ରକ୍ଷା କରିବା ପାଇଁ ସେଠିକାର ସରକାର ମାନଙ୍କୁ ପ୍ରଚୁର ମାତ୍ରାରେ କୃଷି ସବ୍‌ସିଡି ଯୋଗାଇ ଦେବାକୁ ପଡୁଛି । ନିଜର କୃଷି ସଂକଟରୁ ବାହାରି ଆସିବା ପାଇଁ ଅନ୍ୟ ଦେଶର କୃଷି ବଜାର ଦଖଲ କରିବା ସେମାନଙ୍କର ନିତାନ୍ତ ଦରକାର । ଏଇ ପରିପ୍ରେକ୍ଷୀରେ ଭାରତର ବିରାଟ ଶସ୍ୟ ବଜାର ଉପରେ ସେମାନଙ୍କର ଶ୍ୟେନ ଦୃଷ୍ଟି ପଡୁଛି । ସେଥିପାଇଁ ସେମାନେ ଭାରତକୁ ଗୋଟିଏ ଶସ୍ୟ ଅଭାବଗ୍ରସ୍ତ ରାଷ୍ଟ୍ରରେ ପରିଣତ କରିବାକୁ ଚ୍ରକାନ୍ତ ଚଳାଇଛନ୍ତି । ଖାଦ୍ୟ ଶସ୍ୟ ଚାଷ ବଦଳରେ ରପ୍ତାନିମୁଖୀ ଚାଷ ଏଇ ବଡ଼ଧରଣ ଷଡ଼ଯନ୍ତ୍ରର ଅବିଚ୍ଛେଦ୍ୟ ଅଂଶ । ଥରେ ଭାରତ ଖାଦ୍ୟ ଶସ୍ୟ ଅଭାବଗ୍ରସ୍ତ ହୋଇ ସେମାନଙ୍କ ପାଇଁ ବଜାର ପାଲଟି ଗଲେ ସେମାନେ ସେମାନଙ୍କ ବଳକା ଖାଦ୍ୟ ଶସ୍ୟ ଭାରତରେ ଗଦେଇ ଦେଇ ପ୍ରଚୁର ଲାଭ ଅର୍ଜନ କରି ପାରିବେ । ତେଣିକି ସେମାନଙ୍କ କୃଷିରେ ଦେଖା ଦେଇଥିବା ସଂକଟ ଆପେ ଆପେ ଭାରତ ଉପରେ ଚାପିଯିବ । ଖାଲି ଏତିକି ନୁହେଁ, ସେତେବେଳେ ଖାଦ୍ୟ ଅଭାବଗ୍ରସ୍ତ ଭାରତକୁ ସାମ୍ରାଜ୍ୟବାଦୀ ଫାନ୍ଦରେ ପକାଇବା ଅତି ସହଜ ସାଧ ହୋଇଯିବ । ଏ ଭିତରେ ଭାରତର ଶିଳ୍ପ ଓ ବାଣିଜ୍ୟର କେତେକ କ୍ଷେତ୍ରକୁ ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଦଖଲ କରି ସାରିଲେଣି ।

୮ ଜୁନ୍ ୨୦୦୩ 'ବିକଳ୍ପ ବିଚାର' ଲିଙ୍ଗରାଜଙ୍କ ଅନୁବାଦରୁ ସଂଗୃହୀତ- 'ଜଗତୀକରଣ ପ୍ରକ୍ରିୟା ଆରମ୍ଭ ହେବା ପରେ ଦେଶର ଅନେକ ଆଇନ କାନୁନକୁ ବଦଳାଇ ଦିଆଗଲାଣି । ଭାରତର ଖଣି ଆଇନରେ ସଂଶୋଧନ କରି ଲୁହା, ମାଙ୍ଗାନିଜ୍, କ୍ରୋମାଇଟ୍, ଗନ୍ଧକ, ସୁନା, ହୀରା, ତମ୍ବା, ସୀସା, ନିକେଲ, ଟଙ୍ଗଷ୍ଟନ, ପ୍ଲାଟିନମ୍, ମୋଲିବ୍ ଡେନମ୍ ଆଦି ୧୩ଟି ଖଣିଜ ପଦାର୍ଥର ଖନନ ଓ ଦୋହନକୁ ନିୟନ୍ତ୍ରଣ ମୁକ୍ତ କରି ଦିଆଯାଇଛି । ବିଦେଶୀ କମ୍ପାନୀମାନଙ୍କୁ ୫୦ ପ୍ରତିଶତ ସ୍ଥାନରେ ସଂପୂର୍ଣ୍ଣ ମାଲିକାନା ପ୍ରଦାନ କରାଯିବାର ନିଷ୍ପତ୍ତି ଗ୍ରହଣ କରାଯାଇଛି । ଆଗରୁ ପ୍ରତ୍ୟେକ ପ୍ରତ୍ୟାଶୀ କମ୍ପାନୀକୁ ୨୫ ବର୍ଗ କିଲୋମିଟର ପର୍ଯ୍ୟନ୍ତ ଖଣି ପଟ୍ଟା ଦେବାର ନିୟମ ଥିଲା । ଏବେ ତାହାକୁ ୫ ହଜାର ବର୍ଗ କିଲୋମିଟର ପର୍ଯ୍ୟନ୍ତ ବୃଦ୍ଧି କରାଯାଇଛି ।''

ବିଗତ ଷାଠିଏ ଦଶକରେ ଚାଷୀମାନଙ୍କର ଉତ୍ତାଳ ଆନ୍ଦୋଳନକୁ ଦୃଷ୍ଟିରେ ରଖି ଦେଶର ବିଭିନ୍ନ ରାଜ୍ୟରେ ଭୂ-ସଂସ୍କାର ଆଇନ ତଥା ଲ୍ୟାଣ୍ଡ ସିଲିଂ ଆଇନଗୁଡ଼ିକ ଗଢ଼ା ଯାଇଥିଲା । କିନ୍ତୁ ରାଜନୀତିକ ଆନ୍ତରିକତା ଓ ଇଚ୍ଛା ଶକ୍ତିର ଅଭାବ ଯୋଗୁଁ ଏଇ ଆଇନ

ସବୁକୁ ସଠିକ ଭାବେ କାର୍ଯ୍ୟକାରୀ କରାଗଲା ନାହିଁ । ସେ ସବୁକୁ ଥଣ୍ଡା ଘରେ ପକାଇ ଦିଆଗଲା । ଏବେ ଜଗତୀକରଣ ପରିପ୍ରେକ୍ଷୀରେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀ ଓ ଦେଶୀ ପୁଞ୍ଜିପତି ମାନଙ୍କ ଦ୍ୱାରା ଲ୍ୟାଣ୍ଡ ସିଲିଂ ଆଇନକୁ ବାତିଲ କରି ଜମିର କ୍ରୟ-ବିକ୍ରୟ ଉପରେ ସମସ୍ତ ପ୍ରକାର କଟକଣା ଉଠାଇ ଦେବା ପାଇଁ ସରକାରଙ୍କ ଉପରେ ପ୍ରଚଣ୍ଡ ଚାପ ପଡୁଛି । କାରଣ ସିଲିଂ କଟକଣା ପ୍ରତ୍ୟାହାର ହେଲେ ପୁଞ୍ଜିପତି ମାନେ ହଜାର ହଜାର ଏକର ଜମି ଦଖଲ କରି ତା' ଉପରେ ବଡ଼ ବଡ଼ ଫାର୍ମ ବସାଇବେ, ବାଣିଜ୍ୟ ଭିତ୍ତିକ ଚାଷ କରିବେ କିମ୍ୱା ଖଣି-ଖାଦାନ ଖୋଲିବେ, ଶିଳ୍ପ ପ୍ରତିଷ୍ଠା କରିବେ କିମ୍ୱା ତାଙ୍କର ଅନ୍ୟାନ୍ୟ ଆବଶ୍ୟକତା ପୂରଣ କରି ପ୍ରଚୁର ଲାଭ ଅର୍ଜନ କରିବେ । ଜଙ୍ଗଲ ଓ ଜଙ୍ଗଲ ଜମି ମଧ୍ୟ ଏଇ ଷଡ଼ଯନ୍ତ୍ରର ଅନ୍ତର୍ଭୁକ୍ତ । ଏବେ ଆଦିବାସୀମାନଙ୍କୁ ଜଙ୍ଗଲ ଜମିରୁ ଉଚ୍ଛେଦ ଲାଗି ଯେଉଁ ଯୋଜନା ଚାଲିଛି, ତାହା ସମଗ୍ର ଷଡ଼ଯନ୍ତ୍ରର ଅବିଚ୍ଛିନ୍ନ ଅଂଶ । ଏହାଦ୍ୱାରା ଭାରତର ଲକ୍ଷ ଲକ୍ଷ ଚାଷୀ ଯେଉଁ ଜମି ପାଇବା ଆଶାରେ ବସିଛନ୍ତି, ସେମାନଙ୍କର ସେ ଆଶା-ଆକାଂକ୍ଷା ଧୂଳିସାତ୍ ହେବ । ଖାଲି ଏତିକି ନୁହେଁ, ସେମାନେ ସରକାରଙ୍କ ତରଫରୁ ଚାଷ ଜମି ତ ପାଇବେ ନାହିଁ- ବରଂ ସେମାନଙ୍କ ହାତରେ ଥିବା ସ୍ୱଳ୍ପ ଜମି ଜମା ମଧ୍ୟ ହରାଇବେ । ସରକାର ଭୂସଂସ୍କାର ଆଇନଗୁଡ଼ିକ ବଦଳାଇ ଲକ୍ଷ ଲକ୍ଷ ଏକର ଚାଷ ଜମି ଓ ଜଙ୍ଗଲ ଜମି ବହୁରାଷ୍ଟ୍ରୀୟ କମ୍ପାନୀ ଓ ଭାରତୀୟ ପୁଞ୍ଜିପତି ମାନଙ୍କ ହାତରେ ଟେକି ଦେବାର ଚକ୍ରାନ୍ତ କରୁଛନ୍ତି ।

## ସାମ୍ରାଜ୍ୟବାଦୀ ସ୍ୱାର୍ଥରେ

''ପ୍ରାୟ ୫୮,୦୦୦ କୋଟି ଟଙ୍କାର ବ୍ୟାଙ୍କ ସଂପତ୍ତିକୁ କାର୍ଯ୍ୟକ୍ଷମ ନୁହେଁ (ନନ୍ ପରଫରମିଂ) ବୋଲି ବର୍ଣ୍ଣନା କରାଯାଉଛି ଏବଂ ରାଷ୍ଟ୍ରୀୟ ପୁଞ୍ଜିକୁ ଧାରାବାହିକ ଲୁଣ୍ଠନ କରୁଥିବା ପୁଞ୍ଜିପତି ମାନଙ୍କୁ ପ୍ରୋତ୍ସାହନ ଦିଆଯାଉଛି । ଅନ୍ୟ ଦିଗରେ ବାର୍ଷିକ ଜାତୀୟ ଆୟର ୨୦ ଭାଗ ସୁଧ ତଥା ଅନ୍ୟାନ୍ୟ ଉଦ୍ଦେଶ୍ୟରେ (୩ ଲକ୍ଷ କୋଟି ଟଙ୍କା) ସାମ୍ରାଜ୍ୟବାଦୀମାନେ ଲୁଟ୍ କରି ନେଉଛନ୍ତି । ଅଥଚ ଆମ ଦେଶର ୭୦ ଭାଗ ପରିବାର ଆଜି ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଛନ୍ତି ।

ନିକଟରେ ଜନଆନ୍ଦୋଳନ ରାଷ୍ଟ୍ରୀୟ ସମନ୍ୱୟର ମୁଖ୍ୟ ମେଧା ପାଟେକର ଭୁବନେଶ୍ୱର ଠାରେ କହିଛନ୍ତି- ବାର୍ଷିକ କେନ୍ଦ୍ର ବଜେଟ୍‌ର ସିଂହ ଭାଗ, ଅର୍ଥାତ ସର୍ବମୋଟ ୧୨୦୯୭୪ କୋଟି ଟଙ୍କାରୁ ୬୦ ହଜାର କୋଟି ଟଙ୍କା ବଡ଼ ବଡ଼ ରାଜ ରାସ୍ତାର ପ୍ରଶସ୍ତକରଣ, ଦୁଇଟି ସାମୁଦ୍ରିକ ବନ୍ଦର ଓ ଦୁଇଟି ଉଡ଼ାଜାହାଜ ବନ୍ଦରର ଆଧୁନିକକରଣ ସହିତ ଦୁଇଟି ଆନ୍ତର୍ଜାତିକ ସଭାଗୃହର ନିର୍ମାଣ ପାଇଁ ଖର୍ଚ୍ଚ ହେବ । ଏସବୁ ବିକାଶର ମୂଳ

ହିତାଧିକାରୀ ହେବେ କମ୍ପାନୀ କର୍ପୋରେଟ୍‌ମାନେ; ସେମାନଙ୍କ ଉତ୍ପାଦିତ ବସ୍ତୁମାନଙ୍କର ଚାହିଦା ବୃଦ୍ଧି ପାଇବ । ସେ ପୁଣି କହିଛନ୍ତି- କେନ୍ଦ୍ର ସରକାରଙ୍କ ଜାତୀୟ ନଦୀ ସଂଯୋଗ ଯୋଜନା ଏକ ମରୀଚିକା । ଏହି ପ୍ରକଳ୍ପ ପ୍ରକୃତି ବିରୋଧରେ ଏକ ଷଡ଼ଯନ୍ତ୍ର । ଏହା ଜରିଆରେ କେନ୍ଦ୍ର ସରକାର ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଡାକି ଆଣି ଆମ ଦେଶର ଜଳସଂପଦକୁ ହସ୍ତାନ୍ତର କରିବା ପାଇଁ ଚାହୁଁଛି । ଏହାଦ୍ୱାରା ଜମି ଜଳ ଓ ଜଙ୍ଗଲ ଧ୍ୱଂସ ହେବା ସହ ଲକ୍ଷ ଲକ୍ଷ ଲୋକ ବିସ୍ଥାପିତ ହେବେ । ଏହାକୁ ବିରୋଧ କରାଯିବା ସହିତ ଓଡ଼ିଶାରେ ପ୍ରସ୍ତାବିତ ଉପକୂଳ ରାଜପଥ ଜଗତୀକରଣକୁ ସେ ବିରୋଧ କରିବା ପାଇଁ ଆହ୍ୱାନ କରିଥିଲେ ।

## ନଦୀ ଶୃଙ୍ଖଳ କଣ

ସାମାନ୍ୟ ସଂଯୋଜନ ସହ ମୃଣାଲଙ୍କ 'ନଦୀ ଶୃଙ୍ଖଳ' ଲେଖା: ଭାରତବର୍ଷରେ ବନ୍ୟା ଏବଂ ମରୁଡ଼ି ପ୍ରାୟ ଲାଗି ରହିଛି । କେତେବେଳେ ଜଳ ବହୁଳେ, କେତେବେଳେ ଜଳ ବିହୁନେ ଲୋକେ ହନ୍ତସନ୍ତ ହୁଅନ୍ତି । ଏହାର ଏକ ସ୍ଥାୟୀ ସମାଧାନ ପାଇଁ ନଦୀ ସଂଯୋଗ ବା ରିଭର୍-ଲିଙ୍କିଙ୍ଗର ପରିକଳ୍ପନା । ଉତ୍ତର ଓ ପୂର୍ବ ଭାରତର ଚିରସ୍ରୋତା ନଦୀ ସହିତ ଦକ୍ଷିଣ ଭାରତର ବଡ଼ ଅଥଚ ବର୍ଷ ପୁଷ୍ଟ ନଦୀକୁ ଯୋଡ଼ି ଦେଲେ । ଗୋଟେ ନଦୀର ବଳକା ପାଣିକୁ ଅନ୍ୟ ଅଂଚଳକୁ ନେଇ ହେବ- ଏଇ ହେଲା ମୋଟାମୋଟି ଉଦ୍ଦେଶ୍ୟ । ଏ ପରିକଳ୍ପନାର ରୂପରେଖଟି ବହୁବର୍ଷ ତଳେ ଇଞ୍ଜିନିୟର କେ.ଏଲ୍.ରାଓଙ୍କ କାରିଗରୀ ଚିନ୍ତା ଭାବନା ପ୍ରସୂତ ଏକ ଖସଡ଼ା । ଆଗରୁ କେତେ ଥର ଏଭଳି ପ୍ରକଳ୍ପ କରିବାର ଚେଷ୍ଟା ହୋଇଛି, ସବୁ ଥର ବାତିଲ କରାଯାଇଛି ।

ଏଥର କିନ୍ତୁ ଏ ପ୍ରକଳ୍ପ ରୂପାୟନ ଦିଗରେ ଖୋଦ୍ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତି ଆଗ୍ରହ ପ୍ରକାଶ କରିଛନ୍ତି । ୨୦୦୨ ସ୍ୱାଧୀନତା ଦିବସରେ ରାଷ୍ଟ୍ରପତି ନଦୀ ଶୃଙ୍ଖଳର ସ୍ୱପ୍ନ ସର୍ବ ସମକ୍ଷରେ ପ୍ରକାଶ କରନ୍ତି । ଦେଶର ୩୬ଟି ନଈ ଆଉ ରାଜସ୍ଥାନ କେନାଲକୁ ନେଇ ନଦୀ ସଂଯୋଗର ଯେଉଁ ରାଜସୂୟ ଯଜ୍ଞ କଥା ଚିନ୍ତା କରାଯାଇଛି- ସେଥିରେ ୩୦ଟି ବନ୍ଧନରେ ତିଆରି ହେବ ନଦୀ ଶୃଙ୍ଖଳ । ଉତ୍ତର ପୂର୍ବାଞ୍ଚଳର ବ୍ରହ୍ମପୁତ୍ର ଓ ଗାଙ୍ଗେୟ ଉପତ୍ୟକାର ପୂର୍ବ ଭାଗରେ (ସରକାରୀ ମତରେ) ଉଦ୍‌ବୃତ୍ତ ଜଳର ଭଣ୍ଡାର ରହିଛି । ତେଣୁ ଏଠୁ ଜଳାଭାବଗ୍ରସ୍ତ ଅଂଚଳ ଗୁଡ଼ିକ ସହ ନଦୀ ସଂଯୋଗ କରି ଜଳରାଶି ନିଆଯିବ । ମୋଟାମୋଟି ଭାବେ ଯୋଜନା ହେଲା-

୧. ଦକ୍ଷିଣ ଦିଗର ୧୬ଟି ସଂଯୋଗ- ଶୋନ, ଦାମୋଦର, ସୁବର୍ଣ୍ଣରେଖା, ମହାନଦୀର ଗତି ପଥରେ ପ୍ରଧାନତଃ କର୍ଣ୍ଣାଟକ୍କୁ, ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶକୁ ପାଣି ଯିବ ।

୨.   ଉତ୍ତର ଆଡ଼କୁ ୪ଟି ସଂଯୋଗ- କୋଶି, ଗଣ୍ଡକ, ଘରଡ଼ା, ଗଙ୍ଗା, ମେଛି ଓ ଯମୁନାର ନଦୀ ପଥରେ ହରିଆନା ଓ ଦିଲ୍ଲୀର ଆଖପାଖ ଅଂଚଳକୁ ଜଳସିକ୍ତ କରିବ ।

୩.   ପଶ୍ଚିମ ଆଡ଼କୁ ୬ଟି ସଂଯୋଗ ମୂଳତଃ ଗୁଜରାଟକୁ ପାଣି ନେବା ପାଇଁ ହୋଇଛି । ଏହି ଯାତ୍ରା ପଥରେ ରାଜସ୍ଥାନ, ମହାରାଷ୍ଟ୍ର ଏବଂ ମଧ୍ୟପ୍ରଦେଶକୁ କିଛି ପାଣି ମିଳିବ ।

୪.   ପୂର୍ବ ଦିଗରେ ବ୍ରହ୍ମପୁତ୍ର ଓ ଗଙ୍ଗାକୁ ଯୁକ୍ତ କରିବା ବାଟରେ ଫରାକ୍କାରୁ ସୁନ୍ଦର ବନର ସଂଯୋଗ- ଜଳସ୍ଥିତ ପଶ୍ଚିମବଂଗରେ ଆହୁରି ଉଦ୍‌ବୃତ୍ତ ଜଳ ଜଳା ହେବ ।

ଇତିମଧ୍ୟରେ ପରିବେଶ ସଚେତନତା ଓ ଅଭିଜ୍ଞ ବହୁ ମଣିଷ ପତ୍ରପତ୍ରିକାରେ, ସଭାସମିତିରେ, ଇଣ୍ଟରନେଟ୍‌ରେ ଏପରିକି ପ୍ରଧାନମନ୍ତ୍ରୀଙ୍କ ପାଖରେ ବହୁ ଯୁକ୍ତି ଦେଖାଇ ଏହାର ବିରୋଧିତା କରିଛନ୍ତି । ପରିବେଶ ସଂକ୍ରାନ୍ତ ଆପତ୍ତି ଉଠାଇଛନ୍ତି ସ୍ୱୟଂ କେନ୍ଦ୍ରୀୟ ପରିବେଶ ବିଭାଗ ।

ଏ ଆପତ୍ତି ଗୁଡ଼ିକୁ କେତୋଟି ଭାଗରେ ଭାଗ କରି ହେବ ।

୧. ରାଜନୈତିକ : ନଦୀ-ଶୃଙ୍ଖଳ ପ୍ରକଳ୍ପକୁ ବହୁ ରାଜ୍ୟ ବିରୋଧ କରୁଛନ୍ତି । ଆପତ୍ତିର ସ୍ୱର ଶୁଭିଲାଣି ଆସାମ, ବିହାର ଓ ସିକିମରୁ । ଦକ୍ଷିଣ ଭାରତରେ କେରଳ ମଧ୍ୟ ଏ ନଦୀ-ଶୃଙ୍ଖଳ ପରିକଳ୍ପନାର ବିରୋଧୀ । ପ୍ରତିବେଶୀ ବାଂଲାଦେଶ ଆନ୍ତର୍ଜାତିକ ସ୍ତରରେ ଏ ଯୋଜନା ବିରୋଧରେ ପ୍ରତିବାଦ କଲାଣି । ମନେ ରଖିବାକୁ ପଡ଼ିବ, ଦୁଇ ଦେଶ ମଧ୍ୟରେ ନଦୀ ଜଳ ବଣ୍ଟନ ନେଇ ଆନ୍ତର୍ଜାତିକ ଚୁକ୍ତି ରହିଛି, ଯାହା କୌଣସି ଦେଶ ଭଙ୍ଗ କରିବା ଠିକ୍ ହେବ ନାହିଁ ।

୨.   ଭୌଗୋଳିକ : ଭୌଗୋଳିକ ସ୍ଥାନ ଭିତ୍ତିରେ ବିଚାର କଲେ ଯଦି ଏ ପ୍ରକଳ୍ପ ରୂପାୟିତ ହୁଏ ଦେଶର ଜଳ ଓ ମାଟିର ଭାରସାମ୍ୟ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ ହେବ ।

୩.   ପରିବେଶ : ପରିବେଶଗତ ଦୃଷ୍ଟିରୁ ବିଚାର କଲେ, ପ୍ରତ୍ୟେକ ନଦୀର ନିଜସ୍ୱ ପରିବେଶ ରହିଛି, ନିଜସ୍ୱ ଉଦ୍ଭିଦ ଓ ପ୍ରାଣୀଜଗତ ରହିଛି । ନଦୀକୁ ନଦୀ ଯୋଡ଼ା ହେଲେ ତାହା ନଷ୍ଟ ହୋଇଯିବ ।

୪.   ଅର୍ଥନୈତିକ : ଏ ଯୋଜନାରେ ୫ ଲକ୍ଷ ୬୦ ହଜାର କୋଟି ଟଙ୍କାରୁ ୧୦ ଲକ୍ଷ କୋଟି ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ଅଟକଳ କରାଯାଇଛି । ଏତେ ଟଙ୍କା ଆସିବ କେଉଁଠୁ ? ଋଣ ନିଆଗଲେ ଶୁଝାଯିବ କିମିତି ? ପୁଣି ଏଇ ବିପୁଳ ପରିମାଣ ଋଣ କିଏ ଦେବ, କେଉଁ ସ୍ୱାର୍ଥରେ ?

ତିନି ମାସର ଜୋର୍ ବର୍ଷା (ମୌସୁମୀ) ଏବଂ ବାକି ସମୟରେ ଶୁଷ୍କତା-ପ୍ରବଣ

ଆମ ଦେଶର ନଦୀଗୁଡ଼ିକ ବର୍ଷା ଦିନରେ ରୁଦ୍ର ରୂପ ଧାରଣ କରନ୍ତି । ଭୂମିକ୍ଷୟ, ଅତଡ଼ା ଖସିବା, ପଟୁ ଜମିବା, ବନ୍ୟା, ନଦୀର ଜଳଧାରଣ କ୍ଷମତା ହ୍ରାସ ଏବଂ ଦିଗ ପରିବର୍ତ୍ତନ ଆମ ପାଇଁ ନୂଆ କିଛି ନୁହେଁ । ସବୁ ନଈ ଖରା ଓ ଜଳସ୍ଥିତିର ଚକ୍ରରେ କମେ ଓ ବଢ଼େ । ଦୁଇଟି ନଈକୁ ଯୋଡ଼ି ଦେଲେ- ଦୁଇଟି ଯାକ ନଈର ସମସ୍ୟା ବଢ଼ିଯିବ । ବର୍ଷା ଦିନରେ ଗଙ୍ଗା ବା ବ୍ରହ୍ମପୁତ୍ର ବା ଆମ ମହାନଦୀର ରୁଦ୍ର ରୂପ ଯେଉଁମାନେ ଦେଖିଛନ୍ତି ସେମାନେ ବୁଝି ପାରିବେ ଏଇ ନଈ ଗୁଡ଼ିକର ସମନ୍ୱିତ ବିପୁଳ ଜଳ ରାଶିକୁ କୌଣସି ବନ୍ଧ ଦେଇ ନିର୍ଦ୍ଦିଷ୍ଟ ବାଟରେ ପରିଚାଳିତ କରିବାର ଚେଷ୍ଟା ବାତୁଳତା ।

କେତେକ ଚିନ୍ତାଶୀଳ ବ୍ୟକ୍ତି ଏ ନଦୀ ଶୃଙ୍ଖଳ ଯୋଜନା ପଛରେ ବହୁ ଦେଶୀୟ ବା ମଲ୍‌ଟି ନ୍ୟାସନାଲ କମ୍ପାନୀମାନଙ୍କ ଷଡ଼ଯନ୍ତ୍ର ଦେଖନ୍ତି । ନଦୀ-ସଂଯୋଗ ଯୋଜନାର ଚିତ୍ରରୁ ସନ୍ଦେହ ହୁଏ ଯେ, ସମଗ୍ର ପ୍ରକଳ୍ପଟି ବିଶେଷ କେତୋଟି ରାଜ୍ୟ ଓ ଅଂଚଳର ସୁବିଧା ପାଇଁ କରାଯାଉଛି । ଜିଓଲଜିକାଲ ସର୍ଭେ ଅଫ୍ ଇଣ୍ଡିଆର ଭୂତପୂର୍ବ ଉପନିର୍ଦ୍ଦେଶକ ଭୂତତ୍ତ୍ୱବିଦ୍ ସୁବ୍ରତ ସିହ୍ନା ଏକ ନିବନ୍ଧ (ନଦୀ ଶୃଙ୍ଖଳ : କାହା ସ୍ୱାର୍ଥରେ ? ଆନନ୍ଦ ବଜାର ପତ୍ରିକା, ୧୩.୯.୦୩)ରେ ଲେଖିଛନ୍ତି, ଯେଉଁ ନାମରେ ହେଉ- ଦିଲ୍ଲୀର ଆଖପାଖରେ ଗଢ଼ି ଉଠୁଛି ନୂଆ ଶିଳ୍ପାଞ୍ଚଳ । ଗୁଜରାତ, କର୍ଣ୍ଣାଟକ, ତାମିଲନାଡୁ, ଆନ୍ଧ୍ର ଓ କିଛିଟା ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶ- ଏ ସବୁ ରାଜ୍ୟରେ ଅନେକ ବିଶାଳ ଓ ବହୁ ଜାତିକ ଶିଳ୍ପ ବାଣିଜ୍ୟିକ ସଂସ୍ଥା ଆସି ପହଞ୍ଚିଛନ୍ତି । ଅଥଚ ପ୍ରକୃତି ବିମୁଖ । ଭୂତାତ୍ତ୍ୱିକ ପରିସ୍ଥିତି, ଭୌଗୋଳିକ ଗଠନ ଅଥବା କମ୍ ବର୍ଷା ଜନିତ ଶୁଷ୍କତା ପାଇଁ ଏ ସବୁ ଅଂଚଳରେ ଜଳ ସଂରକ୍ଷଣର କ୍ଷମତା ବହୁତ କମ୍ । କିନ୍ତୁ ଶିଳ୍ପାୟନ ଏବଂ ତାର ଅବିଚ୍ଛିନ୍ନ ସଂଗୀ ନଗରାୟନ ସର୍ବଦା ଜଳତୃଷ୍ଣାରେ ଜର୍ଜରିତ । ତେଣୁ ସେମାନଙ୍କ ସ୍ୱାର୍ଥରେ ଏ ପରିକଳ୍ପନା ।

ଏହାଛଡ଼ା କୃଷି କ୍ଷେତ୍ରରେ ମଧ ଆଖୁ, ବିଦେଶୀ ଉତ୍ପାଦନ କ୍ଷମ ଗହମ ଓ ଧାନ ପାଇଁ ପ୍ରଚୁର ପରିମାଣ ପାଣି ଦରକାର । ଏ ସବୁ ଚାଷ କରନ୍ତି ରାଜନୈତିକ ପ୍ରଭାବଶାଳୀ ଅତି ବୃହତ ଚାଷୀ ଗୋଷ୍ଠୀ । ଏମାନେ ସରକାରୀ ଅନୁଦାନରେ ରାସାୟନିକ ସାର ଓ କୀଟନାଶକ ଔଷଧ ପାଇଥାନ୍ତି । କିନ୍ତୁ ବିନା ପାଣିରେ ତ ଚାଷ ହେବନି । ସେଥିପାଇଁ ମେରୁର ବରଫ ତରଳେଇ ନ ହେଉ ପଛେ, ଦେଶର ସୁଦୂରତମ ପ୍ରାନ୍ତରୁ ପାଣି ଆଣିବାକୁ ପଡ଼ିବ । ଏଠି କହି ରଖିବା ଦରକାର ଯେ, ଏ ପ୍ରକାରର କୃଷି ବ୍ୟବସ୍ଥାରେ ପ୍ରଚୁର ଜମି ସବୁଦିନ ପାଇଁ ଅକାମୀ ହୋଇପଡୁଛି । ନର୍ମଦା, ଉକାଇ, ମାହି, ଚମ୍ବଲ, ରାଜସ୍ଥାନ କେନାଲ ତା'ର ଅକାଟ୍ୟ ପ୍ରମାଣ । ପାନୀୟ ଜଳରେ କୀଟ ନାଶକର ଅବସ୍ଥିତି ଭଳି ଭୟାନକ ଘଟଣା ବି ଏଇ ସବୁଜ ବିପ୍ଳବର ଅବଶ୍ୟମ୍ଭାବୀ ପରିଣାମ । ଏ ପ୍ରକଳ୍ପ ରୂପାୟିତ ହେଲେ ଏ ଧରଣର

ସର୍ବନାଶ କୃଷି ପଦ୍ଧତିକୁ ଆହୁରି ପ୍ରଶ୍ରୟ ମିଳିବ । କିନ୍ତୁ ଯେତେ ଅପୂରଣୀୟ କ୍ଷତି ଦେଶର ହେଉନା କାହିଁକି, ସେଥିପାଇଁ ଟିକିଏ ବି କ୍ଷତି ପୂରଣ ଏ ସବୁ ବିଶାଳ ଶିଳ୍ପ ସଂସ୍ଥା ବା ଅତି ବୃହତ ଚାଷୀ ଗୋଷ୍ଠୀକୁ ଦେବାକୁ ପଡ଼ିବନି ।

ନଦୀ ସଂଯୋଗ ଯୋଜନା ଫଳରେ ପଶ୍ଚିମବଂଗ, ଆସାମ ଓ ଓଡ଼ିଶାରେ ଅନେକ କ୍ଷତି ହେବା ପ୍ରାୟ ନିଶ୍ଚିତ ।

ଋଣ ଜର୍ଜରିତ ଆମ ଦେଶରେ ଦାରିଦ୍ର୍ୟ, ଅସ୍ୱାସ୍ଥ୍ୟ, ଆର୍ଥ, ସାମାଜିକ ଦୁର୍ଗତି ଓ ଚରମ ଅଶିକ୍ଷାର ଶିକାର କୋଟି କୋଟି ମଣିଷ । ନଦୀ ଶୃଙ୍ଖଳ ପ୍ରକଳ୍ପରେ ପ୍ରାଥମିକ ଭାବେ ଯେଉଁ ହଜାର  କୋଟି ଟଙ୍କା ଖର୍ଚ୍ଚ ହିସାବରେ ଧରା ହୋଇଛି- ତା'ର କିଛି ଭାଗ ଠିକ୍ ଭାବେ ବିନିଯୋଗ କଲେ ତାହା ଅଧିକ ଫଳପ୍ରଦ ହେବ । ପ୍ରକୃତିର ନିଜସ୍ୱ ନିୟମ ଅଛି । ସେ ନିୟମକୁ ମାନି ମଣିଷର ଉନ୍ନୟନ କଥା ଚିନ୍ତା କରିବା ଦରକାର । ପ୍ରକୃତିର ନିୟମକୁ ଭାଙ୍ଗିଲେ ଫଳ : ଧ୍ୱଂସ ।

## ଓଡ଼ିଶା ପରିପ୍ରେକ୍ଷୀରେ

ପ୍ରଫୁଲ୍ଲ ସାମନ୍ତରାଙ୍କ ଲେଖାର ନିର୍ବାଚିତ ଅଂଶ : ନଦୀ ସଂଯୋଗ ନାମରେ ଜଳ ଭଣ୍ଡାର ହେବ, ଯାହାଦ୍ୱାରା ଲକ୍ଷ ଲକ୍ଷ ଲୋକ ବିସ୍ଥାପିତ ହେବେ ଓ ଜୀବିକା ହରାଇବେ । ଓଡ଼ିଶା ପରିପ୍ରେକ୍ଷୀରେ ବିଚାର କଲେ ମହାନଦୀରେ ବଳକା ପାଣି ଅଛି ବୋଲି ଯାହା କୁହାଯାଉଛି ତାହା ବର୍ତ୍ତମାନ ସ୍ଥିତିରେ ଠିକ୍ ନୁହେଁ । ମହାନଦୀରୁ ବଳକା ପାଣି ଗୋଦାବରୀ ଦେଇ କାବେରୀକୁ ଦେବା ପାଇଁ ମଣିଭଦ୍ରା ଡ୍ୟାମ ନିର୍ମାଣ କଥା ନଦୀ ସଂଯୋଗ ଯୋଜନାରେ ରହିଛି । ଆଜି କାବେରୀକୁ ଜଳ ନେବା ପାଇଁ ଓଡ଼ିଶାର ଏହି ବନ୍ଧ ନିର୍ମାଣ ହେଲେ ହଜାର ହଜାର ଗ୍ରାମର ଲକ୍ଷାଧିକ ପରିବାର ବିସ୍ଥାପିତ ହେବେ । ଓଡ଼ିଶାର କେତେକ ଜଳ ବିଷାରଦ ଓ ପୂର୍ବତନ ମୁଖ୍ୟଯନ୍ତ୍ରୀମାନେ କହିଲେଣି ମହାନଦୀରେ ଯଥେଷ୍ଟ ପାଣି ନାହିଁ ବାହାରକୁ ନେବା ପାଇଁ । ସେମାନଙ୍କ ମତ ଅନୁଯାୟୀ ୧୯୨୨ରୁ ୧୯୮୮ ମଧ୍ୟରେ ମହାନଦୀର ପ୍ରବାହିତ ଜଳକୁ ହିସାବ କରି ମଣିଭଦ୍ରା ଠାରେ ପ୍ରବାହିତ ଜଳର ପରିମାଣ ୪୦ ଘନ କି.ମି. ଆକଳନ କରାଯାଇଥିଲା । ଜଳର ବ୍ୟବହାର ପରିମାଣ ୨୮ ଘନ କି.ମି. । ଆଉ ୧୨ ଘନ କି.ମି. ବଳକା ଅଛି ବୋଲି କୁହାଯାଉଛି । କିନ୍ତୁ ତାହା ବର୍ତ୍ତମାନ ପାଇଁ ଭୁଲ । ହୀରାକୁଦ ବନ୍ଧ ନିର୍ମାଣ ପରଠାରୁ ଜଳ ପ୍ରବାହ କମି ମଣିଭଦ୍ରା ଠାରେ ୨୭.୩୬ ଘନ କି.ମି. ହୋଇଛି । ଏହା ଆବଶ୍ୟକତା ଠାରୁ କମ୍ । ତେଣୁ ମହାନଦୀରେ ବଳକା ପାଣି ନାହିଁ । ବଡ଼ ନଦୀବନ୍ଧ କିମ୍ବା ନଦୀ ସଂଯୋଗ ବନ୍ୟା ନିୟନ୍ତ୍ରଣର ବାଟ ନୁହେଁ, ବରଂ ବନ୍ୟାର

ପ୍ରକୋପ ବଢ଼ାଇବ । ହୀରାକୁଦ ବନ୍ଧ ହେଲା ପରେ ବହୁ ବର୍ଷ ହେଲା ନଦୀ ବନ୍ଧକୁ ରକ୍ଷା କରିବାକୁ ପାଣି ନିଷ୍କାସନ କରିବା ପରେ ମହାନଦୀରେ ପ୍ରବଳ ବନ୍ୟା ହୋଇଥାଏ । ପୁଣି ଗଙ୍ଗାରୁ ଜଳ ବନ୍ୟା ବେଳେ ହିଁ ମହାନଦୀ ଦେଇ ଗୋଦାବରୀକୁ ନିଆଯିବ କେନାଲ ଦ୍ୱାରା । ଏହା ହେଲେ ଉପକୂଳବର୍ତ୍ତୀ ଜଳ ପ୍ଲାବିତ ଅଂଚଳର ଅବସ୍ଥା କଣ ହେବ ? ଚଳିତ ବର୍ଷ ଓଡ଼ିଶାର ବନ୍ୟାର ବ୍ୟାପକତା ଉପକୂଳବର୍ତ୍ତୀ ଅଂଚଳ ସମେତ ବଲାଙ୍ଗୀର, କଳାହାଣ୍ଡି, ସମ୍ବଲପୁର, କୋରାପୁଟ, ରାୟଗଡ଼ ଜିଲ୍ଲା ମାନଙ୍କରେ ଅପୂରଣୀୟ କ୍ଷତି କରିଛି । ତେଣୁ କେବଳ ଉପକୂଳ ଦୁଇ ଜିଲ୍ଲାର ବନ୍ୟା ନିୟନ୍ତ୍ରଣ ନାମରେ ଆଉ ଏକ ହୀରାକୁଦ ବନ୍ଧର ନିର୍ମାଣ ବନ୍ୟାର ପ୍ରତିବନ୍ଧକ ହୋଇ ନପାରେ । ବରଂ ମହାବିପତ୍ତିର କାରଣ ହେବ । ପୁଣି ଉକ୍ତ ବନ୍ୟା ସମୟରେ ହିଁ ଗଙ୍ଗାର ବଳକା ପାଣି ସୁବର୍ଣ୍ଣ ରେଖା ଓ ମହାନଦୀ ଦେଇ ଗୋଦାବରୀକୁ ନେବା ବେଳେ ସମଗ୍ର ଓଡ଼ିଶା ବନ୍ୟାର ବିଭୀଷିକା ଭିତରେ ରହି ବିପର୍ଯ୍ୟସ୍ତ ହେବ । ଓଡ଼ିଶା ସରକାର ନୀରବ କାହିଁକି ?

ପୁଣି ନଦୀ ସଂଯୋଗ ଯୋଜନାରେ ଅର୍ଥ ନିବେଶ ପାଇଁ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଡକାଯିବ । ସେମାନେ ଜଳ ଯୋଗାଣକୁ ବ୍ୟବସାୟ କରିବେ । ତାଙ୍କ ପାଖରୁ ଭାରତର ଚାଷୀ ଓ ସାଧାରଣ ଲୋକ ଜଳ କିଣି ପାରିବେ ତ ?

ମୁଖ୍ୟ ବିଚାରପତି ପଦରୁ ଅବସର ଗ୍ରହଣ କରିବା ପରେ ଚଣ୍ଡିଗଡ଼ରେ ଜଷ୍ଟିସ କ୍ରିପାଲ କହିଲେ ଯେ, ସେ ଅକ୍ଟୋବର ୩୧, ୨୦୦୨ରେ ଦେଇଥିବା ମଧ୍ୟବର୍ତ୍ତୀ ଆଦେଶ ଏକ ପରାମର୍ଶ ଥିଲା, କିନ୍ତୁ ନିର୍ଦ୍ଦେଶ ନଥିଲା । ନଦୀ ସଂଯୋଗର ପରିଣାମ ଉପରେ ଜନମତକୁ ଦେଖି ସେ ଏ କଥା କହିବାକୁ ବାଧ୍ୟ ହୋଇଛନ୍ତି । ତେଣୁ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ନିଜର ମତ ପରିବର୍ତ୍ତନ କରି ଉଦ୍ଭଟ ପରିକଳ୍ପନାର ପରିଣାମ ପ୍ରତି ଦୃଷ୍ଟି ଦେବା ଏକାନ୍ତ ପ୍ରୟୋଜନ । ରାମ ମନ୍ଦିର ପରି ଗଙ୍ଗାଜଳ ସମସ୍ତ ହିନ୍ଦୁ ପରିବାରକୁ ପହଞ୍ଚାଇବା ପ୍ରଚାର ପାଇଁ ନଦୀ ସଂଯୋଗ ଯୋଜନା ନାମରେ ବିନାଶର ଖେଳ ଖେଳା ନ ଯାଉ । ଏହି ନଦୀ ସଂଯୋଗ ପରିକଳ୍ପନା ହେଲା ବେଳେ ଯେତିକି ହିସାବ କରାଯାଇଛି, ତା'ର ଶତଗୁଣ କ୍ଷତି ହେବ ଏବଂ ତଦ୍ୱାରା ପ୍ରାକୃତିକ ବିପର୍ଯ୍ୟୟକୁ ଡାକି ଅଣାଯିବ ।

## ବିଜେଡି-ବିଜେପିର ନିର୍ବାଚନ ଇସ୍ତାହାର

ଗତ ବିଧାନସଭା ନିର୍ବାଚନ ସମୟରେ ବିଜେଡି-ବିଜେପି ମେଣ୍ଟ ତରଫରୁ କଂଗ୍ରେସ ବିଦେଶୀ କମ୍ପାନୀ ସ୍ୱାର୍ଥରେ ଆଦିବାସୀଙ୍କୁ ତା' ଭିଟାମାଟିରୁ ହଟାଇଛି ବୋଲି ସମ୍ବାଦପତ୍ରରେ ବଡ଼ ବଡ଼ ବିଜ୍ଞାପନ ମାଧ୍ୟମରେ ପ୍ରଚାର ଅଭିଯାନ ଚଳାଇଥିଲେ । ସେଥିରେ

କୁହାଯାଉଥିଲା- ଜଙ୍ଗଲରେ ବସବାସ କରୁଥିବା ମଣିଷମାନଙ୍କର ଆଜି ଜଙ୍ଗଲ ଉପରେ ଅଧିକାର ନାହିଁ, ତାହା ରାଷ୍ଟ୍ରୀୟ ସଂପତ୍ତି ବୋଲି କୁହାଯାଉଛି । ଠକ ବ୍ୟବସାୟୀଙ୍କ ଦ୍ୱାରା ପ୍ରତାରିତ ହୋଇ ସେମାନେ ଜଙ୍ଗଲରୁ ସଂଗ୍ରହ କରୁଥିବା ଝୁଣା, ଲାଖ, ମହୁ, ଅଠା, କେନ୍ଦୁପତ୍ର ଓ ଝାଡୁ ଇତ୍ୟାଦିର ମୂଲ୍ୟ ଠିକ୍ ଭାବେ ପାଉ ନାହାନ୍ତି । ତାର ଜମି ତଳୁ ବାହାରୁଥିବା ଖଣିଜ ସମ୍ପଦ ଆଜି ତାର ନୁହେଁ, ସେ ସବୁ ବଡ଼ ବଡ଼ କମ୍ପାନୀର ଜାଗିରି । ପ୍ରକୃତି କୋଳରେ ବଂଚିଥିବା ମଣିଷମାନଙ୍କୁ ଅଭୟାରଣ୍ୟ ନାଁରେ ବଳକଷି ଜଙ୍ଗଲ ବାହାରକୁ ଫିଙ୍ଗି ଦେଲେ ଆଜି ଆହା ପଦେ କହିବାକୁ କେହି ନାହିଁ । ଆଦିବାସୀକୁ ତାର ଜମି ଜଙ୍ଗଲ ଜାନୁଆର ଓ ଜମିତଳୁ ମିଳୁଥିବା ସଂପଦରୁ ଭାଗ ଦେବା ପାଇଁ ବିଜେଡି-ବିଜେପି ମେଣ୍ଟ ସଂକଳ୍ପବଦ୍ଧ ।

ଏଭଳି ଆଶ୍ୱାସନା ଦେଇ ରାଜ୍ୟର କ୍ଷମତାକୁ ଆସିଥିବା ମେଣ୍ଟ ସରକାର କିନ୍ତୁ ଶେଷ ପର୍ଯ୍ୟନ୍ତ କଲେ କଣ ? କେତେ ଦୂର ବଂଧୁ ହେଲେ ଆଦିବାସୀର ? କେତେ ଦୂର ରକ୍ଷା କଲେ ନିଜର ନିର୍ବାଚନ ପ୍ରତିଶ୍ରୁତି ?

''୨୦୦୦ରୁ ଏ ପର୍ଯ୍ୟନ୍ତ ଦକ୍ଷିଣ ଓଡ଼ିଶାରେ ସମୁଦାୟ ୧୮ ଜଣ ଆଦିବାସୀଙ୍କୁ ଗୁଳି କରି ହତ୍ୟା କରାଯାଇଛି । ସେଥିରୁ ପୋଲିସ ଗୁଳିରେ ମରିଛନ୍ତି ୧୬ ଜଣ । ଗଜପତି ଜିଲ୍ଲାର ମାନ୍ଦ୍ରାବାଜୁରେ ୮ ଜଣ, କାଶୀପୁରର ମାଇକଞ୍ଚରେ ୩ ଜଣ ଓ ନବରଙ୍ଗପୁରର ରାଇଘରରେ ୫ ଜଣଙ୍କୁ ପୋଲିସ ଗୁଳି କରି ହତ୍ୟା କରିଥିବା ବେଳେ ରାଇଘରରେ ୨ ଜଣ ଆଦିବାସୀ ସାହୁକାରଙ୍କ ଦ୍ୱାରା ହତ୍ୟାର ଶିକାର ହୋଇଛନ୍ତି । ସେଇପରି ଏଇ ସମୟ ଭିତରେ ପୋଲିସର ନକ୍ସାଲ ଅଭିଯୋଗ ତଥା ନକ୍ସାଲ ସହ ସଂଘର୍ଷ ନାମରେ କେତେ ଆଦିବାସୀଙ୍କୁ ହତ୍ୟା କରାଯାଇଛି ତାର ସଠିକ ହିସାବ ଦେବା ସମ୍ଭବ ନୁହେଁ ।ତେବେ ସେମାନଙ୍କ ସଂଖ୍ୟା ବେଶ୍ କିଛି ଏତେବେଳେ ୧୯୯୪ ମସିହାରେ ନାଗପୁର ଠାରେ ଆଦିବାସୀ ଓ ପୋଲିସ ମଧ୍ୟରେ ହୋଇଥିବା ଐତିହାସିକ ସଂଘର୍ଷର କଥା ମନେ ପଡୁଛି । ସେଥିରେ ମହିଳା ଓ ଶିଶୁମାନଙ୍କ ସମେତ ୧୧୧ ଜଣଙ୍କର ମୃତ୍ୟୁ ହୋଇଥିଲା । ସରକାର ଏଇ ଭାବରେ ଆଦିବାସୀଙ୍କୁ ହତ୍ୟା କରିବା ପରେ କିନ୍ତୁ କହୁଛନ୍ତି- ନକ୍ସାଲ ହିଂସା କରୁଛି; ଆଦିବାସୀ ହିଂସା କରୁଛି । ଏହା ହାସ୍ୟାସ୍ପଦ କଥା ନୁହେଁ କି ? ବରଂ ଏହା ସତ୍ୟ ଯେ, ଆଦିବାସୀ ହିଂସାର ଜବାବରେ ପ୍ରତିହିଂସା କରିଛି । ତାର ଆନ୍ଦୋଳନ ଓ ସଂଘର୍ଷ ଜାରି ରଖିଛି ।''

ବର୍ତ୍ତମାନ ପ୍ରଶ୍ନ ହେଉଛି, ସରକାର, ଅମଲା ଫଇଲା ଓ ପୋଲିସ ବାହିନୀ କଣ ଭାବୁଛନ୍ତି- କାଳ କାଳ ଧରି ତାଙ୍କ ମର୍ଜି ମୁତାବକ ଆଦିବାସୀ ବିଚରାର ଜୀବନ ଚାଲିଥିବ ? ସ୍ୱାଧୀନତା ଓ ଗଣତନ୍ତ୍ର ନାଁରେ ଇମିତି ନରହତ୍ୟା, ଗୃହଦାହ, ପ୍ରତାରଣା ମୂଳକ ପ୍ରତିଶ୍ରୁତି, ଦୁର୍ନୀତି, ଅତ୍ୟାଚାର ଓ ଉଚ୍ଛେଦ ତା' ଉପରେ ବହି ଯାଉଥିବ, ଆଉ ସେ ହାତ ଗୋଡ଼

କୁଣେଇ ଚୁପ୍ ଚାପ୍ ଦାନ୍ତ କାମୁଡ଼ି ସେସବୁ ସହି ଚାଲିଥିବ ? ଆଜି ଏହା ଯଦି ରାଷ୍ଟ୍ରର ଉଦ୍ଦେଶ୍ୟ, ତେବେ ସେ ଛତ୍ର ତଳେ ବନବାସୀ ଛିଡ଼ା ହେବ କାହିଁକି ?

## ସ୍ୱାଧୀନତାର ଭୂମି

ସ୍ୱାଧୀନତାର ଜନ୍ମ ଲଗ୍ନରୁ ଜଂଗଲ ଅଂଚଳରେ ମୁନାଫା ଲୁଟିବା ପାଇଁ କେଉଁ ମାନେ ତତ୍ପର ରହିଛନ୍ତି ? ସେମାନଙ୍କର କାର୍ଯ୍ୟକଳାପ କଣ ? ଭାରତର ବିସ୍ତୃତ ଜଙ୍ଗଲ ଭିତରେ ଶିଳ୍ପପତି ମାନଙ୍କ ଖଣି ଖାଦାନ, କଳ କାରଖାନା ସବୁ ରହିଥିବାରୁ ସଂପୃକ୍ତ ଅଂଚଳରୁ ସରକାର ଆଦିବାସୀ ମାନଙ୍କୁ ହଟାଇ ଦେବାକୁ ଚାହାନ୍ତି । ପୁଣି ଆଜିକା ପରିପ୍ରେକ୍ଷୀରେ ଭାରତ ଉପକୂଳରେ ଭିଡ଼ ଜମାଇଥିବା ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କ ସ୍ୱାର୍ଥରେ ମଧ ଆଦିବାସୀଙ୍କୁ ନ ହଟେଇଲେ ନଚଳେ । କାରଣ ଆଦିବାସୀ ଅଂଚଳ ଭିତରେ ରହିଛି ଅରଣ୍ୟ ପର୍ବତ, ମାଟି, ପଥର, ଖଣିଜ ସମ୍ପଦ, ନଦୀ ଝୁଲା ଓ ଜମି ସହ ବହୁ ମୂଲ୍ୟବାନ ବିପଣି । ରାଷ୍ଟ୍ର ଭଲ ଭାବେ ଜାଣେ ଆଦିବାସୀ ଏକ ଚିର ବିଦ୍ରୋହୀ ସତ୍ତା । ଏ ଦୁର୍ଦ୍ଧର୍ଷ ଜାତିର ଭିଟା ଉଚ୍ଛନ୍ନ ନ କଲେ ସେମାନେ କାଳ ହେବେ । ଦେଶୀ ଓ ବିଦେଶୀ ପ୍ରଭୁଙ୍କ ପାଇଁ କିଛି କରାଇ ଦେବେନି । ସ୍ୱାଧୀନତା ପରେ ଏହାର ଧାରାବାହିକ ପ୍ରମାଣ ସେମାନେ ପାଇଛନ୍ତି ବିଭିନ୍ନ ଅସନ୍ତୋଷ, ବିକ୍ଷୋଭ, ଆନ୍ଦୋଳନ, ବିଦ୍ରୋହ ଓ ବିପ୍ଲବାତ୍ମକ କାର୍ଯ୍ୟ ମାଧ୍ୟମରେ । ଉଦ୍ଦାମ ଆଦିବାସୀ ସତ୍ତା ଆଜି ଭାରତର କୋଣେ ଅନୁକୋଣେ । ସେମାନେ ସ୍ୱାଧୀନତା ଠାରୁ ଜୀବନର ରାହା ନ ପାଇ ଧୀରେ ଧୀରେ ସଶସ୍ତ୍ର ବିପ୍ଲବର ପଥରେ ଆଗେଇ ଆସିବାକୁ ବାଧ ହୋଇଛନ୍ତି । ସମୟ ସହିତ ଭାରତର ବିସ୍ତୃତ ଆଦିବାସୀ ଅଂଚଳରେ ଦ୍ରୁତ ଗତିରେ ନକ୍ସାଲ ଆନ୍ଦୋଳନ ଦାନା ବାନ୍ଧୁଛି ଓ ବିକାଶ ଲାଭ କରୁଛି । ପୁଣି ଆଦିବାସୀର ବିପ୍ଲବୀ ଗଣ ସଂଗଠନ ଗୁଡ଼ିକର ପ୍ରତିରୋଧ ଆନ୍ଦୋଳନ ମଧ ଆଜି ଶାସକ ଶ୍ରେଣୀକୁ ବହୁ ଭାବେ ସନ୍ତ୍ରସ୍ତ କରିବାରେ ଲାଗିଛି । ସରକାର ଯଥାଯଥ ଭାବେ ସେମାନଙ୍କ ସମସ୍ୟା ସମାଧାନ କରି ପାରିଥିଲେ ଆଜି ଏଭଳି ହୋଇଥାନ୍ତା କି ? ଭାବିଲେ, ସ୍ୱାଧୀନତା ଆଦିବାସୀଙ୍କୁ କିଛି ହେଲେ ଦେଇ ନାହିଁ, ବରଂ ଅନେକ କିଛି ଛଡ଼େଇ ନେଇଛି, ଅନେକ ଭାବେ ପ୍ରତାରିତ କରିଛି ସେମାନଙ୍କୁ । ଆଜି ଆଦିବାସୀ ପାଇଁ ଲଢ଼େଇ ବ୍ୟତୀତ ଭିନ୍ନ କିଛି ପଥ ଖୋଲା ଅଛି କି ? ସେ ଲଢୁଛି ବୋଲି ସେ ସରକାରଙ୍କର ପ୍ରଧାନ ଶତ୍ରୁ । ସେମାନଙ୍କୁ ଉଚ୍ଛେଦ ନ କଲେ ଜଙ୍ଗଲ ଅଂଚଳରେ ଯେକୌଣସି ଯୋଜନା ଭୟଙ୍କର ଭାବେ ପ୍ରତିବନ୍ଧକର ସମ୍ମୁଖୀନ ହେବ । ଏଥିରେ ନିଶ୍ଚିତ ହେବା ପରେ ରାଷ୍ଟ୍ରଶକ୍ତି ଓ ଆଦିବାସୀ ଆଜି ମୁହାଁମୁହିଁ । ସେମାନଙ୍କ ପାଇଁ ସ୍ୱାଧୀନତାର ଭୂମି କହିଲେ ଆଜି ଲଢ଼େଇକୁ ହିଁ ବୁଝାଏ, ଭିନ୍ନ କିଛି ନୁହେଁ । ଏଠାରେ ରାଷ୍ଟ୍ର ଆକ୍ରମଣକାରୀ, ଆଉ ସର୍ବନିମ୍ନ ଭାବେ ତିଷ୍ଠି ରହିବା ପାଇଁ ଅରଣ୍ୟଚାରୀ ଆପଣା କର୍ତ୍ତବ୍ୟ କରୁଛି ମାତ୍ର ।

## ନକ୍ସଲ ସମସ୍ୟା ପାଇଁ ସରକାର ଦାୟୀ

ଜାତୀୟ ଅନୁସୂଚିତ ଉପଜାତି କମିଶନର ଅଧକ୍ଷ ଦିଲ୍ଲୀପ ସିଂହ ଭୂରିଆ ଓଡ଼ିଶା ଗସ୍ତ ଶେଷ କରି ଦିଲ୍ଲୀ ଫେରିଯିବା ପୂର୍ବରୁ ତା ୨.୫.୦୩ରେ ଭୁବନେଶ୍ୱର ଠାରେ ଏକ ସାମ୍ବାଦିକ ସମ୍ମିଳନୀରେ କହିଛନ୍ତି- ଆଦିବାସୀ ମାନଙ୍କ ରାଜନୈତିକ, ସାମାଜିକ ଓ ଆର୍ଥିକ ଉନ୍ନତି ଦିଗରେ ସରକାରଙ୍କର ଆନ୍ତରିକତା ନଥିବାରୁ ଓଡ଼ିଶାରେ ନକ୍ସଲ ଉପଦ୍ରବ ଭଳି ଅଭାବନୀୟ ସମସ୍ୟା ସୃଷ୍ଟି ହୋଇଛି । ତେଣୁ ଆଦିବାସୀ ମାନଙ୍କ ମନରୁ ବିଚ୍ଛିନ୍ନତା ମନୋଭାବ ଦୂର କରି ସେମାନଙ୍କୁ ମୁଖ୍ୟସ୍ରୋତରେ ସାମିଲ କରିବା ଲାଗି ସରକାର ଯଦି ସ୍ୱତନ୍ତ୍ର ଏଜେଣ୍ଡା କାର୍ଯ୍ୟକାରୀ ନ କରନ୍ତି, ତେବେ ପରିସ୍ଥିତି ହାତଛଡ଼ା ହୋଇଯିବ ବୋଲି ସେ ସତର୍କ କରାଇ ଦେଇଥିଲେ । ସେ ପୁଣି କହିଥିଲେ- ସ୍ୱାଧୀନତାର ୫୫ ବର୍ଷ ପରେ ମଧ ଆଦିବାସୀ ମାନଙ୍କୁ ସାମାଜିକ ମୁଖ୍ୟ ସ୍ରୋତରେ ସାମିଲ କରାଯାଇ ପାରି ନାହିଁ । ସେମାନଙ୍କର ସର୍ବନିମ୍ନ ସମସ୍ୟା ବୁଝିବାକୁ ଶାସନ କଳ ତତ୍ପର ନୁହେଁ । କ୍ରମାଗତ ସରକାରୀ ଉଦାସୀନତା ଯୋଗୁଁ ଓଡ଼ିଶାରେ ଏକଦା ବସବାସ କରୁଥିବା ବରୁଆ ଆଦିବାସୀ ସଂପ୍ରଦାୟ ସଂପୂର୍ଣ୍ଣ ଲୋପ ପାଇଥିବା ବେଳେ ସୁନ୍ଦରଗଡ଼ (ମୟୂରଭଂଜରେ ମଧ) ଜିଲ୍ଲାରେ ଅବକ୍ଷୟମୁଖୀ ଖଡ଼ିଆ ସଂପ୍ରଦାୟ ମଧ ଲୋପ ପାଇବ ବୋଲି ସେ ଅଭିଯୋଗ କରିଥିଲେ । (ନିକଟରେ ପ୍ରକାଶିତ ଏକ ସମ୍ବାଦ ଅନୁଯାୟୀ ୧୯୮୧ ମସିହାରେ ଜୁଆଙ୍ଗ ଜନଜାତିର ସଂଖ୍ୟା ୨୦ ହଜାରରୁ କମ୍ ଥିଲା ବେଳେ ୧୯୯୧ ଜନଗଣନା ଅନୁସାରେ ଏମାନଙ୍କ ସଂଖ୍ୟା ୧୭ ହଜାରରୁ ହ୍ରାସ ପାଇଛି । ଜୁଆଙ୍ଗ ପିଲାମାନଙ୍କର ମୃତ୍ୟୁ ହାର ଅଧିକ ହୋଇଥିବାରୁ ଏହି ଜନଜାତି ଲୋପ ପାଇଯିବାର ଆଶଙ୍କା ଦେଖା ଦେଇଛି ।) ଶ୍ରୀ ଭୂରିଆ ଏ କଥା ମଧ କହିଥିଲେ- ଓଡ଼ିଶାର ଆଦିବାସୀ ଅଂଚଳ ମାନଙ୍କରେ ହିଁ ବହୁ ମୂଲ୍ୟ ଖଣିଜ ସଂପଦ ଗଚ୍ଛିତ ରହିଛି । ରାଜ୍ୟର ବିକାଶ ପାଇଁ ଖଣିଜ ସଂପଦର ବିନିଯୋଗକୁ ସରକାର ଅଗ୍ରାଧିକାର ଦେଉଥିଲା ବେଳେ ସେଇ ଅଂଚଳରେ ବସବାସ କରୁଥିବା ଉପେକ୍ଷିତ ଆଦିବାସୀମାନଙ୍କ ଉନ୍ନତି ଲାଗି ଆଦୌ ଗୁରୁତ୍ୱ ଦିଆଯାଉ ନାହିଁ । ଗ୍ରାମସଭା ପ୍ରହସନରେ ପରିଣତ ହୋଇଛି ବୋଲି ମଧ ସେ ଅଭିଯୋଗ କରିଥିଲେ ।

## ଓଡ଼ିଶାରେ ଖଣିଜ ପ୍ରଦୂଷଣ

ଜଣେ ପରିବେଶବିତ୍ ସାହିଦ୍ ଉମର ''ଓଡ଼ିଶାରେ ଆବିଷାକ୍ତ (ଟକ୍ସିକ୍) ଖଣିଜ ପ୍ରଦୂଷଣ'' ଶୀର୍ଷକ ଏକ ନିବନ୍ଧରେ ଲେଖିଛନ୍ତି- ଆମ ରାଜ୍ୟରେ ପ୍ରାକୃତିକ ବିପର୍ଯ୍ୟୟ ପ୍ରଶମନ ନିମନ୍ତେ ମୁଖ୍ୟତଃ ବାତ୍ୟା ଓ ବନ୍ୟାର ମୁକାବିଲା ପ୍ରସ୍ତୁତିକୁ ପ୍ରାଧାନ୍ୟ ଦିଆଯାଉଛି । ମରୁଡ଼ିର ମୁକାବିଲା ପାଇଁ ବିଭିନ୍ନ ଜଳସେଚନ ଓ ଜଳଛାୟା ଯୋଜନା କାର୍ଯ୍ୟକାରୀ

କରାଯାଉଛି । କିନ୍ତୁ ଅନ୍ୟ ପକ୍ଷରେ ଏ ଯାବତ୍ ଏଭଳି ଏକ ଦିଗ ଅବହେଳିତ ହୋଇ ରହିଯାଇଛି, ଯାହାର କୁପ୍ରଭାବ ପ୍ରାକୃତିକ ବିପର୍ଯ୍ୟୟ ତୁଳନାରେ କୌଣସି ଗୁଣରେ କମ୍ ନୁହେଁ । ଏହା ହେଉଛି ଆମ ପରିବେଶର ଟକ୍ସିକ୍ ବା ଆବିଷାକ୍ତ ଖଣିଜ ଉପାଦାନରେ ପ୍ରଦୂଷଣ । ଉଲ୍ଲେଖନୀୟ ଯେ, ବିଭିନ୍ନ ଆବିଷାକ୍ତ ଖଣିଜର ବ୍ୟାପକ ଖନନ, ଉତ୍ତୋଳନ, ବିଶୋଧନ ଓ ଉପଯୋଗ ଏବଂ କୃଷି କ୍ଷେତ୍ରରେ ରାସାୟନିକ ସାର ଓ କୀଟ ନାଶକ ଔଷଧର ପ୍ରୟୋଗ ତଥା ଖଣିଜ ଭିତ୍ତିକ ଶିଳ୍ପ କାରଖାନାରୁ ନିର୍ଗତ ବିଷାକ୍ତ ରାସାୟନିକ ଉପାଦାନ ଗୁଡ଼ିକ ସ୍ଥାନୀୟ ମୃତ୍ତିକା ସହ ଭୂପୃଷ୍ଠୀୟ ଓ ଭୂତଳ ଜଳକୁ ଅହେତୁକ ଭାବରେ ପ୍ରଦୂଷିତ କରି ସ୍ଥାନୀୟ ଅଧିବାସୀ, ଜୀବଜନ୍ତୁ ଓ ବୃକ୍ଷଲତା ଉପରେ ମରଣାନ୍ତକ କୁପ୍ରଭାବ ପକାଉଅଛି ।

ସଭ୍ୟତାର ବିକାଶ ସହିତ ଖଣିଜ ଓ ଶକ୍ତିର ବ୍ୟାପକ ଉପଯୋଗ ଫଳରେ ସଂପ୍ରତି ଏହାର କୁପ୍ରଭାବ ବେଶ୍ ପରିଲକ୍ଷିତ ହେବାରେ ଲାଗିଛି । ବ୍ୟାପକ ଖଣିଜ ଖନନ ଦ୍ୱାରା ପରିବେଶରେ ବିଶୃଙ୍ଖଳା ଦେଖା ଯିବା ସ୍ୱାଭାବିକ । ଏହାଦ୍ୱାରା ପ୍ରାକୃତିକ ଭାରସାମ୍ୟ ନଷ୍ଟ ହେବା ସଂଗେ ସଂଗେ ପରିବେଶ ବିପର୍ଯ୍ୟୟ ଘଟିଥାଏ ଏବଂ ଲୋକଙ୍କ ସାମାଜିକ ଓ ଆର୍ଥିକ ଅବସ୍ଥା ମଧ୍ୟ ପ୍ରଭାବିତ ହୋଇଥାଏ । ଖଣିଜ ଖନନ ଯୋଗୁ ହିଁ ଭୂପୃଷ୍ଠୀୟ ଜଳରେ ଆବିଷାକ୍ତ ଧାତବର ମିଶ୍ରଣ ତ୍ୱରାନ୍ୱିତ ହୁଏ । ଏହା ବ୍ୟତୀତ ସୂକ୍ଷ୍ମ ଖଣିଜ କଣିକା ବାୟୁମଣ୍ଡଳକୁ ପ୍ରଦୂଷିତ କରିଥାଏ । ଖଣିଜ ଖନନ ବେଳେ ପ୍ରଚୁର ପରିମାଣରେ ଜଳ ନିଷ୍କାସନ କରାଯାଉଥିବାରୁ ଏହି ଜଳ କ୍ରମେ ପାନୀୟ କିମ୍ବା କୃଷି ଉପଯୋଗୀ ହୋଇ ପାରେ ନାହିଁ, କାରଣ ଏଥିରେ ବିଷାକ୍ତ ଦ୍ରବ୍ୟର ପରିମାଣ ବୃଦ୍ଧି ଘଟିଥାଏ । ଖଣିରୁ ନିର୍ଗତ ଜଳଧାର ଦ୍ୱାରା ଭୂତଳ ଜଳରେ ଅମ୍ଳତ୍ୱ ବୃଦ୍ଧି ଘଟିବା ସଂଗେ ସଂଗେ ମୃତ୍ତିକା ଓ ଜଳରୁ ବହୁ ପ୍ରକାରର ବିରଳ ଉପାଦାନ ଦ୍ରୁତ ବେଗରେ ବିଚ୍ଛିନ୍ନ ହୋଇ ଚାଲିଥାଏ । ଉଲ୍ଲେଖଯୋଗ୍ୟ ଯେ, ଖଣି ଗୁଡ଼ିକରେ ପ୍ରାୟତଃ ନିମ୍ନ ମାନର ଖଣିଜ ପଦାର୍ଥକୁ ବର୍ଜ୍ୟବସ୍ତୁ ରୂପେ ଗଦା କରି ପକାଇ ଦିଆଯାଏ । ଏଥିରେ ଦସ୍ତା, ତମ୍ବା, ସେଲେନିୟମ, କ୍ରୋମିଅମ, ନିକେଲ, ଆର୍ସେନିକ୍, ପାରଦ ଓ କ୍ୟାଡମିୟମ ପ୍ରଭୃତି ବିରଳ ଉପାଦାନ ରହିଥାଏ । ଏଗୁଡ଼ିକ ଅଣୁଜୈବିକ ପ୍ରକ୍ରିୟା ଦ୍ୱାରା ଭୂତଳ ଜଳରେ ପ୍ରବେଶ କରିଥାଏ ।

ଉଲ୍ଲେଖନୀୟ ଯେ, ଶିଳା ଅବକ୍ଷୟରୁ ମୃତ୍ତିକାର ସୃଷ୍ଟି । ଏଣୁ ମୃତ୍ତିକାର ପ୍ରକାର ଶିଳାର ରାସାୟନିକ ସମଷ୍ଟି ଉପରେ ନିର୍ଭରଶୀଳ । ଯେତେବେଳେ ଶିଳାରେ କୌଣସି ବିଷାକ୍ତ ଖଣିଜ ଉପାଦାନର ପରିମାଣ ଅଧିକ ଥାଏ, ତାହା ଅନ୍ତଃ ପ୍ରକ୍ଷାଳନ ପଦ୍ଧତି ଦ୍ୱାରା ମୃତ୍ତିକା ମଧ୍ୟକୁ ପ୍ରବେଶ କରି ସ୍ୱାସ୍ଥ୍ୟଗତ ବିଭିନ୍ନ ସମସ୍ୟା ସୃଷ୍ଟି କରିଥାଏ । ବିଷାକ୍ତ ପଦାର୍ଥ ଯୋଗୁଁ ପ୍ରଦୂଷିତ ମୃତ୍ତିକାରେ ଶସ୍ୟ ଉତ୍ପାଦନ କରାଗଲେ ସେଥିରେ ମଧ୍ୟ ବିଷାକ୍ତ ପଦାର୍ଥର ପ୍ରଭାବ ରହିଥାଏ । ଏହି ତଥ୍ୟରୁ ଜଣା ପଡ଼େ ଯେ, ଭୂତାତ୍ତ୍ୱିକ ଉତ୍ପାଦନ ହିଁ ପରିବେଶକୁ ପ୍ରଭାବିତ କରିଥାଏ ।

ଆମ ଓଡ଼ିଶାର ଯାଜପୁର ଜିଲ୍ଲାର ସୁକିନ୍ଦା ଓ କେନ୍ଦୁଝର ଜିଲ୍ଲାର ବଉଳା-ନୂଆସାହି ଅଂଚଳରେ ବହୁ ପରିମାଣରେ କ୍ରୋମାଇଟ୍, ନିକେଲ, କୋବାଲଟ୍ ଓ ପ୍ଲାଟିନମ୍ ଧାତୁ ପଥର ରହିଥିବା ବେଳେ ସୁନ୍ଦରଗଡ଼ ଜିଲ୍ଲାର ସର୍ଗିପାଲି ଓ ବଲାଙ୍ଗୀର ଜିଲ୍ଲାର ସଇଁତଳା ଠାରେ ସୀସା ଓ ଦସ୍ତା ପଥର; ମୟୂରଭଂଜ ଜିଲ୍ଲାର କେଶପୁର ଠାରେ ତମ୍ବା; ଦେବଗଡ଼ ଜିଲ୍ଲାର ଅଡ଼ସ ଠାରେ ସଲ୍‌ଫାଇଡ୍ ଅବକ୍ଷେପ; ମୟୂରଭଂଜ, କେନ୍ଦୁଝର, ସୁନ୍ଦରଗଡ଼ ଓ ମାଲକାନଗିରି ଜିଲ୍ଲାରେ ସୁନା ଅବକ୍ଷେପ; ସୁନ୍ଦରଗଡ଼, କଳାହାଣ୍ଡି ଓ ମୟୂରଭଂଜ ଜିଲ୍ଲାରେ କ୍ୱାର୍ଜ ଓ ସିଲିକା ପଥର; ମାଲକାନଗିରି ଓ ମୟୂରଭଂଜ ଜିଲ୍ଲାରେ ଆଜ୍‌ବେଷ୍ଟସ୍; କେନ୍ଦୁଝର, ସୁନ୍ଦରଗଡ଼, ବଲାଙ୍ଗିର, କଳାହାଣ୍ଡି ଓ ରାୟଗଡ଼ା ଜିଲ୍ଲାରେ ଲୁହା; ଅନୁଗୋଳ, ଝାରସୁଗୁଡ଼ା ଓ ସୁନ୍ଦରଗଡ଼ ଜିଲ୍ଲା ଅନ୍ତର୍ଗତ ତାଳଚେର ଓ ଇବ୍ ଉପତ୍ୟକାରେ କୋଇଲା ଖଣି ଓ ରାଜ୍ୟର ପ୍ରାୟ ସମସ୍ତ ଜିଲ୍ଲାରେ ଗ୍ରାନାଇଡ୍ ପଥର ଖଣିମାନ ରହିଛି । ଏହା ବ୍ୟତୀତ ଖୋର୍ଦ୍ଧା, ପୁରୀ, ନୟାଗଡ଼, କୋରାପୁଟ, କନ୍ଧମାଳ, ଅନୁଗୋଳ, ବଲାଙ୍ଗିର ଓ ନୂଆପଡ଼ା ଜିଲ୍ଲାରେ ବ୍ୟାପକ ଫ୍ଲୋରାଇଡ୍ ପ୍ରଦୂଷଣ ଦ୍ରୁତ ବେଗରେ ବୃଦ୍ଧି ପାଇଛି । ସେହିପରି ପୁରୀ ଜିଲ୍ଲାରେ ମଧ ଫସ୍‌ଫରସ୍ ପ୍ରଦୂଷଣ ସୃଷ୍ଟି ହୋଇଥିବା ଜଣାପଡ଼ିଛି । ରାଜ୍ୟର ଖଣି ଓ ଖଣିଜ ଶିଳ୍ପର ବହୁଳତା ହେତୁ ପରିବେଶ ଉପରେ ଏହାର ପ୍ରଭାବ ପଡ଼ିବା ସ୍ୱାଭାବିକ ।''

ନିକଟରେ ଦୁଇଟି ଭିନ୍ନ ଭିନ୍ନ ସମ୍ବାଦରୁ ଜଣାପଡ଼ିଛି- ତେଲକୋଇରେ ବ୍ୟାପକ ଭାବେ ଜଳରେ ଖଣିଜ ଗୁଣ୍ଡ ମିଶୁ ଥିବାରୁ ବିଭିନ୍ନ ଜଣାଅଜଣା ରୋଗ ସବୁ ଦେଖା ଦେଇଛି । ଲୋକମାନେ ଅସୁସ୍ଥ ହୋଇ ପଡୁଛନ୍ତି । ସେଥିପାଇଁ ନିକଟରେ ଖଣି ଖାଦାନ ବନ୍ଦ ଦାବିରେ ଗଣ ଆନ୍ଦୋଳନ ଦେଖା ଦେଇଥିଲା । ସେଇପରି ହୀରାକୁଦରେ ଭଣ୍ଡଲର ପ୍ରଦୂଷଣ ବିରୁଦ୍ଧରେ ଜଳ ଆନ୍ଦୋଳନ ମଥା ଟେକିଛି । ଏଇ ପ୍ରଦୂଷଣ ଫଳରେ ଆଖପାଖ ଗ୍ରାମାଞ୍ଚଳରେ ଫସଲର କ୍ଷୟକ୍ଷତି ସହିତ ଭୟାବହ ସ୍ୱାସ୍ଥ୍ୟଗତ ସମସ୍ୟା ସବୁ ଦେଖା ଦେଇଛି । ସିମିତି ଦୈତାରୀ ଖଣି, ମହାନଦୀ କୋଇଲା ଖଣି, ସମଲେଶ୍ୱରୀ ଖୋଲା ମୁହଁ କୋଇଲା ଖଣି ଓ ତଲାବିରା-୨ କୋଇଲା ଖଣି ନେଇ ବହୁମୁଖୀ ସମସ୍ୟା ଦେଖା ଦେଇଛି ।

## ଜଣେ ଶ୍ରମିକ ନେତା କହନ୍ତି

ମାୟାଧର ନାୟକ ଜଣେ ଶ୍ରମିକ ନେତା ଭାବେ ଓଡ଼ିଶାରେ ସୁପରିଚିତ । ସେ କହନ୍ତି- ଆଜି ଓଡ଼ିଶାର ସୁକିନ୍ଦା ଖଣି ଅଂଚଳ, ଦଇତାରୀ ପାହାଡ଼ି ଅଂଚଳ ଓ ଜଙ୍ଗଲ ଭିତରେ ଟିସ୍‌କୋ, ଜିନ୍ଦଲ, ମିତର, ଫାକର, ଇମ୍ଫା, ମିଶ୍ରିଲାଇ, ଓଏମ୍‌ସି, ଆଇଡିସି ସହିତ କେନ୍ଦୁଝର ବଡ଼ବିଲ୍-ଯୋଡ଼ା ପ୍ରଭୃତି ସ୍ଥାନରେ ଖଣି ଖାଦାନ ଓ କାରଖାନା ଏବଂ ସୁନ୍ଦରଗଡ଼, କୋରାପୁଟ

ଅଂଚଳରେ ସିଂଘାଣିଆ ପ୍ରମୁଖ ଶିଳ୍ପପତିମାନଙ୍କ କାରଖାନା ପାଇଁ ବ୍ୟାପକ ଜଙ୍ଗଲ କଟାଯାଇ ଯେଉଁ ରକ୍ତିପିପାସୁ ମାଲିକ ମାନଙ୍କୁ ସମସ୍ତ ସରକାରୀ ସୁଯୋଗ ସୁବିଧା ସିଆଯାଇଛି, ସେଇ ମାଲିକ ମାନେ ଶସ୍ତାଶ୍ରମ, ଶସ୍ତା ଜମି, ଶସ୍ତା ଜଳ, ଶସ୍ତା ନେତା ଓ ଶସ୍ତା ସରକାର ପାଇ କୋଟି କୋଟି ଟଙ୍କା ମୁନାଫା ଲୁଟି ନେଇ ଯାଉଛନ୍ତି । ସେମାନଙ୍କ ଖଣି ଖାଦାନରୁ ଧୂଳି ଓ ମଇଳା ପାଣି ଖାଇ ମଣିଷ ଜୀବଜନ୍ତୁ ରୋଗାକ୍ରାନ୍ତ ହୋଇ ମରୁଛନ୍ତି । ଜମିରେ ଖଣିଜ ଗୁଣ୍ଡ ପଡ଼ି ଫସଲ ନଷ୍ଟ ହେଉଛି, ପାହାଡ଼ି ଝରଣା ଶୁଖି ଯାଇ ଗାଁ ଚାଷ ଜମିକୁ ଜଳ ନିଅଣ୍ଟ ହେଉଛି । ପିଇବା ପାଣି ସାତ ସପନ ହୋଇଗଲାଣି । ସୁକିନ୍ଦା ଉପତ୍ୟକାର କ୍ରୋମାଇଟ୍ ଖଣି ଏସିଆ ମହାଦେଶର ସବୁଠୁଁ ଗହିରିଆ ସ୍ଥାନ । ମହାଗିରି ପର୍ବତରୁ ବହି ଆସୁଥିବା ଝର ଏବେ ଶୁଖି ଗଲାଣି । କ୍ରୋମାଇଟ୍ ଖଣି ଗୁଡ଼ିକ ଝରଣାରୁ ପାଣି ଶୋଷି ନେଇ ଖଣିରେ ମହାପୋଖରୀ ସୃଷ୍ଟି କରିଛନ୍ତି । ଖଣି ମାଲିକମାନେ ସେଇ ଖଣି ଗାଡ଼ରୁ ମଇଳା ପାଣି ନେଇ କେନ୍ଦୁଝର, ଯାଜପୁର, ଢେଙ୍କାନାଳ ଜିଲ୍ଲାର ଡମଶାଳା ନଈରେ ଛାଡ଼ି ଦେଇ ମଣିଷ ଜୀବନକୁ କିଲ୍‌ବିଲ୍ କରି ମାରୁଛନ୍ତି । ସେମାନଙ୍କର ଏହି ମଣିଷ ମରା ଜଘନ୍ୟ କାର୍ଯ୍ୟ ପାଇଁ ଦଣ୍ଡ ନାହିଁ । ଓଲଟି ନେତା ମନ୍ତ୍ରୀ ଅଫିସର୍ ସରକାର ସେମାନଙ୍କୁ ସଲାମ କରୁଛନ୍ତି । ଅନୁଗୁଳ ଅଂଚଳର କଳକାରଖାନା ଏବଂ ତାଳଚେର କୋଇଲା ଖଣି ଅଂଚଳର ମଇଲା ସେ ଅଂଚଳର ପରିବେଶକୁ ସଂପୂର୍ଣ୍ଣ ଦୂଷିତ କରି ସାରିଲାଣି । ସେଥିପ୍ରତି କାହାରି ଧ୍ୟାନ ନାହିଁ । ଓଡ଼ିଶାରେ ପ୍ରାୟ ୯୦ ଭାଗ ଅଂଚଳର କଳ କାରଖାନା ଖଣି ଖାଦାନ ଜଙ୍ଗଲ ଅଂଚଳରୁ ଗଛ କଟା ଯାଇ ପ୍ରତିଷ୍ଠା କରାଯାଇଛି । ଯେଉଁ ମାଲିକ ମାନେ ଯେତେ ଜଙ୍ଗଲ ଅଂଚଳ ଦଖଲ କରି ଗଛକାଟି କଳ କାରଖାନା ଖଣି ଖାଦାନ କରିଛନ୍ତି, ସେମାନେ ତା' ବଦଳରେ ଅନ୍ୟ ସ୍ଥାନରେ ଜଙ୍ଗଲ ସୃଷ୍ଟି କରିବା ପାଇଁ ଚୁକ୍ତିବଦ୍ଧ । କିନ୍ତୁ ସରକାରୀ ଆଇନ ଉଲ୍ଲଂଘନ କରି ସେମାନେ ବର୍ଷ ବର୍ଷ ଧରି ବାରମ୍ବାର ଚୁକ୍ତି ଭଙ୍ଗ କଲେ ମଧ୍ୟ ତାଙ୍କୁ ଶାସ୍ତି ନାହିଁ । ଏହାଦ୍ୱାରା ପରିବେଶ ବିଷାକ୍ତ ଦୂଷିତ ହେଉଛି ।

## ଏକ ଉଦାହରଣ

"ଆଧୁନିକ ଶିଳ୍ପ ସଭ୍ୟତା ନଦୀ ଝରଣା ଅରଣ୍ୟ ତଥା ପାହାଡ଼ ପର୍ବତ ଗୁଡ଼ିକୁ ଧ୍ୱଂସ କରି ଚାଲିଛି । ସେ ସବୁ କାର୍ଯ୍ୟ ଭାରତର ଜନସାଧାରଣଙ୍କ ଆବଶ୍ୟକତା ପୂରଣ ପାଇଁ ଉଦ୍ଦିଷ୍ଟ ନୁହେଁ । ଯେଉଁ ଶିଳ୍ପ ସମୃଦ୍ଧ ଦେଶ ମାନଙ୍କର କଂଚାମାଲ ଚାହିଦା ମେଣ୍ଟାଇବା ପାଇଁ ଆମ ଦେଶର ବକ୍ସାଇଟ୍ ଖନନ କରାଯାଉଛି, ସେଇ ଦେଶମାନେ ନିଜ ନିଜର ଆଲୁମିନିୟମ ଶିଳ୍ପ ଗୁଡ଼ିକୁ ପରିବେଶଗତ କାରଣରୁ ବନ୍ଦ କରିବାରେ ଲାଗିଛନ୍ତି । ଜାପାନ ତାର ନିଜ ଦେଶରେ ଆଲୁମିନିୟମ ଉତ୍ପାଦନ କ୍ଷମତାକୁ ବର୍ଷକୁ ୧୨ ଲକ୍ଷ ଟନ୍‌ରୁ ୧ ଲକ୍ଷ

୪୦ ହଜାର ଟନକୁ ହ୍ରାସ କରି ସାରିଛି । ସେ ନିଜ କଳକାରଖାନାର ଆବଶ୍ୟକତାର ୯୦ ପ୍ରତିଶତ ଆମଦାନୀ କରିବାର ନୀତି ଗ୍ରହଣ କରିଛି । ଗନ୍ଧମାର୍ଦ୍ଦନ ପର୍ବତ ତଥା ଲାଞ୍ଜିଗଡ଼ର ନିୟମଗିରି ଉପରେ ନିର୍ଭରଶୀଳ ଆଦିବାସୀ ମାନେ ସେମାନଙ୍କ ଜୀବନ ଜୀବିକା ତଥା ଅସ୍ତିତ୍ୱର ସୁରକ୍ଷା ପାଇଁ ଲଢ଼ୁଛନ୍ତି, ଲଢୁଛନ୍ତି, କିନ୍ତୁ ଧନୀ ଦେଶର ଜନଗଣ ସେମାନଙ୍କ ବିଳାସପୂର୍ଣ୍ଣ ଜୀବନ ଶୈଳୀର ବିକାଶ ପାଇଁ ଯତ୍ନଶୀଳ ।''

## ଟାଟା କମ୍ପାନୀର କର୍ମ କାଣ୍ଡ

ଟାଟା କମ୍ପାନୀ ଭାରତରେ ଏକ ଖ୍ୟାତନାମା ଏବଂ ପ୍ରତିଷ୍ଠିତ ବ୍ୟବସାୟିକ ସଂସ୍ଥା । ସେ ଓଡ଼ିଶା ସରକାରଙ୍କର ଗେହ୍ଲାପୁଅ ସାଜି ପ୍ରଚଳିତ ଆଇନ ଆଖିରେ ଆଙ୍ଗୁଳି ଗେଞ୍ଜି ଯୋଡ଼ା ବଡ଼ବିଲ୍ ଅଂଚଳରେ ରାଜ୍ୟର ବହୁମୂଲ୍ୟ ଜଙ୍ଗଲ ଏବଂ ଖଣିଜ ସମ୍ପଦକୁ ଲୁଣ୍ଠନ କରି ଚାଲିଥିବାର ଅଭିଯୋଗ ହୋଇଛି ।

ଦୀର୍ଘ ଦିନ ଧରି ଜଙ୍ଗଲ ସଂରକ୍ଷଣ ନିୟମ କାରଣରୁ ଏଠିକାର 'କ' ଶ୍ରେଣୀୟ ସଂରକ୍ଷିତ ଜଙ୍ଗଲ ଅଂଚଳରେ କମ୍ପାନୀର ମାଙ୍ଗାନିଜ୍ ଖଣି ଗୁଡ଼ିକର ଖନନ କାର୍ଯ୍ୟ ବନ୍ଦ ରହିଥିଲା । ଏବେ, କିନ୍ତୁ ଓଡ଼ିଶା ଫରେଷ୍ଟ ଆଇନ ୧୯୭୨, ଫରେଷ୍ଟ ସଂରକ୍ଷଣ ଆଇନ ୧୯୮୦ ଏବଂ ମାନ୍ୟବର ସୁପ୍ରିମ କୋର୍ଟଙ୍କ ୧୯୯୬ ମସିହା ନିର୍ଦ୍ଦେଶନାମାକୁ ଉଲ୍ଲଂଘନ କରି ଯୋଡ଼ା, ୱେଷ୍ଟ ବଦେଇକଲା, ବିଚାକୁଣ୍ଡି, ରଣାଶାଳ ଘାଟି ସ୍ଥାନ ମାନଙ୍କରେ ଖଣି କାର୍ଯ୍ୟ ଆରମ୍ଭ ହୋଇଛି । ସଂରକ୍ଷିତ ଜଙ୍ଗଲ କାଟିବାର ଅଭିଯୋଗ ସଂପୃକ୍ତ ଗ୍ରାମବାସୀମାନେ ବାରମ୍ବାର କରୁଥିଲେ ମଧ୍ୟ ସେଥିପ୍ରତି କର୍ତ୍ତୃପକ୍ଷ ଦୃଷ୍ଟି ଦେଉ ନାହାନ୍ତି । କମ୍ପାନୀର ଜ୍ଞାତସାରରେ ଆପଣା  ଲିଜ୍ ଅଂଚଳ ମଧ୍ୟରେ ନିଯୁକ୍ତ ଠିକାଦାର ମାନଙ୍କର ଏତାଦୃଶ ଆଇନ ବିରୁଦ୍ଧ କାର୍ଯ୍ୟ ପ୍ରତି ସଂପୃକ୍ତ ବିଭାଗୀୟ ସରକାରୀ କର୍ମକର୍ତ୍ତାଙ୍କର ଇଚ୍ଛାକୃତ ଉଦାସୀନତା ପଛରେ ଅନେକ ରହସ୍ୟ ଥିବାର ଜଣାପଡ଼ିଛି । ଏହା ଫଳରେ ଦୁଇ ଶହ ହେକ୍ଟରରୁ ଅଧିକ ଜଙ୍ଗଲରେ ଅନେକ ଦୁଷ୍ପ୍ରାପ୍ୟ ବନୌଷଧି ବୃକ୍ଷଲତା ସହ ଶାଳ ଓ ଅନ୍ୟାନ୍ୟ ଜଙ୍ଗଲ ସମ୍ପଦ ଅଚିରେ ଲୋପ ପାଇଯିବାର ଆଶଙ୍କା ଦେଖା ଦେଇଛି । ଏହାଦ୍ୱାରା କମ୍ପାନୀ ଲିଜ୍ ଚୁକ୍ତି ନାମାକୁ ଖୋଲା ଖୋଲି ଉଲ୍ଲଂଘନ କରୁଛି ।  ପୁଣି ଠିକାଦାର ମାନେ ସଂରକ୍ଷିତ ଜଙ୍ଗଲ ଅଂଚଳ ମଧ୍ୟକୁ ଅନେକ ଭାରୀ ମେସିନ୍ ନେଇ ବ୍ୟାପକ ଜଙ୍ଗଲ ସମ୍ପଦକୁ ନଷ୍ଟ କରୁଥିବାରୁ ଏକ ଅସନ୍ତୁଳିତ ପରିବେଶ ସୃଷ୍ଟି ହୋଇଛି । ଅନୁସନ୍ଧାନରୁ ଜଣାପଡ଼ିଛି, କମ୍ପାନୀ ମୁଷ୍ଟିମେୟ ପ୍ରଭାବଶାଳୀ କର୍ମଚାରୀଙ୍କ ସୁରକ୍ଷା ଓ ପ୍ରୋତ୍ସାହନ ବଳୟ ମଧ୍ୟରେ ରହି ଉପରୋକ୍ତ ଖଣି ଖନନ ଓ ପରିବହନ ନିମନ୍ତେ ଯେଉଁ ଠିକାଦାର ମାନଙ୍କୁ ଦାୟିତ୍ୱ ଦେଇଛନ୍ତି, ସେମାନେ ଦିନ ରାତି ଅବାଧରେ ଚୋରା ମାଙ୍ଗାନିଜ୍ ଚାଲାଣ ଚଳାଇଥିବା କଥା ଗ୍ରାମବାସୀ ମାନଙ୍କ ଅଭିଯୋଗରୁ ଜଣାପଡ଼ିଛି ।

## କରତ କଳ ପ୍ରସଙ୍ଗ

ଓଡ଼ିଶା କରତ କଳ ନିୟନ୍ତ୍ରଣ ଆଇନ-୧୯୯୧ ଅନୁଯାୟୀ ରାଜ୍ୟରେ ନୂତନ କରତକଳ ପ୍ରତିଷ୍ଠା ଉପରେ ପ୍ରତିବନ୍ଧକ ଜାରି କରାଯାଇଥିଲା । ଏହି ନିୟମ ଅନୁଯାୟୀ କୌଣସି ଜଙ୍ଗଲ ଅଂଚଳର ୧୦ କିଲୋମିଟର ପରିସୀମା ମଧ୍ୟରେ ଥିବା କରତକଳ ଗୁଡ଼ିକୁ ବନ୍ଦ କରିବା ନିମନ୍ତେ ପଦକ୍ଷେପ ଗ୍ରହଣ କରିବା କଥା ଅନ୍ତର୍ଭୁକ୍ତ । ତେବେ ସରକାରଙ୍କ ଏହି ଆଇନକୁ କରତକଳ ମାଲିକମାନେ ହାଇକୋର୍ଟ ଓ ସୁପ୍ରିମକୋର୍ଟରେ ଚାଲେଞ୍ଜ କରିଥିଲେ ମଧ୍ୟ ସେମାନଙ୍କ ଆବେଦନ ନାମଂଜୁର ହୋଇ ଯାଇଥିଲା । ସୁପ୍ରିମକୋର୍ଟ ରାୟ ପରେ ଜଙ୍ଗଲ ସୀମାର ୧୦ କିଲୋମିଟର ମଧ୍ୟରେ ଥିବା କରତକଳ ଗୁଡ଼ିକୁ ଜଙ୍ଗଲ ବିଭାଗ ପକ୍ଷରୁ ବନ୍ଦ ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ଏଠାରେ ସୁପ୍ରିମକୋର୍ଟଙ୍କ ଜଙ୍ଗଲ ସଂଜ୍ଞା ମଧ୍ୟରେ ସଂରକ୍ଷିତ ଜଙ୍ଗଲ, ସୁରକ୍ଷିତ ଜଙ୍ଗଲ ଓ ଗ୍ରାମ୍ୟ ଜଙ୍ଗଲ ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ନୂତନ କରତ କଳ ଖୋଲା ନଯିବା ଓ ଅଧିକରୁ ଅଧିକ କରତକଳ ବନ୍ଦ କରାଯାଉଥିବାରୁ ରାଜ୍ୟରେ କାଠର ଅଭାବ ଦେଖା ଦେବ ବୋଲି ଦର୍ଶାଇ ପୂର୍ବର ବିଧାନସଭା ଅଧିବେଶନ ସମୟରେ ବିଧାୟକମାନେ ଗୃହରେ ସ୍ୱର ଉତ୍ତୋଳନ କରିଥିଲେ । ଏଇ ସମସ୍ୟାର ସମାଧାନ ପାଇଁ ଏକ ବିଧାନସଭା କମିଟି ଗଠନ କରାଯାଇଥିଲା । କମିଟି ଇତିମଧ୍ୟରେ ରାଜ୍ୟରେ ଅଧିକ ୭୦ଟି କରତକଳ ପ୍ରତିଷ୍ଠା ପାଇଁ ସୁପାରିଶ କରିଥିବା କଥା ଜଣାପଡ଼ିଛି । ଏତଦ୍ ବ୍ୟତୀତ ପୂର୍ବରୁ ରାଜ୍ୟର ବିଭିନ୍ନ ସ୍ଥାନରେ ଚାଲିଥିବା ୧୫୦ଟି କରତକଳ ବନ୍ଦ ନକରିବା ପାଇଁ ପୂର୍ବ ବିଧାନସଭା ସମୟରେ ଦିଆଯାଇଥିବା ନିର୍ଦ୍ଦେଶକୁ ଅମାନ୍ୟ କରିଥିବା ଜଙ୍ଗଲ ଅଧିକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଚଳିତ ବିଧାନସଭାରେ ନିଷ୍ପତ୍ତି ନିଆଯାଇଛି । ଅନ୍ୟ ପକ୍ଷରେ କରତକଳ ମାଲିକଙ୍କ ଏକ ଶକ୍ତିଶାଳୀ ଲବି କରତକଳ ନିୟନ୍ତ୍ରଣ ଆଇନ - ୧୯୯୧କୁ ସଂଶୋଧନ କରିବା ପାଇଁ ଉଦ୍ୟମ ଚଳାଇଛନ୍ତି । ଏଣେ କମିଟି ଜଙ୍ଗଲର ସଂଜ୍ଞା: ସୁରକ୍ଷିତ କି ଗ୍ରାମ୍ୟ ଜଙ୍ଗଲ ନୁହେଁ, କେବଳ ସଂରକ୍ଷିତ ଜଙ୍ଗଲ ବୋଲି ନିର୍ଦ୍ଧାରିତ କରିଛନ୍ତି । ଯାହାକି ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ ବିରୋଧୀ । ଅନ୍ୟ ପକ୍ଷରେ କରତକଳ ଯୋଗୁଁ କଟକ-ଭୁବନେଶ୍ୱର ଓ ଅନ୍ୟାନ୍ୟ ସହରରେ କାଠର ଅଭାବ ପରିଲକ୍ଷିତ ହେଉଛି ବୋଲି ବିଧାନସଭା କମିଟି ଯେଉଁ ଯୁକ୍ତି ଦର୍ଶାଇଛନ୍ତି, ତାହା ଗ୍ରହଣୀୟ ନୁହେଁ ବୋଲି ବନ୍ୟପ୍ରାଣୀ ସୁରକ୍ଷା ସମିତି ପକ୍ଷରୁ ପ୍ରତିକ୍ରିୟା ପ୍ରକାଶ ପାଇଛି । ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶ ସତ୍ତ୍ୱେ ଏବେ ବି ରାଜ୍ୟରେ ବହୁ ସଂରକ୍ଷିତ ଜଙ୍ଗଲ ନିକଟରେ କରତକଳ ରହିଥିବା ପ୍ରକାଶ । ଅନୁରୂପ ଅଭିଯୋଗ ଉଠିଛି କୋଣାର୍କ ଅଂଚଳରେ । ପୁଣି ନିକଟରେ ୫ଟି କରତକଳକୁ ଖୋର୍ଦ୍ଧା ଡିଏଫ୍ଓ ବେଆଇନ ଭାବେ ଲାଇସେନ୍ସ ପ୍ରଦାନ କରିଥିବା କଥା କୁହାଯାଇପାରେ । ସଂପୃକ୍ତ ଡିଏଫ୍ଓ

କରତକଳ ଗୁଡ଼ିକୁ ଲାଇସେନ୍ସ ଦେବା ପୂର୍ବରୁ ସି.ଇ.ସି.ର କୌଣସି ଅନୁମତି ନେଇ ନାହାନ୍ତି । ଏଇ ୫ଟି ଯାକ କରତକଳ ଜଙ୍ଗଲ ଅଂଚଳର ୧୦ କିଲୋମିଟରେ ପରିଧି ମଧରେ ରହିଛି । ଏହାଦ୍ୱାରା ଡିଏଫ୍‌ଓ ସୁପ୍ରିମକୋର୍ଟ ତଥା ଓଡ଼ିଶା ଜଙ୍ଗଲ ଆଇନକୁ ଛାତ ସାରରେ ଉଲ୍ଲଂଘନ କରି ଜଙ୍ଗଲ ଧ୍ୱଂସର ପଥ ପ୍ରଶସ୍ତ କରୁ ନାହାନ୍ତି କି ? କରତକଳ ଖୋଲିବା ପାଇଁ ବିଧାନସଭା କମିଟି ଯେଉଁ ସୁପାରିଶ କରିଛନ୍ତି, ତାହା କେତେ ଦୂର ଜଙ୍ଗଲ ସୁରକ୍ଷା କରିବ ? ପୁଣି ବିଧାନସଭା ନିଷ୍ପତ୍ତି କେଉଁ ମଣିଷ ମାନଙ୍କୁ ମଦତ୍ ଯୋଗାଇବ ???

## ଜଙ୍ଗଲ ଓ ମଣିଷର ଚିତ୍ର

ଏବେ ପୂର୍ବଘାଟ ପର୍ବତମାଳା ସଂପୂର୍ଣ୍ଣ ଭାବେ ଧ୍ୱଂସ ପଥରେ ଚାଲିଛି । ଶିଳ୍ପ, ଅନଧିକାର ଆବାଦ ଓ ରକ୍ଷକଙ୍କ ଭକ୍ଷକ ନୀତି ଯୋଗୁଁ ଏବେ ଏହି ପର୍ବତମାଳାରୁ ଅରଣ୍ୟ ଶୂନ୍ୟ ହୋଇ ଗଲାଣି । ଅବାଧ ଶିକାର ପାହାଡ଼ ଜଙ୍ଗଲରେ ଏକ ନିତ୍ୟ ନୈମିତିକ ଘଟଣା । ଫଳରେ କେତେକ ପ୍ରଜାତିର ଗଛବୃଚ୍ଛ ସହ କେତେକ ପ୍ରଜାତିର ଜୀବଜନ୍ତୁ ଆଉ ଦେଖାଯାଉ ନାହାନ୍ତି । ଏବେ ୪୦ ହଜାରରୁ ଉର୍ଦ୍ଧ୍ୱ ବର୍ଗ କିଲୋମିଟର ଅଂଚଳର ଅରଣ୍ୟ ଶୂନ୍ୟ ହୋଇ ପଡ଼ିଲାଣି । ଏଣୁ ଋତୁ ନିର୍ଯାତନା ଆମକୁ ଲାଗି ରହିଛି ଓ ଲାଗି ରହିବ । ଏହା ଶାସକଚକ୍ର ଦ୍ୱାରା ସମ୍ଭୂତ ଏବଂ ସମଗ୍ର ମଣିଷ ସମାଜକୁ ଏହା ଭୋଗ କରିବାକୁ ପଡ଼ିବ ।

୧୯୭୯ ମସିହା ସୁଦ୍ଧା କୋରାପୁଟ ଅଂଚଳର କଳକାରଖାନା ଓ ରାସ୍ତା ତିଆରି ପ୍ରଭୃତି ଯୋଜନାରେ ୯୦ ହଜାର ଏକର ଜମିକୁ ନଷ୍ଟ କରି ଦିଆଗଲା । ହଜାର ହଜାର ଏକର ଜଙ୍ଗଲ ପାଣିରେ ବୁଡ଼ିଗଲା । ଅନେକ ସ୍ଥାନରେ କଫି ବଗିଚା, କାଜୁ ବଗିଚା ସହ ୟୁକାଲି ପଟାସ୍, ଆକାଶିଆ ଓ ନୀଳଗିରି ଇତ୍ୟାଦି ଦାମିକା କାଠର ଗଛ ଲଗା ଯାଇ ଆଦିବାସୀଙ୍କ ଭାତହାଣ୍ଡି ଚେର, କନ୍ଦ, ପିତାଆଳୁ ଓ ବଣୁଆ ଫୁଲ ଫଳର ଜଙ୍ଗଲ ସବୁ ନଷ୍ଟ କରି ଦିଆଗଲା ।

ସିମିତି ମୟୂରଭଂଜ ଜିଲ୍ଲାର ଶିମିଳିପାଳ ଅଭୟାରଣ୍ୟ ଅଂଚଳରେ ଜଙ୍ଗଲ ଉପରେ ନିର୍ଭର କରି ଚଳୁଥିବା ବିଭିନ୍ନ ଗ୍ରାମର ବାରହଜାର ଆଦିବାସୀ ଆଜି ଉଚ୍ଛେଦ ଆତଙ୍କରେ ଆତଙ୍କିତ । ଓଡ଼ିଶାର ଅନେକ ଜଙ୍ଗଲକୁ ସରକାର ଖାମଖିଆଲି ଭାବେ ଅଭୟାରଣ୍ୟ ଘୋଷଣା କରିଛନ୍ତି । ୧୯୭୩ ମସିହାରୁ ଆଜି ପର୍ଯ୍ୟନ୍ତ ୧୮ଟି ଅଭୟାରଣ୍ୟ ଘୋଷଣା କରାଯାଇ ଆଠ ହଜାର ଏକ ଶହ ପଚିଶ ବର୍ଗ କିଲୋମିଟର ଅଂଚଳ ଜଙ୍ଗଲରେ ବନ୍ୟଜନ୍ତୁ (ବାଘ-ହାତୀ ସହ)ଙ୍କୁ ରଖା ଗଲାଣି । ଜଙ୍ଗଲରୁ ଉଚ୍ଛେଦ କରାଯାଇଥିବା ଆଦିବାସୀଙ୍କ ଥଇଥାନ ଯୋଜନା କେବଳ ଯୋଜନାରେ ରହି ଯାଇଛି । ସେମାନେ ଭିଟାମାଟି ଜୀବନ ବଂଚାଇବା ପାଇଁ କିଏ କୁଆଡ଼େ ଯାଯାବର ହୋଇଗଲେଣି ।

ଏକ ତଥ୍ୟରୁ ଜଣାପଡ଼ିଛି, ଶିମୁଳିପାଳ ଅରଣ୍ୟର ଜଙ୍ଗଲ ସମ୍ପଦ ଦିନକୁ ଦିନ ହ୍ରାସ ପାଇବାରେ ଲାଗିଛି । ଏହା ରୋକା ନ ଗଲେ ଭବିଷ୍ୟତରେ ଏକ ଭୟାବହ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ପରିବେଶବିତ୍‌ମାନେ ମତ ପ୍ରକାଶ କରିଛନ୍ତି । ଗତ କିଛି ବର୍ଷ ଧରି କପ୍ତିପଦା ଉପଖଣ୍ଡର ଶାରୀଚୁଆ, ନଜଟା, ଶୁଖୁଆ ପୋଟା ଅଂଚଳରେ ଥିବା ଘଂଚ ସବୁଜ ବନାନୀ ମାଫିଆ ମାନଙ୍କ ଉପଦ୍ରବ ଓ ସରକାରୀ ଉଦାସୀନତା ଯୋଗୁଁ ଟାଙ୍ଗରା ଭୂଇଁରେ ପରିଣତ ହେବାକୁ ବସିଲାଣି । ଆଭ୍ୟନ୍ତରିଣ ଜଙ୍ଗଲାଞ୍ଚଳରେ କାଠ ବ୍ୟବସାୟ ମୁଖ୍ୟ ଜୀବିକା ହୋଇଥିବା ଦେଖା ଯାଇଛି । ଦିନରେ ଜଙ୍ଗଲ ଭିତରୁ ବିଭିନ୍ନ ଆକାରର ଗଛ ସବୁ କଟା ଯାଇ ପକ୍କା ଘର ତଥା ବିଭିନ୍ନ ଆସବାବ ପତ୍ର ପାଇଁ ସାଇଜ୍ କରାଯାଇ ରାତିରେ ସାଇକେଲ ଯୋଗେ ଚାଲାଣ ହେଉଛି । ସ୍ଥାନୀୟ ବନବିଭାଗ ଏହା ରୋକିବା ତ ଦୂର କଥା ବରଂ ପ୍ରୋତ୍ସାହନ ଦେବା ଫଳରେ ଚୋରଙ୍କ କାରବାର ବୃଦ୍ଧି ପାଇବାରେ ଲାଗିଛି । ସିମିତି ଗଛ କଟା ଯାଇ ତାହା ପୋଡ଼ି ବ୍ୟାପକ ଭାବେ କାଠ କୋଇଲାର ବ୍ୟବସାୟ ମଧ ଚାଲିଛି । କାଠ, ବାଉଁଶ ଓ କୋଇଲା ବ୍ୟବସାୟରେ ଗାଁ ଗଣ୍ଡାର କିଛି ଅସାଧୁ ଲୋକ ସଂପୃକ୍ତ ଅଛନ୍ତି । ଅନ୍ୟ ଦିଗରେ କେତେକ ଚୋରାକାରବାରୀଙ୍କ ଦ୍ୱାରା ଧାରାବାହିକ କାଠ ଫର୍ଣ୍ଣିଚର ତିଆରି କରି ବିକ୍ରି କରିବା ଏକ କୁଟୀର ଶିଳ୍ପରେ ପରିଣତ ହୋଇଛି । ଯାହାକି ଜଙ୍ଗଲ ବିଭାଗ ମାର୍ଫତରେ ପଡ଼ୋଶୀ ଜିଲ୍ଲାମାନଙ୍କୁ ଚାଲାଣ କରାଯାଉଛି । ଶିମୁଳିଆ ଅଭୟାରଣ୍ୟ ସଂଲଗ୍ନ ଦେବ ପୀଠ ଦେବକୁଣ୍ଡର ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ବାଇମା ଜଙ୍ଗଲଟି ସଂପୂର୍ଣ୍ଣ ଭାବେ ଧ୍ୱଂସ ପାଇବାକୁ ବସିଲାଣି । ଶିମିଳିପାଳ ଅରଣ୍ୟକୁ ଆଧାର କରି ମୟୂରଭଂଜ ସମଗ୍ର ଭାରତ ବର୍ଷରେ ତାର ଅସ୍ତିତ୍ୱ ସାବ୍ୟସ୍ତ କରି ଆସିଛି । କିନ୍ତୁ ଶିମିଳିପାଳ ଅଭୟାରଣ୍ୟରେ ବ୍ୟାପକ ଜଙ୍ଗଲ ଅବକ୍ଷୟ ସହ ପରିବେଶଗତ ଭାରସାମ୍ୟ ନଷ୍ଟ ହେଉଥିବାର ଲକ୍ଷ୍ୟ କରାଯାଉଛି । ଯାହା ଫଳରେ ବିଗତ ବର୍ଷମାନଙ୍କରେ ବୃଷ୍ଟିର ଅନିୟମିତତା ସହ ଉତ୍ତାପ ବୃଦ୍ଧି ପାଇ ଚାଲିଛି । ଅନ୍ୟ ପକ୍ଷରେ ଓଡ଼ିଶାର ହିମାଳୟ ବୋଲାଉଥିବା ଶିମିଳିପାଳ ଅହର୍ନିଶ ଗଛ କଟା ଯାଉଥିବା ଯୋଗୁଁ ସଂକଟର ଦ୍ୱାର ଦେଶରେ ଉପସ୍ଥିତ । ଯଦି ଏ ଅବସ୍ଥା ଲାଗି ରହେ, ଆସନ୍ତା କିଛି ବର୍ଷ ମଧରେ ଓଡ଼ିଶା ଆଉ ଏକ ରାଜସ୍ଥାନ ମରୁଭୂମିରେ ପରିଣତ ହେବାର ଆଶଙ୍କାକୁ ଏଡ଼ାଇ ଦିଆଯାଇ ନପାରେ ।

ମୟୂରଭଂଜ ସୀମାକୁ ଲାଗିଥିବା ନୀଳଗିରି ଜଙ୍ଗଲର ଅବସ୍ଥା ମଧ ତଦ୍ରୁପ । ସବ୍‌ଡିଭିଜନ ସାରା ଯେଉଁଠି ଛିଡ଼ା ହେବ ଦେଖିବ, ଗଛବୃକ୍ଷ ହୀନ ପର୍ବତ । ଆଜିକୁ ନୀଳଗିରିର ଜଙ୍ଗଲ ଶେଷ ପ୍ରାୟ ।

ଅନ୍ୟ ଏକ ସମ୍ବାଦରୁ ଜଣାପଡ଼ିଛି- ଅନୁଗୋଳର ଆନ୍ତୁଳିଆ ଶାଗୁଆନ ସଂରକ୍ଷିତ

ଜଂଗଲ ସଂପୂର୍ଣ୍ଣ ଭାବେ ଧ୍ୱଂସ ପାଇ ପଦାରେ ପରିଣତ ହୋଇଛି । ଆଗରୁ ଏହି ଜଙ୍ଗଲରେ କାଁଭାଁ ଗଛ ଚୋରି ହେଉଥିଲା ବେଳେ ଗତ ଅଗଷ୍ଟ ଓ ସେପ୍ଟେମ୍ବର ଦୁଇ ମାସରେ ତିନି ହଜାର ବଡ଼ ବଡ଼ ଶାଗୁଆନ ଗଛ ସବୁ କାଠ ମାଫିଆଙ୍କ ଦ୍ୱାରା କଟା ହୋଇ ଚାଲାଣ ହୋଇ ଯାଇଛି । ଏ ସାଗୁଆନ ଗଛ ସବୁ ୪/୫ ଫୁଟ ଗୋଲେଇ ଏବଂ ୨୫/୩୦ ଫୁଟ ଉଚ୍ଚତା ବିଶିଷ୍ଟ ଥିଲା । ଚୋରି ସଂପର୍କରେ ଗ୍ରାମବାସୀ ଓ ବହୁ ପରିବେଶବିତ୍ ଜଙ୍ଗଲ ବିଭାଗକୁ ବାରମ୍ବାର ସୂଚନା ଦେଇଥିଲେ ମଧ୍ୟ ଏହି କାଠଚୋରି ର୍ୟାକେଟରେ କେତେକ ବନବିଭାଗ କର୍ମଚାରୀ ଓ ଅଫିସର ସଂପୃକ୍ତ ଥିବାରୁ କାଠ ଚୋରି ରୋକାଯାଇ ପାରି ନଥିଲା ବୋଲି ଅଭିଯୋଗ ହୋଇଛି ।

ସିମିତି ବଲାଙ୍ଗୀର ଜିଲ୍ଲାର ସୁନାବେଡ଼ା ଅଂଚଳରେ ୧୯୮୫ ମସିହାରୁ 'ସୁନାବେଡ଼ା ଅଭୟାରଣ୍ୟ' ଘୋଷଣା ହେବା ପରେ ସେ ଜଙ୍ଗଲ ଅଂଚଳରେ ରହୁଥିବା ୬୬ଟି ଗାଁର ଆଦିବାସୀଙ୍କ ଜୀବନ କୁଟା ଖିଅରେ ଝୁଲୁଛି । ସୁନାବେଡ଼ା ଅଭୟାରଣ୍ୟ ସମୁଦାୟ ୬ଟି ଫରେଷ୍ଟ ବ୍ଲକ ନେଇ ୫୯୭-୯୦ ବର୍ଗ କିଲୋମିଟରରେ ଅବସ୍ଥିତ । ଏଇ ଜଙ୍ଗଲ ଅଂଚଳର ଆଦିବାସୀ ମୁଖ୍ୟତଃ ଜଙ୍ଗଲ ଜାତ ଦ୍ରବ୍ୟ, କେନ୍ଦୁପତ୍ର, ଖଲିପତ୍ର, ହରିଡ଼ା, ମହୁଲ, ଅଁଳା, ପେଙ୍ଗବିଜା, ମଇଦା ଛାଲି, ଗଁର, ବାହାଡ଼ା, ଝୁଣା, ଲାଖ ପ୍ରଭୃତି ସଂଗ୍ରହ କରି ସ୍ୱଳ୍ପ ମୂଲ୍ୟରେ ବିକି ଜୀବିକା ନିର୍ବାହ କରିଥାନ୍ତି । ସେମାନେ ଏବେ ଅନିର୍ଦ୍ଦିଷ୍ଟ ଜୀବନ ନେଇ ବଂଚିଛନ୍ତି ।

ଅନ୍ୟ ପକ୍ଷରେ ମିଗ୍ ସହର ସୁନାବେଡ଼ା ଅଂଚଳରୁ ଚୋରା କାଠର ଅବାଧ ଚାଲାଣ ସାଂଗକୁ କାଠ ମାଫିଆଙ୍କ କ୍ରମବର୍ଦ୍ଧିଷ୍ଣୁ କାରବାର ଏହି ଅଂଚଳକୁ ଆଗାମୀ ଦଶବର୍ଷ ମଧ୍ୟରେ ବୃକ୍ଷ ଶୂନ୍ୟ କରିଦେବ ବୋଲି ଆଶଙ୍କା ପ୍ରକାଶ ପାଇଛି । ଏଠାରେ ଥିବା ହଜାର ହଜାର ବିରାଟ ବୃକ୍ଷ କିଛି ବର୍ଷ ମଧ୍ୟରେ ଉଭାନ ହୋଇ ଯାଇଥିବା ବେଳେ ସଂପ୍ରତି କାଠ ଚୋରମାନେ ବ୍ୟାଟେରୀ ଚାଳିତ କରତ ବ୍ୟବହାର କରି ଗଛଗୁଡ଼ିକୁ ସଫା କରିବାରେ ଲାଗି ଥିବାରୁ ସମଗ୍ର ଅଂଚଳ ପଦା ହୋଇଗଲାଣି । ସୁନାବେଡ଼ା ସହର ଦିନକୁ ଦିନ ବୃଦ୍ଧି ପାଇ ଚାଲିଥିବାରୁ ବାସଗୃହ ନିର୍ମାଣ ପାଇଁ ପର୍ଯ୍ୟାପ୍ତ ପରିମାଣର କାଠ ଆବଶ୍ୟକ ହେଉଛି ଏବଂ ବହୁ ଯୁବକ ଚୋରା କାଠ କାରବାର ନିମନ୍ତେ ଏଇ ମଉକାକୁ ବ୍ୟବହାର କରି ବିପୁଳ ଅର୍ଥ ଆଦାୟ କରୁଛନ୍ତି । ଅନ୍ୟ ପକ୍ଷରେ ସୁନାବେଡ଼ା ସହର ଏବେ ଚୋରା କାଠ କାରବାରର ପେଣ୍ଠସ୍ଥଳୀ ପାଲଟିଥିବା ଦେଖା ଯାଇଛି । ଏଠାକୁ ନବରଙ୍ଗପୁର, ଡାବୁଗାଁ, ପାପଡ଼ାହାଣ୍ଡି, ବାଲିମେଲା, ପଦ୍ମଗିରି, ମାଥିଲି, ବୈପାରୀଗୁଡ଼ା, ପାଡୁଆ, ନନ୍ଦପୁର, କାକିରିଗୁମ୍ମା, ଦଶମନ୍ତପୁର, ଲକ୍ଷ୍ମୀପୁର, ଦାମନଯୋଡ଼ି ପ୍ରଭୃତି ସ୍ଥାନରୁ ଚୋରା କାଠ ଆସି ଗଚ୍ଛିତ ରହୁଛି ଏବଂ କାଠ ମାଫିଆ ମାନେ ସେମାନଙ୍କ କାରବାର ଅବାଧରେ ଚଳାଇଛନ୍ତି । ଏହି ଅଂଚଳ କାଠଚୋରଙ୍କ ପାଇଁ ଭୂସ୍ୱର୍ଗ ପାଲଟିଛି ।

ଏହି ଅରଣ୍ୟ ଅବକ୍ଷୟ ଓ ପରିବେଶ ପ୍ରଦୂଷଣର ଫଳ ହାତେ ହାତେ ଏ ରାଜ୍ୟର ଆଦିବାସୀଙ୍କୁ ମିଳିଛି । ଆଜି ଯେ ବରୁଆ ଜନଜାତି ଲୋପ ପାଇ ଯାଇଛି ଏବଂ ଖଡ଼ିଆ ଓ ଜୁଆଙ୍ଗମାନେ ଅବଲୁପ୍ତ ପଥରେ ଚାଲିଛନ୍ତି, ଅରଣ୍ୟ ଧ୍ୱଂସ ତାର ଏକ ମୁଖ୍ୟ କାରଣ ହେବ ନାହିଁ କାହିଁକି ? କାରଣ ଯେଉଁମାନେ ଜୀବନ ଚର୍ଯ୍ୟାରେ ଅରଣ୍ୟ ପର୍ବତ ବ୍ୟତୀତ ଅନ୍ୟ କିଛି ଗ୍ରହଣ କରି ନାହାନ୍ତି, ସେମାନଙ୍କ ବାସଭୂମି ଜଙ୍ଗଲ ଧ୍ୱଂସ ହୋଇଯିବା ପରେ ଗଭୀର ମାନସିକ ଚାପ କାହିଁକି ସେମାନଙ୍କ ଉପରେ ପଡୁ ନଥିବ ? ଯାହା ସେମାନଙ୍କୁ ଧ୍ୱଂସ ଆଡ଼କୁ ଠେଲି ନେଉଥିବ ।

ଅନ୍ୟ ପକ୍ଷରେ ଅବିଭକ୍ତ କଳାହାଣ୍ଡି, ବଲାଙ୍ଗୀର ଓ କୋରାପୁଟ (କେବିକେ) ଅନ୍ତର୍ଗତ ୮ଟି ଜିଲ୍ଲାରେ ହୋଇଥିବା ୧୮୨ଟି ଅନାହାର ମୃତ୍ୟୁ ଅଭିଯୋଗକୁ ସରକାର ଫାଙ୍କି ଦେଉଛନ୍ତି । ରାଜ୍ୟ ସରକାର ପିଟିସନ୍ କମିଟିକୁ ସଫେଇ ଦେଇ କହିଛନ୍ତି, କେବିକେର ଖାଦ୍ୟାଭାବ ଓ ପୁଷ୍ଟିହୀନତାକୁ ଦୂର କରିବା ଲାଗି ଖାଦ୍ୟ ସୁରକ୍ଷା ଯୋଜନାକୁ ବ୍ୟାପକ ଭାବେ କାର୍ଯ୍ୟକାରୀ କରାଯାଉଥିବାରୁ ସଂପୃକ୍ତ ଅଂଚଳରେ ପୁଷ୍ଟିହୀନତା କିମ୍ବା ଅନାହାର ମୃତ୍ୟୁର ପ୍ରଶ୍ନ ଉଠୁନାହିଁ ।

ସ୍ମରଣଯୋଗ୍ୟ, ୨୦୦୦ରୁ ୨୦୦୩ ଅଗଷ୍ଟ ୨୦ ତାରିଖ ସୁଦ୍ଧା କେବିକେରେ ଅନ୍ୟୂନ ୧୮୨ଟି ଅନାହାର ମୃତ୍ୟୁ ହୋଇଥିବା ଅଭିଯୋଗ ହୋଇଥିଲା । ଜାତୀୟ ମାନବାଧିକାର କମିଶନଙ୍କ ଠାରୁ ଆରମ୍ଭ କରି ରାଜ୍ୟସଭାର ପିଟିସନ୍ କମିଟି ପର୍ଯ୍ୟନ୍ତ ଗତ ତିନି ବର୍ଷ ଧରି ଏହି ପ୍ରସଙ୍ଗ ଉତ୍ଥାପନ କରି ଆସିଛନ୍ତି । ଅଗଷ୍ଟ ୨୫, ୨୦୦୩ରେ ଓଡ଼ିଶା ଆସିଥିବା ରାଜ୍ୟସଭା ପିଟିସନ୍ କମିଟିର ସଭ୍ୟମାନେ ସମୀକ୍ଷା କରିବା ବେଳେ ସରକାରଙ୍କ ଠାରୁ ପ୍ରତ୍ୟେକ ଅନାହାର ମୃତ୍ୟୁ ଅଭିଯୋଗର ପୃଥକ ପୃଥକ ରିପୋର୍ଟ ମାଗିଥିଲେ ।

ସରକାର ତାଙ୍କ ଉତ୍ତରରେ ଦର୍ଶାଇଛନ୍ତି, ଗତ ତିନି ବର୍ଷ ମଧ୍ୟରେ କେବିକେରେ ୧୮୨ଟି ଅନାହାର ମୃତ୍ୟୁ ଅଭିଯୋଗ ଜିଲ୍ଲାପାଳମାନଙ୍କ ନିକଟରେ ପହଞ୍ଚିଥିଲା । ଅନୁସନ୍ଧାନ ପରେ ଉପରୋକ୍ତ ଅଭିଯୋଗ ଗୁଡ଼ିକ ଭିତ୍ତିହୀନ ବୋଲି ପ୍ରମାଣିତ ହୋଇଛି । ସେଥିରେ ସମୁଦାୟ କେତେ ପରିବାର ମଧ୍ୟରୁ କେତେ ପରିବାର ଦାରିଦ୍ର୍ୟ ସୀମାରେଖା ତଳେ ଥିବାରୁ ସେମାନଙ୍କୁ (ବିପିଏଲ୍) ରିହାତି ଚାଉଳ ଦିଆଯାଉଛି; କେତେ ପରିବାରଙ୍କୁ ସାଧାରଣ ଆବଣ୍ଟନ ବ୍ୟବସ୍ଥାରେ ଚାଉଳ ଦିଆଯାଉଛି; କେତେ ବୁଢ଼ାବୁଢ଼ୀଙ୍କୁ ଅନ୍ନପୂର୍ଣ୍ଣା ଯୋଜନାରେ ମାଗଣା ଚାଉଳ ଦିଆଯାଉଛି ଏବଂ ଅନ୍ତ୍ୟୋଦୟ ଅନ୍ନ ଯୋଜନାରେ କେତେକ ପରିବାରଙ୍କୁ ତିନି ଟଙ୍କାରେ ଚାଉଳ ଦିଆଯାଉଛି- ସେସବୁ ଦର୍ଶେଇ ପିଟିସନ୍ କମିଟିକୁ ସଂପୂର୍ଣ୍ଣ ଫାଙ୍କି ଦିଆଗଲା ।

ଅନ୍ୟ ପକ୍ଷରେ କିନ୍ତୁ ବିପିଏଲ୍ ଚାଉଳ ହେରଫେର ଅଭିଯୋଗକୁ ସରକାର ସ୍ୱୀକାର କରିଛନ୍ତି । ଏଇ କାରଣରୁ ନୂଆପଡ଼ା ଜିଲ୍ଲାରେ ବିଡ଼ିଓ ଓ ଯୋଗାଣ ବିଭାଗ କର୍ମଚାରୀଙ୍କୁ ନିଲମ୍ବିତ କରାଯାଇଛି ବୋଲି ସରକାର ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ।

ସିମିତି ଅତୀତରେ କଳାହାଣ୍ଡିରେ ଏବଂ ଏଇ ନିକଟରେ ଯାଜପୁରରେ ବାପ-ମା ନିଜ ପେଟ ଦାଉରେ ଆପଣା କଅଁଳା ଛୁଆକୁ ବିକ୍ରି କରିବା ଘଟଣା ଦେଶ ଓ ଦେଶ ବାହାରେ ଆଲୋଡ଼ନ ସୃଷ୍ଟି କରିଛି । ସତ କହିଲେ ଓଡ଼ିଆ ସାହିତ୍ୟରେ ଆଦିବାସୀର ନିଜ ପିଲା ବିକ୍ରି ସମ୍ବାଦ ଏକ କରୁଣ ପ୍ରତୀକରେ ପରିଣତ ହୋଇଛି ।

ପୃଥିବୀରେ ତଥାକଥିତ ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତରେ ଏପରି ଗଣତନ୍ତ୍ର ଚାଲିଛି, ଯେଉଁଠି ଓଡ଼ିଶା ଭଳି ଏକ ରାଜ୍ୟରେ ମଣିଷ ଆମ୍ବ କୋଇଲି ଗୁଣ୍ଡ ଖାଇ ମରେ, ଭୋକିଲା ବାପ-ମା ଆପଣା ପିଲାକୁ ହାଟରେ ବିକ୍ରି କରି ଦିଅନ୍ତି । ଏଠି ଆଦିବାସୀ ପାଇଁ ପିଲା ବିକ୍ରିର ନାମ ଗଣତନ୍ତ୍ର । ଏଠି ଆଦିବାସୀ ପାଇଁ ବିଷ ଖାଇବାର ନାମ ଗଣତନ୍ତ୍ର । ସେଇ ଗଣତାନ୍ତ୍ରିକ ସରକାର ଆଜି ଜବର ଦଖଲ ନାଁରେ ପରିବେଶ ସୁରକ୍ଷାର ଆଳ ଦେଖାଇ ଶେଷକୁ 'ମାର୍ ମାର୍ ଭଣ୍ଡାରିଆକୁ ମାର୍' ନୀତିରେ 'ଜଙ୍ଗଲରୁ ଆଦିବାସୀ ହଟାଅ' ଅଭିଯାନ ଆରମ୍ଭ କରିଛନ୍ତି । ଏହା ଅନ୍ତତଃ ପ୍ରଥମେ ଆଦିବାସୀ ବିଶ୍ୱାସ କରିବା ଉଚିତ ।

## ଗଣତନ୍ତ୍ର କଣ ଜାଣିବା ଉଚିତ

ଆଜି ସାମ୍ରାଜ୍ୟବାଦୀ ଗଣତନ୍ତ୍ର ବିଶ୍ୱ ସମୁଦାୟର ଛାତି ଉପରେ ବସି ତାର ସୀମାହୀନ ରକ୍ତ ପିପାସା ମେଣ୍ଟାଉଛି । ପାଟଶିରପା ବାନ୍ଧିଲା ପରି ବସମ୍ବଦ ମାନଙ୍କୁ ବିଭିନ୍ନ ବାଗରେ ଗଣତନ୍ତ୍ରର ଶିରପା ବାନ୍ଧୁଛି । ଆଜି ଗଣତନ୍ତ୍ରର ଆଦର୍ଶ, ପଥ ପ୍ରଦର୍ଶକ ତଥା ବିଶ୍ୱନାୟକ କହିଲେ ଆମେରିକାକୁ ହିଁ ବୁଝାଏ ।

ପ୍ରଖ୍ୟାତ ଲେଖିକା ଅରୁନ୍ଧତୀ ରାୟ ଆମେରିକାର ନ୍ୟୁୟର୍କ ଠାରେ ଗତ ମେ ୧୩, ୨୦୦୩ରେ ତାଙ୍କର ଯେଉଁ ଅଭିଭାଷଣ ରଖିଥିଲେ ସେଥିରୁ ନିମ୍ନରେ ଆବଶ୍ୟକୀୟ ଅଂଶ ଦିଆଯାଉଛି ।

''ଆମେରିକା ସାମ୍ରାଜ୍ୟ ବର୍ତ୍ତମାନ ଦିଗ୍‌ବିଜୟ ଅଭିଯାନରେ । ଗଣତନ୍ତ୍ର ହେଉଛି ଏହାର ନୂତନ ରଣହୁଙ୍କାର । ଗଣତନ୍ତ୍ର ନାମରେ ସାମ୍ରାଜ୍ୟବାଦ ହିଁ ହେବ ଆଗାମୀ କାଲିର ଲକ୍ଷ୍ୟ । ଗଣତନ୍ତ୍ର ନାମକ ବସ୍ତୁକୁ ସେମାନେ ଆମ ପାଖରେ ପହଞ୍ଚାଇ ଦେବେ । ଗଣତନ୍ତ୍ର ଭଳି ଦୁର୍ମୂଲ୍ୟ ବସ୍ତୁ ସକାଶେ ଲୋକଙ୍କୁ ମୃତ୍ୟୁ ଭଳି ସାମାନ୍ୟ ମୂଲ୍ୟ ପ୍ରାୟ ଦେବାକୁ ପଡ଼ିବ । ନୂଆ ପ୍ରଡକ୍ଟ 'ସାମ୍ରାଜ୍ୟବାଦୀ ଗଣତନ୍ତ୍ର' ପାଇଁ ମୃତ୍ୟୁ ଯେ ଏକ ସାମାନ୍ୟ ମୂଲ୍ୟ ମାତ୍ର । ଏକଦା ଇରାକ

ବେବିଲୋନିଆ ସଭ୍ୟତାର ଅଂଶ ବିଶେଷ ଥିଲା । ଟାଇଗ୍ରିସ୍ ଓ ଇୟୁଫ୍ରେଟିସ୍ ନଦୀ କୂଳରେ ଗଢ଼ି ଉଠିଥିଲା ସେଇ ମହାନ ସଭ୍ୟତା । ସେଠାରେ ଜନ୍ମ ନେଇଥିଲା ପୃଥିବୀର ପ୍ରଥମ ଲିଖନ କଳା, ପ୍ରଥମ କେଲେଣ୍ଡର, ପ୍ରଥମ ଲାଇବ୍ରେରୀ, ପ୍ରଥମ ସହର- ଆଉ ହଁ, ପୃଥିବୀର ପ୍ରଥମ ଗଣତନ୍ତ୍ର ମଧ୍ୟ । ସମ୍ରାଟ ହାମୁରାବିଙ୍କ ସାମାଜିକ ଆଇନ ସଂହିତା କଥା କିଏ ନ ଜାଣେ । ସର୍ବ ପ୍ରଥମେ ସେ ହିଁ ଏ ସଂକ୍ରାନ୍ତୀୟ ଆଇନକୁ ଲିପିବଦ୍ଧ କରିଥିଲେ ସୁଶାସନ ପାଇଁ । ଆଇନରେ ସେ ପରିତ୍ୟକ୍ତା ସ୍ତ୍ରୀ, ବେଶ୍ୟା, ଦାସ ଓ ପଶୁପକ୍ଷୀଙ୍କୁ ମଧ୍ୟ ଅଧିକାର ଦେଇଥିଲେ । ସାମାଜିକ ନ୍ୟାୟରେ ସେଥିଲେ ଜଣେ ଅନନ୍ୟ ପୃଷ୍ଠପୋଷକ । ସେ ଆଇନର ଶାସନ ପ୍ରତିଷ୍ଠା କରିଥିଲେ ।

ସିମିତି ଆଫଗାନିସ୍ଥାନରେ ମୂଳ ଅଧିବାସୀଙ୍କ ପରେ ତାହା ଥିଲା ମହାରଭାରତ ଗାନ୍ଧାର ରାଜ୍ୟ । ପରବର୍ତ୍ତୀ ସମୟରେ ସେଠାରେ ବୌଦ୍ଧ ଧର୍ମର ବିକାଶ ଘଟିଥିଲା ଏବଂ ପରେ ପରେ ସେଠାରେ ପ୍ରବେଶ କରିଥିଲା ଇସ୍‌ଲାମ ଧର୍ମ । ବିଂଶ ଶତାବ୍ଦୀର ସପ୍ତମ ଓ ଅଷ୍ଟମ ଦଶକରେ ଯେତେବେଳେ ଆଫ୍‌ଗାନିସ୍ଥାନରେ ସୋଭିଏତ ରୁଷର ସଖୀ କଣ୍ଢେଇ ସରକାର ଚାଲିଥିଲା- ରୁଷିଆକୁ ସେ ମାଟିରୁ ହଟାଇବା ପାଇଁ ଓସ୍‌ମା ବିନ୍ ଲାଡେନ୍‌କୁ ବହୁ କିସମର ସମରାସ୍ତ୍ର ଯୋଗାଇ ଧର୍ମାନ୍ଧ ଆଲ୍ କାଏଦାକୁ ସେଠାରେ ଶକ୍ତିଶାଳୀ କରିଥିଲା ଆମେରିକା । ଏପରିକି ଏକ ସମୟରେ ସେ ଆମେରିକା ପ୍ରେସିଡେଣ୍ଟ ସିନିୟର ବୁଶ୍‌ଙ୍କର ବିଜିନେସ୍ ପାର୍ଟନର ମଧ୍ୟ ଥିଲା । ଏବେ ବିବାଦ ଉପୁଜିଲା ଯେତେବେଳେ ଲାଡେନ୍ ଇସ୍‌ଲାମ ଧର୍ମ ନାମରେ ମହାପ୍ରତାପୀ ଆମେରିକାର ନବ ସାମ୍ରାଜ୍ୟବାଦୀ କ୍ରିଶ୍ଚିଆନ ଗଣତନ୍ତ୍ର ବିରୁଦ୍ଧରେ ଖୋଲାଖୋଲି ଜେହାଦ୍ ଘୋଷଣା କଲା ।

ସିମିତି ଗଲା ଶତାବ୍ଦୀର ଅଷ୍ଟମ ଦଶକରେ ଯେତେବେଳେ ସଦ୍ଦାମ ହୁସେନ ଅତ୍ୟନ୍ତ ବର୍ବରୋଚିତ ପଦ୍ଧତିରେ ଇରାକର କ୍ଷମତାକୁ ଆସିଲେ, ସେତେବେଳେ ଆମେରିକା ସମସ୍ତ ଭିତ୍ତିଭୂମି ଯୋଗାଇ ଦେଇଥିଲା । ପରେ ଯେତେବେଳେ ୪ ବର୍ଷ ଧରି ଇରାକ-ଇରାନ ଯୁଦ୍ଧ ହେଲା, ସେତେବେଳେ ସଦ୍ଦାମଙ୍କ ପ୍ରଶଂସାରେ ଶତମୁଖ ଥିଲା ଆମେରିକା । କିନ୍ତୁ ଯେତେବେଳେ ତେଲ ଉପରୁ ଆମେରିକାର ସମସ୍ତ ସ୍ୱାର୍ଥ ସମାପ୍ତ କରିବାକୁ ବସିଲା ଇରାକ, ସେତେବେଳେ କୁଏତକୁ ମାଧ୍ୟମ କରି ସୁରୁ ହେଲା ଭୟାବହ ଉପସାଗରୀୟ ଯୁଦ୍ଧ (ଗଲ୍‌ଫୱାର) ଏବଂ ଏବେ ଯାହା ସଦ୍ଦାମ ହୁସେନ୍‌ଙ୍କ ଅବସାନ ଘଟାଇ ଭୟାବହ ଧ୍ୱଂସ ସ୍ତୁପ ଉପରେ ଶେଷ ହେଲା । ପ୍ରକାଶ ଥାଉ କି, ଏ ଯୁଦ୍ଧରେ ପ୍ରାୟ ୫୫ ହଜାର ସୈନିକ ଓ ସାଧାରଣ ଲୋକଙ୍କର ମୃତ୍ୟୁ ଘଟିଛି ।

ଜାତିସଂଘକୁ ଖେଳଣା କଣ୍ଢେଇ କରି ଯୁକ୍ତରାଷ୍ଟ୍ର ଆମେରିକା ଓ ଗ୍ରେଟ୍ ବ୍ରିଟେନର ସାମ୍ରାଜ୍ୟବାଦୀ ଗଣତନ୍ତ୍ର ଆନ୍ତର୍ଜାତିକ ସନ୍ତ୍ରାସବାଦ ଦମନ ନାମରେ ଏ ଦୁଇଟି ଯାକ ଦେଶକୁ

ଛାରଖାର କରିଦେଲେ । ସେଥିପାଇଁ ହଜାର ହଜାର ଟନ୍ ବୋମା ବର୍ଷିଲା, ଶିଶୁ-ନାରୀ-କୃଷକ-ଶ୍ରମିକ ଓ ସାଧାରଣ ନାଗରିକର ଖିନ୍‌ଭିନ୍ ପଚାସଢ଼ା ଶବ ଗଦା ହୋଇଗଲା ଅରଣ୍ୟ-ପର୍ବତରେ, ବରଫ ଉପରେ, ମରୁଭୂମିରେ ଓ ସମୁଦ୍ର ଶଯ୍ୟାରେ । ଯୁଦ୍ଧରେ ବିଭୀଷିକା ପରେ ସେ ଦୁଇଟି ରାଷ୍ଟ୍ରର 'ଇତିହାସର ପୃଷ୍ଠା ଓଲଟାଇଲେ ମିଳିବ ଖାଲି ଧ୍ୱଂସପ୍ରାପ୍ତ ସହର, ଗାଁ ଗଣ୍ଡା; ଫଟା ଭୂଇଁ; ଉଜୁଡ଼ା ଜଙ୍ଗଲ; ଶୁଷ୍କ ନଦୀ; ପୋଡ଼ା ବାଲି; ବିଷାକ୍ତ ସମୁଦ୍ର ଓ ତା' ସହିତ ଧ୍ୱଂସପ୍ରାପ୍ତ ଧରୋହର ।''

ନିକଟରେ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର 'ମାନବାଧିକାର ବିଭାଗ'ର ପ୍ରଫେସର ମାଇକେଲ ଇଗ୍ନାଟିଫ୍ ଗତ ଜାନୁଆରୀ ୨୦୦୩ 'ନ୍ୟୁୟର୍କ ଟାଇମ୍ସ'ରେ ପ୍ରକାଶିତ ଏକ ଲେଖାରେ କହିଛନ୍ତି- ''ଏକବିଂଶ ଶତାବ୍ଦୀର 'ଆମେରିକୀୟ ଇମ୍ପେରିୟମ୍' ରାଜନୀତି ବିଜ୍ଞାନର ଏକ ନୂତନ ଆବିଷ୍କାର । ଏହାର ଚରିତ୍ର ଉପନିବେଶବାଦୀ ଆଭିମୁଖ୍ୟ ଠାରୁ କିଛିଟା ଭିନ୍ନ । ବସ୍ତୁତଃ ଗଣତନ୍ତ୍ର ଇତ୍ୟାଦିର ବ୍ୟାଖ୍ୟା ପ୍ରୟୋଗ କ୍ଷେତ୍ରରେ ଆମେରିକା ତାର ଏକଚାଟିଆ ଅଧିକାର ଓ ନିୟନ୍ତ୍ରଣ ଚାହେଁ ।'' ମାସାଚ୍ୟୁସେଟସ୍ ଇନ୍‌ଷ୍ଟିଚ୍ୟୁଟର ପ୍ରଖ୍ୟାତ ପ୍ରଫେସର ନମ୍‌ଚମସ୍କି ଆମେରିକାର ଇରାକ ଉପରେ ଆକ୍ରମଣକୁ 'ଉଗ୍ର ଜାତୀୟତାବାଦୀ ସାମ୍ରାଜ୍ୟବାଦୀ ହିଂସା' ବୋଲି ଆଖ୍ୟା ଦେଇଛନ୍ତି । ସେ କହିଛନ୍ତି- ଆମେରିକା ବିଭିନ୍ନ ଦେଶମାନଙ୍କରେ ନିଜର ସାମରିକ ଘାଟି ପ୍ରତିଷ୍ଠା କରିବାକୁ ଚାହେଁ । ବିଶ୍ୱ ସମୁଦାୟର ବିରୋଧ ସତ୍ତ୍ୱେ ସେ ଯେକୌଣସି ଦେଶକୁ ଆକ୍ରମଣ କରିପାରେ । ଏହା ପଛରେ ଆମେରିକାର ଅର୍ଥନୈତିକ-ରାଜନୈତିକ-ସାମରିକ ସ୍ୱାର୍ଥ ବିଦ୍ୟମାନ, ଏ କଥା କହିବା ବାହୁଲ୍ୟ ମାତ୍ର ।''

ବିକଳ୍ପ ବିଚାରରେ ସମରେନ୍ଦ୍ର ଦାସଙ୍କ ଏକ ପ୍ରବନ୍ଧରୁ ''ଆନ୍ତରାଷ୍ଟ୍ରୀୟ ସ୍ତରରେ (ଏବେ ଭାରତରେ ଯେପରି 'ଜାତୀୟ ଖଣିଜ ନୀତି'ରେ ବିଦେଶୀଙ୍କ ପ୍ରବେଶକୁ ଢିଲା କରି ଦିଆଯାଇଛି) ଏମାନେ ଏକ ନୂତନ ଆଇନ ପ୍ରବର୍ତ୍ତନ କରିବାକୁ ଯାଉଛନ୍ତି । ଉଦାରବାଦ (ଲିବରାଲାଇଜେସନ୍) ପରି ଏହାର ବି ଏକ ସୁନ୍ଦର ନାମ ଦେଇଛନ୍ତି । ସେଇ ଚୁକ୍ତିଟିର ନାମ ହେଲା 'ପ୍ରଡକ୍ସନ ସେୟାରିଂ ଏଗ୍ରିମେଣ୍ଟ'- 'ଉତ୍ପାଦନ ବଣ୍ଟନ ଚୁକ୍ତି' । ଏମାନେ 'ତେଲ, ଗ୍ୟାସ ଓ ଖଣିଜ ସମ୍ପଦ' (ଯାହାକୁ ଏକ୍ସଟ୍ରାକ୍‌ଟିଭ୍ ଇଣ୍ଡଷ୍ଟ୍ରିଜ୍ ବୋଲି ମଧ୍ୟ କୁହାଯାଏ)ର ଅନ୍ତଃରାଷ୍ଟ୍ରୀୟକରଣ ଚାହାନ୍ତି । ସେମାନେ ଯୁକ୍ତି କରନ୍ତି- ଯେହେତୁ ଏସବୁ ସାରା ପୃଥିବୀର 'ମାନବ ସମାଜ'ର ସଂପତ୍ତି, ତେଣୁ ଏସବୁ ରାଷ୍ଟ୍ର ନୀତିର ଆଇନକାନୁନ ଠାରୁ ଊର୍ଦ୍ଧ୍ୱରେ ରହିବା ଦରକାର । କାରଣ 'ଉତ୍ପାଦନ ବଣ୍ଟନ ଚୁକ୍ତି' ଦ୍ୱାରା ମାଟି ତଳର ସଂପତ୍ତି ଅଂଶୀଦାର ମାନଙ୍କ ଭିତରେ ହିଁ ବଣ୍ଟାବଣ୍ଟି ହୋଇ ପାରିବ । ଏଥିରେ 'ରାଷ୍ଟ୍ର ଓ ପରିବେଶ ଆଇନ'ର

ନାଲି ଆଖି ଦେଖିବାକୁ ପଡ଼ିବ ନାହିଁ । ଏପରି ଭାବରେ ଆଜି ରାଷ୍ଟ୍ରର ସାର୍ବଭୌମତ୍ୱ ପ୍ରତି ବିପଦ ଘନେଇ ଆସୁଛି । ଏଇ ଦାର୍ଶନିକ ମାନଙ୍କ ଷଡ଼ଯନ୍ତ୍ରର ମାୟା ଜାଲ ବହୁତ ଜଟିଳ । ମିଡ଼ିଆ ମାନେ ଆଜି ଏଇ ପ୍ରକାର ସର୍ବଗିଳାଙ୍କ ହାତରେ, ସେମାନଙ୍କୁ ପରିପୁଷ୍ଟ କରୁଛନ୍ତି ।''

ଆଜିକା ପରିପ୍ରେକ୍ଷୀରେ ୨୦୦୧-ମାଲକାନଗିରିର କୁଡମୁଲ ଗୁମ୍ମା ମଇ ଦିବସ ସମାବେଶରେ ମୋ ଦ୍ୱାରା ପଠିତ 'ଲାଲ ପତ୍ର ନୂତନ ପୃଥିବୀ' କବିତାର କେତୋଟି ପଙ୍କ୍ତି ଏଠାରେ ଉଦ୍ଧାର କରୁଛି-

ବିଦେଶରୁ ବହି ଆସେ
ଶଂଖା ଚୁଡ଼ି ଅଳତା ବିନ୍ଦିଆ
ସାର ବିହନ ଓ ଯନ୍ତ୍ରପାତି;
ବହିଆସେ ଗହମ ଚା' ଗୁଣ୍ଡ
ଦୁଧ ଚିନି ସୋୟାବିନ୍ ତେଲ;
ଆଉ ବହି ଆସୁଛନ୍ତି
ତୃତୀୟ ବିଶ୍ୱ ଗିଳି ଦେଉଥିବା
ଡଲାର ପର୍ବତର ମାଲିକମାନେ;
ଚାଷୀ ଆଜି କୁଆଡ଼େ ଯିବ
ଶ୍ରମିକ ବ୍ୟବସାୟୀ
ମୂଲିଆ ବନବାସୀ
ସାଧାରଣ ମରିଷମାନେ ?
କ୍ଷେତ ବାଡ଼ି ତାଙ୍କର
କଳ କାରଖାନା ତାଙ୍କର
ପୁଞ୍ଜି ପ୍ରଯୁକ୍ତି ତାଙ୍କର
ସାରା ଭାରତବର୍ଷ ଆଜି ପେଟେଣ୍ଟ ।

ସେମାନେ ଗଙ୍ଗାକୁ ପିଇ ଦେଇ ପାରିବେ
ହିମାଳୟକୁ ଚୋବେଇ ଦେଇ ପାରିବେ
ଭାରତ ସାଗରକୁ ଶୋଷି ନେଇ ପାରିବେ
ୱାଶିଂଟନ ବଜାରକୁ ।
ଆମର ମହାମହିମମାନେ

ସ୍ୱାଗତ ତୋରଣ ସଜାଇଛନ୍ତି
ସେମାନଙ୍କ ଆସିବା ପାଇଁ,
ଆମର ମହାମହିମ
ଥରକୁ ଥର ଆଣ୍ଡେଇଛନ୍ତି
ଆକୁତି କରିଛନ୍ତି
ମୁକୁଟ ଥୋଇଛନ୍ତି ପାଦ ତଳେ
ସେମାନେ ଆସୁଛନ୍ତି,
ଏଣେ ଗୋଟେ ହାତରେ ଭିକ୍ଷା
ଆଉ ହାତରେ ପରମାଣୁ ଫୁଟୁଛି;
ଏଣେ ସମ୍ବିଧାନ ଧର୍ମ ନିରପେକ୍ଷ
ତେଣେ ମସ୍‌ଜିଦ୍ ଭାଙ୍ଗୁଚି
ଗିର୍ଜା ଭାଙ୍ଗୁଛି
x x x x
କେତେ ଚାତୁରୀରେ
ଶାସକ ଶ୍ରେଣୀର ଦ୍ୱନ୍ଦ
ଦେଶ ପ୍ରେମର ଅଂଜନ କହି
ମାଖି ଦିଆଯାଏ ଆମ ଆଖିରେ
ଯେ ଯୁଦ୍ଧ ଜରୁରୀ !!!
x x x x
କାହା ସେବାରେ
ଆଜି ତମର ନଦୀ ପର୍ବତ
ଅରଣ୍ୟ-ଉପତ୍ୟକା
ରତ୍ନ-ପଥର ପୁଣି ସୁନା ରେଣୁ,
ଗଛର ଫୁଲ ଆଉ ଫଳ
ଜାତି ଜାତିକା ପଶୁ ପକ୍ଷୀ
ରୂପାକାତି ମାଛ
ସବୁ ଯାଏ କୁଆଡ଼େ
କାହା ସ୍ୱାର୍ଥରେ ।

x x x x

ଆଜି କିନ୍ତୁ ବୁଝି ଶୁଝି
ଲଢ଼ିବାକୁ ପଡ଼ିବ
ପୁଣି ଏକ ସ୍ୱାଧୀନତାର ଲଢ଼େଇ
ପୁଣି ଥରେ ବିଦେଶୀ ଆସୁଚି
ତମେ ଦେଖି ପାରୁଚ ନା ନାହିଁ ?
ସେ ସହସ୍ର ବାହୁ
ସହସ୍ର ମସ୍ତକ
ଦିଲ୍ଲୀ ଐରାବତ ଚଢ଼ି
ଘୁରିବୁଲେ ଯମୁନା ତଟରେ,
ସେ ଦୁନିଆ ରାଜ୍ ପେଣ୍ଟାଗନ୍
ତାରକାସୁର ଆମେରିକା,
କାଲିକି ସେ ବଣ୍ଡା ପର୍ବତ
ଆଉ ଡିଡୋଇ ଘାଟି
ଚୂର୍ମାର କରିଦେଇ ପାରେ
ତାର ପଦାଘାତରେ
ଆଉ ଆଦିବାସୀର ଗାଁ ଗଣ୍ଡା
ହଜି ଯାଇପାରେ
ତାର ପରମାଣୁ ଆଁ ଭିତରେ ।

ଆଉ ସିମିତି ଆଜି ଆମ ଭାରତବର୍ଷ ସେଇ ମାନଙ୍କ ଗଣତନ୍ତ୍ରକୁ ଆଦର୍ଶ କରି ନିଜର ଗଣତନ୍ତ୍ରକୁ ସଜେଇ ଦେଇଛି ଯୁଦ୍ଧବେଶ ଏବଂ ଆରମ୍ଭ କରି ଦେଇଛି ଆଦିବାସୀ ଉଚ୍ଛେଦର ସ୍ୱାହା ଯଜ୍ଞ । ଅନ୍ୟ ପକ୍ଷରେ ସେ ମଧ-ଏସିଆରେ ମଧ ଯୁଦ୍ଧ ଘାଟି ନିର୍ମାଣ କରିବା ଆରମ୍ଭ କରିଛି ।

ଏଇ ଉଚ୍ଛେଦର ଚରିତ୍ର କଣ ଅବଶ୍ୟ ଆଜି ମଣିଷକୁ ବୁଝିବାକୁ ପଡ଼ିବ । ଜଙ୍ଗଲକୁ କର୍ପୋରେଟ୍ ଓ କମ୍ପାନୀ ଅକ୍ତିଆରରେ ସଂପୂର୍ଣ୍ଣ ଦେଇ ଦେବା ପାଇଁ ଏଇ ନାରକୀୟ ଆୟୋଜନ ଚାଲିଛି । ଆଜି ଏହା ଅଜଣା ନାହିଁ ଯେ, ଯେତେ ଯାହା ପ୍ରତିରୋଧ ସଂଗ୍ରାମ ଗଢ଼ି ଉଠିଛି ବା ଗଢ଼ି ଉଠିବ, ସବୁ କିଛିକୁ ଧ୍ୱଂସ କରିବା ପାଇଁ ରାଷ୍ଟ୍ରବଦ୍ଧ ପରିକର । ସାମ୍ରାଜ୍ୟ ସାହି ବିଦେଶୀ ପ୍ରଭୁ ପାଇଁ ଏହା ପରମ କର୍ତ୍ତବ୍ୟ । ସେମାନଙ୍କ ସ୍ୱାର୍ଥରେ ସଫଳତାର ସହ

ଏହା କରି ପାରିଲେ ସିନା ଅରଣ୍ୟ-ପର୍ବତରେ ଅବାଧ ଲୁଟ୍‌ର ମାର୍ଗ ଖୋଲା ଯାଇ ପାରିବ । ଗଣତନ୍ତ୍ରର ଧ୍ୱଜା ଫର ଫର ହୋଇ ଆକାଶରେ ଉଡ଼ି ପାରିବ । ଏହା ଏକ ଭୟାନକ ବିରାଟ ପର୍ବର ଅୟମାରମ୍ଭ । ସେଥିପାଇଁ ପ୍ରାଥମିକ ସ୍ତରରେ ପଟ୍ଟା ନଥିବାର ନାରା ଉଠାଇ ଆଦିବାସୀଙ୍କ ଭିତରୁ ଏକ ବଡ଼ ଅଂଶକୁ ଜଙ୍ଗଲ ଜବରଦଖଲକାରୀ କହି ଆଇନର ଦ୍ୱାହି ଦେଇ ଉଚ୍ଛେଦ କରିବା ପାଇଁ ଆଗେଇ ଆସିଛି ସରକାର । ଯାହା ଫଳରେ ପାରମ୍ପରିକ ତଥା ଜନ୍ମଗତ ଭାବେ ସାମରିକ ସଚେତନ ବ୍ୟାପକ ଆଦିବାସୀ ସମାଜ ଭାଗ ଭାଗ ହୋଇ ଦୁର୍ବଳ ହୋଇ ପଡ଼ିବ- ଏବଂ ପରେ ପରେ ଅନ୍ୟ କିଛି ଆଳ ଦେଖାଇ ଅବଶିଷ୍ଟ ଆଦିବାସୀ ସମାଜକୁ ହଟାଇ ସମଗ୍ର ଜଙ୍ଗଲ ଉପରେ କବ୍‌ଜା କରିବା ସହଜ ସାଧ ହେବ । ନ ହେଲେ ୧୯୯୫ରେ ସୁପ୍ରିମ କୋର୍ଟ ଯେଉଁ ନିର୍ଦ୍ଦେଶ ଦେଇଥିଲେ ସେଇ ମୁତାବକ ୧୯୮୦ ମସିହା ଅକ୍ଟୋବର ୨୫ ପୂର୍ବରୁ ଆଦିବାସୀ ଦଖଲ କରିଥିବା ଜଙ୍ଗଲ ଜମିକୁ କାହିଁକି ପଟ୍ଟା ଦିଆଯାଇ ନାହିଁ ? କାହିଁକି ଜଙ୍ଗଲରେ ଥିବା ସେମାନଙ୍କ ଗାଁକୁ ରାଜ୍ୟ ସରକାର ଏଯାଏଁ ରେଭିନ୍ୟୁ ଗାଁର ମର୍ଯ୍ୟାଦା ଦେଇ ନାହାନ୍ତି ? କାରଣ ସେପରି ହେଲେ ଜବରଦଖଲକାରୀ ଆଦିବାସୀମାନଙ୍କର ଆଇନଗତ ଅଧିକାର ଆସିଯିବ- ଏବଂ କର୍ପୋରେଟ କମ୍ପାନୀ ସ୍ୱାର୍ଥରେ ବିସ୍ଥାପିତ କରାଗଲେ ବିପୁଳ କ୍ଷତି ପୂରଣ ଦେବାକୁ ପଡ଼ିବ । ତେଣୁ ଏହି ଉଚ୍ଛେଦ ପଛରେ ଯେ ବିଶ୍ୱବ୍ୟାଙ୍କ, ମୁଦ୍ରାପାଣ୍ଠି ତଥା ବିଶ୍ୱ ବାଣିଜ୍ୟ ସଂଗଠନର ଶକ୍ତିଶାଳୀ ଲବି କାମ କରୁଛି, ଯାହା ପାଖରେ ଆମ ସ୍ୱାଧୀନ ସରକାର ହୋଇପାରେ ଅସହାୟ କମିଶନି ଏଜେଣ୍ଟ ମାତ୍ର- ଏହା ବିଶ୍ୱାସ କରିବାକୁ ପଡୁଛି । ସେଇ ମହାପରାକ୍ରମୀ ମାନେ ଆମ ଦେଶରେ ଶହ ହଜାର କୋଟି ଡଲାର ଲଗାଣ କରିବେ, କିନ୍ତୁ ଚୁକ୍ତି ଅନୁଯାୟୀ ବର୍ଷକୁ ବର୍ଷ ଯାହା ପାଇବେ- ତାହା ମୂଳ ନୁହେଁ- ମାତ୍ର ସୁଧ । ଏବଂ ସେଇ ସୁଧର ପରିମାଣ ଆମର ସମୁଦାୟ ଜାତୀୟ ବାର୍ଷିକ ଆୟର ଶତକଡ଼ା ୨୦ ଭାଗ । ଅନ୍ୟ ଦିଗରେ ସେମାନଙ୍କ ମୂଳ ଚିରକାଳ ଏ ଦେଶରେ ସ୍ଥାୟୀ ମାଲିକ ହୋଇ ରହିବ । ସତ ହେଲା, ସେମାନେ ତାଙ୍କ 'ମୂଳ' (ପୁଞ୍ଜି) ହାତରେ ଶାଙ୍କୁଚ ଲାଙ୍ଗୁଡ଼ ଦେଇ ଆମକୁ ଶାସନ ଓ ଶୋଷଣ କରିବା ପାଇଁ ରଖି ଦେବେ । ଫଳ ସ୍ୱରୂପ ସେଇ ମୂଳ ଅନନ୍ତ କାଳ ଧରି ଭାରତୀୟଙ୍କ କଡ଼ି ଓ ବେଡ଼ି ହୋଇ ବିରାଜମାନ କରିବ ।

## ଆମ ଓଡ଼ିଶାର ଚିତ୍ର

ଆମ ଓଡ଼ିଶାର ମୋଟ ଆୟତନ ୧ ଲକ୍ଷ ୫୫ ହଜାର ୭୦୭ ବର୍ଗ ମାଇଲ । ସେଥିରୁ ୪୦ ଭାଗ ଚାଷ ଜମି; ୩୦ ଭାଗ ସହର ବାଜର ଏବଂ ୩୦ ଭାଗ ଜଙ୍ଗଲ । କିନ୍ତୁ ବୈଜ୍ଞାନିକମାନେ କହନ୍ତି- ସମଗ୍ର କ୍ଷେତ୍ର ଫଳର ଏକ ତୃତୀୟାଂଶ ଜଙ୍ଗଲ ରହିବା ଉଚିତ ।

ସେଇ ବିଚାରରେ ଆମ ରାଜ୍ୟରେ ଆବଶ୍ୟକତାରୁ କମ୍ ରହିଛି ଜଙ୍ଗଲ ।

ଓଡ଼ିଶାରେ ମୋଟ ଜଙ୍ଗଲ ପରିମାଣ ୫୮ ଲକ୍ଷ ୧୩ ହଜାର ୫୪୭ ହେକ୍ଟର । ଏଥିରୁ ଆଦିବାସୀ ସହ ଅନ୍ୟାନ୍ୟ ବନବାସୀ, ଲାଭଖୋର ଜମି ମାଫିଆ ତଥା ବହିରାଗତ ଅନୁପ୍ରବେଶକାରୀ ଦଖଲରେ ଅଛି ୪୭ ହଜାର ୫୦୦ ହେକ୍ଟର । ଯାରି ଭିତରୁ ବନବାସୀ ଦଖଲରେ ଯାହା ଥିବ । ଅନ୍ୟ ଦିଗରେ ଓଡ଼ିଶା ସରକାର ଏ ଯାବତ୍ ଅଣ ଜଙ୍ଗଲ କାର୍ଯ୍ୟ- ଅର୍ଥାତ ଡେମ୍, ଖଣି ଓ ଶିଳ୍ପ ଇତ୍ୟାଦିରେ ଧ୍ୱଂସ କରିଥିବା ସମୁଦାୟ ଜଙ୍ଗଲର ପରିମାଣ ହେଉଛି ୨ ଲକ୍ଷ ୩୭ ହଜାର ୨୦୫ ହେକ୍ଟର ।

ଅନ୍ୟ ଦିଗରେ ତା ୨୯.୫.୦୩ ଏକ ସମ୍ବାଦପତ୍ରର 'ବ୍ୟୁରୋ' ରିପୋର୍ଟରେ ପ୍ରକାଶ ପାଇଛି- ଓଡ଼ିଶାର ଜଙ୍ଗଲ ଅବକ୍ଷୟ ବିପଜ୍ଜନକ ସ୍ତରରେ ପହଞ୍ଚିଛି । ବିକାଶ କାର୍ଯ୍ୟ ନାମରେ ଗତ ୨୦ ବର୍ଷ ମଧ୍ୟରେ ୨୪ ହଜାର ୧୨୪ ହେକ୍ଟର ଜଙ୍ଗଲ ନଷ୍ଟ କରାଯାଇଛି । ୧୯୭୨ ମସିହା ପରଠାରୁ ପ୍ରାୟ ୧୦ ହଜାର ବର୍ଗ କିଲୋମିଟର ଘଂଚ ଜଙ୍ଗଲ ଅବକ୍ଷୟ ହୋଇଛି । ରାଜ୍ୟ ପାଇଁ ଏହି ଅବକ୍ଷୟ ବଢ଼ି ଓ ମରୁଡ଼ି ରୂପରେ ଭୟାବହ ପରିଣାମ ଆଣିଛି ବୋଲି ଯୋଜନା କମିଶନଙ୍କ ଦ୍ୱାରା ପ୍ରସ୍ତୁତ ଓଡ଼ିଶା ଉନ୍ନୟନ ରିପୋର୍ଟରେ ଉଦ୍‌ବେଗ ପ୍ରକାଶ କରାଯାଇଛି । ଏହି ରିପୋର୍ଟ ମୁତାବକ ବିକାଶ କାର୍ଯ୍ୟ ପାଇଁ ସ୍ୱାଧୀନତା ପରଠାରୁ ୩୭ ବର୍ଷ ପର୍ଯ୍ୟନ୍ତ ଯେତିକି ଜଙ୍ଗଲ ନଷ୍ଟ କରା ଯାଇ ନଥିଲା, ୧୯୮୦ ମସିହା ପରଠାରୁ ୧୨ ଗୁଣ ଅଧିକ ଜଙ୍ଗଲ ନଷ୍ଟ କରାଯାଇଛି । ୧୯୮୪-୮୫ ମସିହା ପର୍ଯ୍ୟନ୍ତ ନଦୀ ଉପତ୍ୟକା ପ୍ରକଳ୍ପ ଓ ବାସଚ୍ୟୁତଙ୍କ ଥଇଥାନ କାର୍ଯ୍ୟ ସହ ଶିଳ୍ପାୟନ, ରେଳବାଇ, ଜଳସେଚନ, ରାସ୍ତା ଓ ଅନ୍ୟ ସାଧାରଣ କାର୍ଯ୍ୟ ପାଇଁ ମୋଟ ୨,୦୭୩ ହେକ୍ଟର ଜଙ୍ଗଲ ଅବକ୍ଷୟ ହୋଇଥିଲା । କିନ୍ତୁ ୧୯୮୦ ମସିହା ପରଠାରୁ କେବଳ ଖଣି କାର୍ଯ୍ୟ ପାଇଁ ଏହାର ୩ ଗୁଣ ଅଧିକ ଜଙ୍ଗଲ ନଷ୍ଟ କରାଯାଇଛି । ତାର ହିସାବ ହେଲା- ଖଣି କାର୍ଯ୍ୟ ପାଇଁ ୭,୩୯୭ ହେକ୍ଟର, ଜଳସେଚନ ପାଇଁ ୫,୬୧୬ ହେକ୍ଟର, ସାଧାରଣ ବ୍ୟବହାର ପାଇଁ ୩,୮୬୫ ହେକ୍ଟର, ବିଦ୍ୟୁତ ବିତରଣ ପାଇଁ ୨,୨୭୦ ହେକ୍ଟର, ଶିଳ୍ପାୟନ ପାଇଁ ୨,୩୬୭ ହେକ୍ଟର, ରେଳବାଇ ପାଇଁ ୧,୯୧୦ ହେକ୍ଟର ଓ ରାସ୍ତା ପାଇଁ ୨୧୬ ହେକ୍ଟର ଜଙ୍ଗଲ କାଟି ଦିଆଯାଇଛି । ଏହା ସତ୍ତ୍ୱେ ଓଡ଼ିଶାର ବିକାଶ ସ୍ଥିତିରେ କିଛି ପରିବର୍ତ୍ତନ ହୋଇ ନାହିଁ । ଉନ୍ନୟନ ରିପୋର୍ଟରେ ଦର୍ଶାଯାଇଛି ଯେ, ରାଜ୍ୟରେ ଗତ ୩୦ ବର୍ଷ ମଧ୍ୟରେ ଘଂଚ ଜଂଗଲ ଅଂଚଳର ଉଦ୍‌ବେଗ ଜନକ ହ୍ରାସ ଘଟିଛି । ୧୯୭୨ ମସିହା ସର୍ବେକ୍ଷଣ ଅନୁଯାୟୀ ମୋଟ ଜଂଗଲ ଅଂଚଳର ୭୭.୧୩ ପ୍ରତିଶତ କୃଷି ଉତ୍ପାଦନ ହ୍ରାସ ପରିଲକ୍ଷିତ ହୋଇଛି । ବୃଷ୍ଟିପାତ ଧାରାରେ ପ୍ରତିକୂଳ ପରିବର୍ତ୍ତନ ଘଟିଛି । ତାପ ମାତ୍ରାରେ ବୃଦ୍ଧି ଘଟିଛି ଏବଂ ଭୂତଳ ଜଳସ୍ତର ହ୍ରାସ ପାଇଛି । ମୃତ୍ତିକା ଅବକ୍ଷୟ ହେବା

ଯୋଗୁଁ ମାଟିର ଉତ୍ପାଦନ କ୍ଷମତା କମିବା ସହ ବଢ଼ି ଆଶଙ୍କା ବଢ଼ିଛି । ଏହା ବ୍ୟତୀତ ଜଙ୍ଗଲ ସମ୍ପଦରୁ ଜୀବିକା ନିର୍ବାହ କରୁଥିବା ଆଦିବାସୀମାନେ ଜଙ୍ଗଲ ଅବକ୍ଷୟ ହେବା ଫଳରେ ଜୀବିକା ଶୂନ୍ୟ ହୋଇ ପଡ଼ିଛନ୍ତି । ଏହି ଧାରାକୁ ବଦଳାଇବା ଜରୁରୀ ବୋଲି ଉନ୍ନୟନ ରିପୋର୍ଟରେ ସତର୍କ କରାଇ ଦିଆଯାଇଛି ।

## ବିଶ୍ୱ ପରିବେଶର ଉତ୍ତାପ ବୃଦ୍ଧି

ବିଶ୍ୱ ପରିବେଶର ଉତ୍ତାପ ବୃଦ୍ଧି ଯୋଗୁଁ ଚିରସ୍ରୋତା ଗଙ୍ଗା ନଦୀର ଜଳସ୍ତର ହ୍ରାସ, ଗୁଜରାଟରେ ମ୍ୟାଲେରିଆର ପ୍ରକୋପ ଏବଂ ଓଡ଼ିଶା ଉପକୂଳରେ ବାରମ୍ବାର ବାତ୍ୟା ସୃଷ୍ଟି ହେଉଛି ବୋଲି ଗବେଷକମାନେ ମତ ଦେଇଛନ୍ତି । ବିଶ୍ୱ ଉତ୍ତପ୍ତ ହେବା ଯୋଗୁଁ ଭାରତରେ ଜଳବାୟୁ ପରିବର୍ତ୍ତନ ସହିତ ପଶ୍ଚିମ ଓ କେନ୍ଦ୍ର ଭାରତରେ ବର୍ଷାର ଅନୁପାତରେ ମଧ୍ୟ ବ୍ୟତିକ୍ରମ ଦେଖା ଦେବ ବୋଲି ଏହି ଗବେଷଣାରୁ ଜଣାଯାଇଛି । ବୃଷ୍ଟିପାତ ହାରରେ ବ୍ୟତିକ୍ରମ ନିଶ୍ଚିତ ଭାବେ ଜଳ ପରିମାଣ ଓ କୃଷି ଉପରେ କୁପ୍ରଭାବ ପକାଇବ । ଭାରତର ପରିବେଶ ଉପରେ କରାଯାଇଥିବା ଏହି ଗବେଷଣା ଲବ୍ଧ ରିପୋର୍ଟରୁ ପ୍ରକାଶ, ଗଙ୍ଗୋତ୍ରୀ ତୁଷାର ସ୍ରୋତ କ୍ରମେ ଶୁଖି ଯାଉଥିବାରୁ ଗଙ୍ଗା ନଦୀର ଜଳହ୍ରାସ ପାଉଛି । ହିମାଳୟ ତୁଷାର ସ୍ରୋତ ଗଙ୍ଗୋତ୍ରୀ ଓ ଛୋଟା ସିଗ୍ରୀ କ୍ରମେ ସଂକୁଚିତ ହୋଇ ଯାଉଛି । ଫଳରେ ଗଙ୍ଗା, ଯମୁନା, ଘାଗରା, ସାରଦା ଆଦି ନଦୀରେ ଜଳ କମି ଯାଉଛି ।

ସେହିପରି ଦିଲ୍ଲୀ, କର୍ଣ୍ଣାଟକ ଓ କେରଳର ସହରାଞ୍ଚଳରେ ଡେଙ୍ଗୁ ଜ୍ୱରର ପ୍ରଭାବ ସଂପର୍କରେ ରିପୋର୍ଟରେ କୁହାଯାଇଛି; ତାପମାତ୍ରା ଓ ଆର୍ଦ୍ରତା ବୃଦ୍ଧି ଯୋଗୁଁ ମଶା ସଂଖ୍ୟା ବଢ଼ିବାରେ ଲାଗିଛି । ତା' ସାଂଗକୁ ମଶାଙ୍କ ଶରୀରରେ ସବୁ ପ୍ରକାର ମଶା ନିରୋଧକ ଔଷଧ ପ୍ରତି ସହିବା ଶକ୍ତି ତିଆରି ହୋଇଗଲାଣି । ତେଣୁ ମଶା ମାରିବା ପାଇଁ ସମସ୍ତ ଚେଷ୍ଟା ବିଫଳ ହେଉଛି । ଓଡ଼ିଶାରେ କେନ୍ଦ୍ରାପଡ଼ା ଜଗତସିଂହପୁର, ତାମିଲନାଡୁର ନେଲୋର ଓ ନାଗାପଟ୍ଟନମ୍; ଗୁଜରାଟର ଜୁନାଗଡ଼ ଓ ପୋର ବନ୍ଦର ଜିଲ୍ଲାରେ ପାଣିପାଗ ପରିବର୍ତ୍ତନର କୁପ୍ରଭାବ ଯୋଗୁଁ ସବୁବେଳେ ବାତ୍ୟା ଦେଖା ଦେଉଛି ।

ପଶ୍ଚିମ ଭାରତରେ ବୃଷ୍ଟିପାତ ପରିମାଣ ହ୍ରାସ ପାଉଥିବାରୁ ଗୁଜରାଟର ଉତ୍ତରାଞ୍ଚଳରେ ପ୍ରବାହିତ ସାବରମତୀ ନଦୀ ଏବଂ ରାଜସ୍ଥାନରେ ପ୍ରବାହିତ ଲୁନ୍ ନଦୀରେ ଜଳାଭାବ ଦେଖା ଦେବାର ଆଶଙ୍କା ପ୍ରକାଶ ପାଇଛି, ଯାହା ଦ୍ୱାରା ଏହି ଦୁଇଟି ରାଜ୍ୟ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିବ । ଜଳବାୟୁ ପରିବର୍ତ୍ତନ ଦ୍ୱାରା ମଧ୍ୟ ଭାରତୀୟ ଜଙ୍ଗଲ, ତୃଣ ଭୂମି ଓ ହେନ୍ତାଳ ବଣର ଜୈବ ବିବିଧତା ପ୍ରତି କ୍ଷତି ପହଞ୍ଚିବ । ପରିବେଶ ଉତ୍ତପ୍ତ

ହେବା ଫଳରେ ସମୁଦ୍ର ସ୍ତର ସ୍ଥିତ ହୋଇ ଭାରତର ପୂର୍ବ ଉପକୂଳରେ ଥିବା ହେନ୍ତାଳ ବଣକୁ ବୁଡ଼ାଇ ଦେବ । ଫଳରେ ଉପକୂଳବର୍ତ୍ତୀ ସୁନ୍ଦରବନ ଓ ସନ୍ତସନ୍ତିଆ ସ୍ଥାନର ଲୁଣି ଅଂଶ ବୃଦ୍ଧି ପାଇବ । ରୟାଲ ବେଙ୍ଗଲ ଟାଇଗରଙ୍କ ବାସସ୍ଥଳୀ ଏହି ସୁନ୍ଦରବନ ବିଶ୍ୱ ଐତିହ୍ୟ ଭିତରେ ସ୍ଥାନ ପାଇଛି । ଏହାର ସୌନ୍ଦର୍ଯ୍ୟ ମଧ୍ୟ ନଷ୍ଟ ପାଇବ ବୋଲି ଆଶଙ୍କା ପ୍ରକାଶ ପାଇଛି ।''

ବର୍ତ୍ତମାନ ପ୍ରଶ୍ନ- ବିଶ୍ୱ ଉତ୍ତପ୍ତ ହେଉଛି କାହିଁକି ? କଣ ମାତ୍ରାତିରିକ୍ତ ଭାବେ ଅରଣ୍ୟ ପର୍ବତର ଅବକ୍ଷୟ ? ବ୍ୟାପକ ଭାବେ ଜଳ ଓ ବାୟୁର ପ୍ରଦୂଷଣ ? ଆଖି ବୁଜା ଖଣି-ଖାଦାନ ଖନନ ? ନା ଗୋଟେ ପରେ ଗୋଟେ ଭୟାବହ ଯୁଦ୍ଧ ? ନା ଏସବୁର ମିଳିତ କାରଣ ? କାହିଁକି ଆଜି ବିଶ୍ୱ ଉତ୍ତପ୍ତ ହେବାରେ ଲାଗିଛି ? ଅଥଚ ଆଜି ଅରଣ୍ୟ ଧ୍ୱଂସ ପାଇଁ କେବଳ ଦାୟୀ କରାଯାଉଛି ଆଦିବାସୀଙ୍କୁ, ଯେଉଁମାନେ ଯୁଗ ଯୁଗ ଧରି ଅରଣ୍ୟକୁ ରକ୍ଷା କରି ଆସିଛନ୍ତି ।

## ନଦୀ ଉତ୍ତପ୍ତ ହୁଏ କାହିଁକି ?

**ଦେବାଶିଷ ମିଶ୍ରଙ୍କ ନିବନ୍ଧରୁ :** ଆମ ପୃଥିବୀ କେବଳ ଏକମାତ୍ର ଜୀବନ୍ତ ଗ୍ରହ । ଜଳ ଯୋଗୁଁ ହିଁ ଏଠାରେ ଜୀବନ ସମ୍ଭବ ହୋଇଛି । ଆମେ ପ୍ରାୟ ଦୁଇ ତୃତୀୟାଂଶ ଜଳ ଦ୍ୱାରା ଆବଦ୍ଧ । କିନ୍ତୁ ପ୍ରାୟ ୯୭.୩ ପ୍ରତିଶତ ଜଳ ସମୁଦ୍ରର ଲବଣାକ୍ତ ଜଳ ଆକାରରେ ରହିଛି । ଅବଶିଷ୍ଟ ୨.୭ ପ୍ରତିଶତରୁ ପ୍ରାୟ ୭୦ ପ୍ରତିଶତ ଆଣ୍ଟାର୍କଟିକା ଓ ଗ୍ରିନ୍‌ଲେଣ୍ଡର ବରଫାଚ୍ଛନ୍ନ ଅଂଚଳରେ ଘନୀଭୂତ ହୋଇ ରହିଛି । ଅବଶିଷ୍ଟ ଜଳର ଅଧିକାଂଶ ଭାଗ ମୃତ୍ତିକାର ଆର୍ଦ୍ରତା ଭାବେ ରହିଛି କିମ୍ବା ଭୂତଳ ଜଳଭାବେ ମାଟିର ଅତ୍ୟନ୍ତ ଗଭୀରରେ ଥିବା ଜଳଧାରରେ ଅଛି । ବ୍ୟବହାର ପାଇଁ ମଣିଷ ମାନେ ଏହି ଜଳ ନିକଟରେ ପହଞ୍ଚି ପାରିବେ ନାହିଁ । ଫଳ ସ୍ୱରୂପ ପୃଥିବୀ ଉପରେ ଥିବା ଜଳ ଯାହା ଏକ ପ୍ରତିଶତରୁ କମ୍ ଭାଗ ପ୍ରତ୍ୟକ୍ଷ ବ୍ୟବହାର ଲାଗି ମଣିଷ ପାଖରେ ରହୁଛି । ଏହି ଜଳ ଉପରେ ୭୫୦ କୋଟି ଲୋକଙ୍କ ସହିତ କୋଟି କୋଟି ପ୍ରାଣୀ ଓ ଉଦ୍ଭିଦ ନିର୍ଭର କରିଥାନ୍ତି । ଏହି ମଧୁର ଜଳ ଆମର ନଦୀ, ହ୍ରଦ, ଝରଣା, ପୁଷ୍କରିଣୀ, ଜଳଭଣ୍ଡାର ତଥା ଭୂଗର୍ଭସ୍ଥ କେତେକ ଉତ୍ସରେ ରହିଛି । ପୃଥିବୀର ଏହି କ୍ଷୁଦ୍ରତମ ଜଳଭାଗ ପ୍ରକୃତିର ଜଳଚକ୍ର ଦ୍ୱାରା ନବୀକୃତ ହୋଇଥାଏ । ମନୁଷ୍ୟର କ୍ରୁର ଦୃଷ୍ଟି ପଡ଼ି ଏବେ ସେଇ ମଧୁର ଜଳ ସବୁ ବିଭିନ୍ନ କାରଣରୁ ପ୍ରଦୂଷିତ ହୋଇଗଲାଣି ।

ସହରୀକରଣ, ଜନସଂଖ୍ୟା ବିସ୍ଫୋରଣ, କଳ କାରଖାନାର ବୃଦ୍ଧି ଯୋଗୁଁ ଆମର ବାରିମଣ୍ଡଳ ସଂପୂର୍ଣ୍ଣ ରୂପେ କଳୁଷିତ ହୋଇ ଗଲାଣି । ଦିନକୁ ଦିନ ଶକ୍ତିର ଚାହିଦା ମଧ୍ୟ ବଢ଼ି ବଢ଼ି ଚାଲିଛି । କୋଇଲା, ତୈଳ, ଇନ୍ଧନରୁ ବିଦ୍ୟୁତ୍ ଶକ୍ତିର ଉତ୍ପାଦନ କରାଯିବା ଦ୍ୱାରା ଏହା ଫଳରେ ଯେ କେବଳ ବାୟୁ ପ୍ରଦୂଷଣ ହେଲା ତାହା ନୁହେଁ- ବରଂ ବାରି ପ୍ରଦୂଷଣ

ହେବା ସଂଗେ ସଂଗେ ନଦୀ ଗୁଡ଼ିକର ତାପମାତ୍ରା ବୃଦ୍ଧି ପାଇଲା । ପ୍ରାୟ ସବୁ ଶକ୍ତି କେନ୍ଦ୍ର ଗୁଡ଼ିକରେ ବହୁ ପରିମାଣରେ ଜଳ ଶୀତଳ କରିବା ପାଇଁ ବ୍ୟବହାର କରାଯାଏ ଓ ପରେ ନିକଟସ୍ଥ ନଦୀ ବା ହ୍ରଦକୁ ଛାଡ଼ି ଦିଆଯାଏ ।

ବାୟୁମଣ୍ଡଳର ତାପମାତ୍ରା ବୃଦ୍ଧି ଯୋଗୁଁ ମେରୁ ଅଂଚଳରେ ଥିବା ବରଫ ତରଳି ଯାଇ ସମୁଦ୍ର ପତ୍ତନ ବୃଦ୍ଧି ହେବାର ଆଶଙ୍କା ଦେଖା ଗଲାଣି । କିନ୍ତୁ ଶକ୍ତିକେନ୍ଦ୍ର ଗୁଡ଼ିକରୁ ନିର୍ଗତ ପାଣି ଦ୍ୱାରା ଆମ ନଦୀ ହ୍ରଦ ଆଦି ଉତ୍ତପ୍ତ ହୋଇଯାଉଛନ୍ତି । ନଦୀ ବା ହ୍ରଦ ଗୁଡ଼ିକର ଜଳରାଶିର ଆକସ୍ମିକ ତାପମାତ୍ରା ବୃଦ୍ଧି ପାଇବା ଫଳରେ ଅନେକ ପାରିବେଶିକ ଅସୁବିଧା ସୃଷ୍ଟି ହେଉଛି । ପ୍ରାୟ ପ୍ରତ୍ୟେକ ନଦୀ କିଛି ମାତ୍ର ପର୍ଯ୍ୟନ୍ତ ପ୍ରଦୂଷଣକୁ ବରଦାସ୍ତ କରିପାରେ ।

ନଦୀ ବା ହ୍ରଦରେ ଥିବା ବିଭିନ୍ନ ପରିବେଶୀୟ ବନ୍ଧୁ-ଜୀବାଣୁ ବହୁ ମାତ୍ରାରେ ପ୍ରଦୂଷଣକୁ ରୋକିବାରେ ସକ୍ଷମ ହୋଇଥାନ୍ତି । କିନ୍ତୁ ନଦୀର ତାପମାତ୍ରା ବୃଦ୍ଧି ପାଇବାରୁ ପରିବେଶୀୟ ବନ୍ଧୁ-ଜୀବାଣୁ ଗୁଡ଼ିକ ମରି ଯାଆନ୍ତି । କେବଳ ଏତିକି ନୁହେଁ ପାଣିରେ ଥିବା ଅନେକ ଜୀବଜନ୍ତୁ, ବୃକ୍ଷଲତା ଆଦି ମରି ଯାଆନ୍ତି ।

ନଦୀ ବା ହ୍ରଦ ଜଳର ତାପମାତ୍ରା ବୃଦ୍ଧି ପାଇବା ଫଳରେ ଜଳରେ ଦ୍ରବୀଭୂତ ହୋଇଥିବା ଅମ୍ଳଯାନର ପରିମାଣ କମିଯାଏ । ଜଳରେ ଦ୍ରବୀଭୂତ ହୋଇଥିବା ଅମ୍ଳଯାନ ଉପରେ ପ୍ରାୟ ପ୍ରତ୍ୟେକ ଜଳୀୟ ଜୀବ, ଗୁଳ୍ମ ଆଦି ନିର୍ଭର କରନ୍ତି । ତାର ପରିମାଣ କମ୍ ହୋଇଗଲେ ଜୀବର ସତ୍ତା ଲୋପ ପାଇଯାଏ । ନଦୀର ଅମ୍ଳଯାନ ପରିମାଣ କମ୍ ହେଲେ ପ୍ରଦୂଷଣ ଅବରୋଧକାରୀ ଶକ୍ତି ନଷ୍ଟ ହୋଇଯାଏ । କେତେକ ଅଦରକାରୀ ଜୀବାଣୁ ଅତି ମାତ୍ରାରେ ବଢ଼ି ଯାଆନ୍ତି । ଜୀବାଣୁଙ୍କ ସଂଖ୍ୟା ବୃଦ୍ଧି ପାଇବାରୁ ଅମ୍ଳଯାନର ପରିମାଣ କମିଯାଏ । ନଦୀ ଜଳରେ ଦୁର୍ଗନ୍ଧ ବାରି ହୁଏ । ଜଳର ସ୍ୱାଦ ମଧ୍ୟ ବଦଳି ଯାଏ । ଜଳରେ ଜୀବାଣୁଙ୍କୁ ଖାଲି ଆଖିରେ ଦେଖି ହୁଏ । ନିୟମାନୁଯାୟୀ ଯେକୌଣସି ପରିସ୍ଥିତିରେ ଜଳର ତାପମାତ୍ରା ୫° ସି. (୪୧°ଏଫ୍)ରୁ ଅଧିକ ବଢ଼ାଯାଇ ପାରିବ ନାହିଁ । ନଦୀ ଜଳର ସର୍ବୋଚ୍ଚ ତାପମାତ୍ରା ୨୮° ବା ୮୨° ଏଫ୍‌ରୁ ଉର୍ଦ୍ଧ୍ୱ ହେବା ଉଚିତ ନୁହେଁ । ଏକ ରିପୋର୍ଟ ଅନୁଯାୟୀ ଜର୍ମାନୀର ମେନ୍ ନଦୀର ତାପମାତ୍ରା ୨୩° ସି-୨୪°ସି ହେବାରୁ ବହୁତ ନଦୀର ଜୀବ ମୃତ୍ୟୁମୁଖରେ ପଡ଼ିଥିଲେ ଏବଂ ଏହା କେବଳ ଜଳରେ ଦ୍ରବୀଭୂତ ଅମ୍ଳଯାନ ଅଭାବ ଯୋଗୁଁ ହିଁ ହୋଇଥିଲା । ନିକଟସ୍ଥ ଏକ ତାପଜ ବିଦ୍ୟୁତ କେନ୍ଦ୍ରର କୁଲିଂ ଟାଓ୍ୱାରରୁ ନିର୍ଗତ ପାଣି ମେନ୍ ନଦୀରେ ମିଶିବାରୁ ଏପରି ହୋଇଥିଲା ।

ନଦୀରେ ତାପମାତ୍ରା ବଢ଼ିଲେ ତାହା ଟାଇଫଏଡ୍ ଓ ହଇଜା ସୃଷ୍ଟିକାରୀ ଜୀବାଣୁଙ୍କୁ ବଂଶବୃଦ୍ଧି କରିବାରେ ସାହାଯ୍ୟ କରେ । ଏହିସବୁ ଜୀବାଣୁ ସାଧାରଣ ତାପମାତ୍ରାରେ ବଂଶବୃଦ୍ଧି

କରି ପାରନ୍ତି ନାହିଁ । ଜଳରେ ଥିବା ବିଭିନ୍ନ ପ୍ରକାର ପ୍ରାଣୀ ଯେଉଁମାନେ ଏହି ପ୍ରକାର ଜୀବାଣୁକୁ ଖାଇ ବଂଚନ୍ତି, ତାପମାତ୍ରା ବୃଦ୍ଧି ପାଇବାରୁ ସେମାନେ ମୃତ୍ୟୁମୁଖରେ ପଡ଼ନ୍ତି ଓ ଏହା ଫଳରେ ଏହି ଜୀବାଣୁଙ୍କ ସଂଖ୍ୟା ବୃଦ୍ଧି ପାଇଥାଏ । ପରବର୍ତ୍ତୀ ଅବସ୍ଥାରେ ନଦୀର ନିମ୍ନଭାଗରେ ଅବସ୍ଥାନ କରୁଥିବା ଲୋକ ଏହି ଜଳ ବ୍ୟବହାର କରି ବିଭିନ୍ନ ରୋଗର ଶିକାର ହୁଅନ୍ତି । ଏକ ୧୦୦୦ ମେଗାୱାଟ ବିଶିଷ୍ଟ ତାପଜ ବିଦ୍ୟୁତ କେନ୍ଦ୍ର ପ୍ରତି ସେକେଣ୍ଡରେ ୪୦,୦୦୦ ଲିଟର ପାଣି ଅପଚୟ କରେ ।

ନଦୀର ତାପମାତ୍ରା ବୃଦ୍ଧି ପାଇବାରୁ ନଦୀ ଜଳ ଶୀଘ୍ର ବାଷ୍ପୀକରଣ ହୋଇଯାଏ । ପ୍ରାୟ ୩°ସି (୩୭.୪°ଏଫ୍) ତାପମାତ୍ରା ବୃଦ୍ଧି ପାଇଲେ ଏହା ପ୍ରାକୃତିକ ବାଷ୍ପୀକରଣ ସହ ସମାନ ହୋଇଯାଏ । ଶୀତ ଦିନେ ଏହି ବାଷ୍ପୀକରଣ ହେବା ଯୋଗୁଁ ନଦୀର ଦୁଇ ପାର୍ଶ୍ୱରେ କୁହୁଡ଼ି ସୃଷ୍ଟି ହୋଇଥାଏ । ଏହା ପରବର୍ତ୍ତୀ ଅବସ୍ଥାରେ ଧୂଳିକଣା ଓ ଅନ୍ୟାନ୍ୟ ପ୍ରଦୂଷକଙ୍କ ସହ ମିଶି ସ୍ମଗ୍ ସୃଷ୍ଟି କରିଥାଏ । ନଦୀ ବା ହ୍ରଦ ଜଳର ତାପମାତ୍ରା ବୃଦ୍ଧି ପାଇବାରୁ ଜଳୀୟ ଗୁଳ୍ମ ଓ ଜୀବଜନ୍ତୁ ମରିଯିବା ସହିତ ଜଳରେ ବି.ଓ.ଡି.ର ପରିମାଣ ବଢ଼ିଯାଏ । ଏହି ଜୀବର ଶରୀର ଜଳରେ ପଚି ଯିବାରୁ ନାଇଟ୍ରେଟ୍ ଫସ୍‌ଫେଟର ପରିମାଣ ବଢ଼ିଯାଏ ଓ ଶେଷରେ ଜଳ ଜୀବନୋପଯୋଗୀ ହୋଇ ରହେ ନାହିଁ ଓ ନଦୀର ଅପମୃତ୍ୟୁ ହୋଇଥାଏ ।

ମନୁଷ୍ୟକୃତ କର୍ମ ଯୋଗୁଁ ପୁରାଣ ବର୍ଣ୍ଣିତ ସରସ୍ୱତୀ ନଦୀର ଚିହ୍ନବର୍ଣ୍ଣ ହଜିଗଲା । ଯଦି ଏହିପରି ଭାବେ ନଦୀ ବା ଯେକୌଣସି ମଧୁର ଜଳକୁ ପ୍ରଦୂଷିତ କରି ଚାଲିବା ତେବେ ବହୁତ ଜଲ୍‌ଦି ଆମ ପୃଥିବୀ ଏକ ମୃତ ଗ୍ରହରେ ପରିଣତ ହେବ । ଆମ ରାଜ୍ୟର ଅନୁଗୋଳ ଜିଲ୍ଲାରେ ଦୁଇଟି ତାପଜ ବିଦ୍ୟୁତ୍ କେନ୍ଦ୍ର ଅଛି ଓ ଏହା ଯୋଗୁଁ ନିକଟସ୍ଥ ବାୟୁ ପ୍ରଦୂଷଣ ସହିତ ନଦୀ ପୂର୍ଣ୍ଣ ରୂପେ ପ୍ରଦୂଷିତ ହୋଇ ଗଲାଣି । ରାଜ୍ୟ ପ୍ରଦୂଷଣ ନିରାକରଣ ବୋର୍ଡ ତରଫରୁ ଦର୍ଶା ଯାଇଛି- ଏହି ନଦୀଟି ରାଜ୍ୟର ସବୁଠାରୁ ଅଧିକ କଳୁଷିତ ନଦୀ ।

ରାଜ୍ୟର ଶକ୍ତି ଚାହିଦା ମେଣ୍ଟାଇବାକୁ ଯାଇ ଗୋଟିଏ ପରେ ଗୋଟିଏ ତାପଜ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ କରାଯାଉଛି । କିନ୍ତୁ ଏହା ଭୟଙ୍କର ପରିସ୍ଥିତି ସୃଷ୍ଟି କରିବାକୁ ଯାଉଛି । ଏହାଦ୍ୱାରା ନଦୀ ଉତପ୍ତିକରଣ ଭଳି ଅନେକ ପରିବେଶୀୟ ବିଶୃଙ୍ଖଳା ସୃଷ୍ଟି ହେବ, ଏଥିରେ ସନ୍ଦେହ ନାହିଁ ।

## ବ୍ରାହ୍ମଣୀ ନଦୀର ପ୍ରଦୂଷଣ

ରାଜ୍ୟର ଅନ୍ୟତମ ପ୍ରମୁଖ ଶିଳ୍ପାଞ୍ଚଳ ତାଳଚେର ଓ ଅନୁଗୋଳରେ ବିଭିନ୍ନ କଳକାରଖାନା ଓ ଖଣି କାର୍ଯ୍ୟ ଯୋଗୁଁ ବ୍ରାହ୍ମଣୀ ନଦୀର ଜଳ ପ୍ରଦୂଷିତ ହେବାରେ ଲାଗିଛି । ବ୍ରାହ୍ମଣୀର ପ୍ରଦୂଷଣ କେବଳ ଯେ ତାଳଚେର ନିକଟରୁ ଆରମ୍ଭ ହୋଇଛି ସେ କଥା ନୁହେଁ,

ଏହାର ପ୍ରଦୂଷଣ ଉତ୍ପତ୍ତି ସ୍ଥଳ ହେଉଛି ସୁନ୍ଦରଗଡ଼ ଜିଲ୍ଲା । ରାଉରକେଲା ଇସ୍ପାତ କାରଖାନାର ବର୍ଜ୍ୟ ଜଳକୁ ସଂପୂର୍ଣ୍ଣ ଭାବେ ପ୍ରକ୍ରିୟାକରଣ କରା ନଯାଇ ବ୍ରାହ୍ମଣୀ ନଦୀକୁ ଛଡ଼ା ଯାଉଥିବାରୁ ଏହା ଦ୍ୱାରା ନଦୀ ଜଳ ପ୍ରଦୂଷିତ ହେଉଛି । ପରେ ପରେ ତାଳଚେର ଓ ଅନୁଗୋଳ ଅଂଚଳର ବର୍ଜ୍ୟ ଜଳ ନନ୍ଦିରା ନଦୀ ଦେଇ ବ୍ରାହ୍ମଣୀରେ ମିଶିବା ଫଳରେ ଏହାର ପ୍ରଦୂଷଣ ତ୍ୱରାନ୍ୱିତ ହେଉଛି । ଅନୁଗୋଳରେ ଥିବା ଜାତୀୟ ଆଲୁମିନିୟମ କମ୍ପାନୀ- ନାଲ୍କୋର ନିଜସ୍ୱ ତାପଜ ବିଦ୍ୟୁତ୍ କେନ୍ଦ୍ର; ତାଳଚେରରେ ଥିବା ଜାତୀୟ ତାପଜ ବିଦ୍ୟୁତ୍ କେନ୍ଦ୍ର ଏବଂ କୋଇଲା ଖଣି ଯୋଗୁଁ ଏହି ନଦୀ ପ୍ରଦୂଷିତ ହେବାରେ ଲାଗିଛି । ତାଳଚେର ନିକଟରେ ପ୍ରବାହିତ ନନ୍ଦିରାରେ ଏକଦା ସ୍ୱଚ୍ଛ ଜଳ ପ୍ରବାହିତ ହେଉଥିଲା । ଏହି ନଦୀକୂଳରେ ବସବାସ କରୁଥିବା ଜନସାଧାରଣ ନନ୍ଦିରା ଜଳକୁ ପାନୀୟ ଜଳଭାବେ ବ୍ୟବହାର କରୁଥିଲେ । ଏହି ଜଳ ମଧ୍ୟ ଚାଷବାସ କାର୍ଯ୍ୟ ପାଇଁ ବ୍ୟବହାର କରାଯାଉଥିଲା । କିନ୍ତୁ ଖଣି ଖନନ ଓ କଳ କାରଖାନା ଯୋଗୁଁ ଏହି ନଦୀରେ ଏବେ କେବଳ କଳା ରଙ୍ଗର ଜଳ ପ୍ରବାହିତ ହେଉଛି । ନନ୍ଦିରାର ଦୂଷିତ ଜଳ ଯୋଗୁଁ ବେଳେ ବେଳେ ବ୍ରାହ୍ମଣୀରେ ମାଛ ମରି ଭାସୁଥିବାର ମଧ୍ୟ ଦେଖାଯାଉଛି । ଯଦି ଏହି ଧାରା ଅବ୍ୟାହତ ରହେ ତାହେଲେ ଆଗାମୀ ଦିନରେ ବ୍ରାହ୍ମଣୀକୁ ମଧ୍ୟ ନନ୍ଦିରାର ଅବସ୍ଥା ଭୋଗ କରିବାକୁ ପଡ଼ିବ । ଏଠାରେ ପ୍ରକାଶ ଥାଉ କି, ୨୦୦୧ ମସିହାରେ ନାଲ୍କୋର 'ଆସ୍ ପଣ୍ଡ୍' ଭାଙ୍ଗି ବ୍ରାହ୍ମଣୀରେ ଗୁରୁତର ପ୍ରଦୂଷଣ ସମସ୍ୟା ସୃଷ୍ଟି କରିଥିଲା । ସେତେବେଳେ ତଳିଆ ଅଂଚଳର ଜନସାଧାରଣଙ୍କ ପାଇଁ ଏହି ନଦୀର ଜଳ ବ୍ୟବହାର ସଂପୂର୍ଣ୍ଣ ଅନୁପଯୁକ୍ତ ହୋଇ ପଡ଼ିଥିଲା । ଫଳରେ ନଦୀ ତଟବର୍ତ୍ତୀ ଗ୍ରାମବାସୀ ମାନଙ୍କ ମଧ୍ୟରେ ପ୍ରବଳ ଅସନ୍ତୋଷ ସୃଷ୍ଟି ହୋଇଥିଲା । ସିମିତି ବାଲେଶ୍ୱର ସହର ନିକଟବର୍ତ୍ତୀ ରେମୁଣା ଶିଳ୍ପାଞ୍ଚଳ, ବିଶେଷ କରି ଇମାମୀ ପେପର ମିଲ୍ ଦ୍ୱାରା ପ୍ରଦୂଷିତ ଏକ ନାଳର ଜଳ ଶୁନ ନଦୀରେ ମିଶିବାରୁ ସେ ନଦୀର ଜଳ ଏବେ ଆଉ ପାନୀୟ ଉପଯୋଗୀ ହୋଇ ନାହିଁ ।

## ଜଣେ ଶିକ୍ଷାବିତ୍‌ଙ୍କ ମତାମତ

ଓଡ଼ିଶା ଗବେଷଣା ଚକ୍ର ଦଶମ ବାର୍ଷିକ ସମ୍ମିଳନୀ, ଜୁନ୍ ୨୮-୨୯ ରାଉରକେଲା ଠାରେ ପ୍ରଫେସର ମନୋରଂଜନ ମହାନ୍ତି କହିଛନ୍ତି- (ସ୍ୱାଭିମାନରୁ ସଂଗୃହୀତ) ଆଜି ତୃତୀୟ ବିଶ୍ୱର ବହୁ ସଚେତନ ଲୋକ କୁହନ୍ତି- ମାନବ ସଭ୍ୟତାର ଇତିହାସ ପ୍ରକୃତି ଉପରେ ମନୁଷ୍ୟର ଅକ୍ତିଆରର ଇତିହାସ ନୁହେଁ । ମଣିଷ ଓ ପ୍ରକୃତି ମଧ୍ୟରେ ପରସ୍ପରର ନିର୍ଭରଶୀଳ ସଂପର୍କ ଉପରେ ହିଁ ସଭ୍ୟତା ଗଢ଼ି ଉଠିଛି । ସଭ୍ୟତାର ଇତିହାସ ହେଲା, ପ୍ରକୃତିର ନିୟମ ବିଷୟରେ ଜ୍ଞାନ ଅର୍ଜନ କରି ମଣିଷ କିପରି ଏକ ସମତାପନ୍ନ, ନ୍ୟାୟବନ୍ତ, ସୁଖୀ ସମାଜ ଗଠନ କରିବା

ପାଇଁ ଉଦ୍ୟମ କରି ଚାଲିଛି, ତାରି ଇତିହାସ । ପ୍ରକୃତିକୁ ଯେତେ କମ୍ ବଦଳେଇ ମଣିଷ ତାର ସମାଜ ଚଳେଇ ପାରିବ ସେତେ ଭଲ । ଆମର ମନେ ରଖିବା ଉଚିତ ଆମେ ବିଜ୍ଞାନ, ସମାଜ ଶାସ୍ତ୍ର ଓ କଳାର ଅଧ୍ୟୟନ କରିଥାଉ । ଆଜି ଇତିହାସର ପରିଭାଷା ସେଇ ଅନୁସାରେ ବଦଳାଇ ବୁଝିବାକୁ ହେବ ।

କିନ୍ତୁ ସମାଜରେ କ୍ଷମତାଶୀଳ ଓ ଧନୀ ଲୋକେ କେବେ ହେଲେ ଏ ଆଭିମୁଖ୍ୟ ଗ୍ରହଣ କରନ୍ତି ନାହିଁ । ସେମାନେ ସବୁ ଜିନିଷକୁ ପୁଞ୍ଜିରେ ପରିଣତ କରି ତା ଦ୍ୱାରା ସମାଜର ଧନ ବଢ଼ାଇବା ନାଁରେ ନିଜ କ୍ଷମତା ଓ ସଂପତ୍ତି ବଢ଼ାଇବାରେ ଲାଗନ୍ତି । ସେମାନଙ୍କର ତତ୍ତ୍ୱ ହେଲା ଯେ, ମଣିଷର ଜ୍ଞାନ ବଢ଼ିବା ସଂଗେ ସଂଗେ ନୂଆ ଉପାୟ ବାହାର କରି ପ୍ରାକୃତିକ ସମ୍ପଦର ବ୍ୟବହାର କରିବା । ତା' ଦ୍ୱାରା ମଣିଷ ଜୀବନ ଆହୁରି ସୁଖମୟ ହେବ । ଏଇ କଥା କହି ପଶ୍ଚିମ ଦେଶର ପୁଞ୍ଜିଶକ୍ତିବଢ଼ି ଚାଲିଛି । ପୃଥିବୀର ଯେଉଁଠି ଖଣିଜ ସମ୍ପଦ ଥାଉ ନା କାହିଁକି ସେଠି ଅବାଧରେ ପଶ୍ଚିମର କମ୍ପାନୀମାନେ ପହଞ୍ଚି ପାରନ୍ତୁ, ତାହା ହିଁ ବିଶ୍ୱୀକରଣର ମୂଳ ଦାବି । ସେଇ ଆଳରେ ଉପନିବେଶ ବାଦ ମଧ୍ୟ ଆଗେଇ ଥିଲା ।

ଏହି ଉତ୍ପାଦନ ପ୍ରକ୍ରିୟା ଦ୍ୱାରା ସମାଜର ବୈଷମ୍ୟ ବୃଦ୍ଧି ପାଉଛି, ରାଜନୀତି ଏବଂ ଅର୍ଥନୀତିରେ କେନ୍ଦ୍ରୀକରଣ ହେଉଛି ଏବଂ ପ୍ରାକୃତିକ ସମ୍ପଦର ଅବକ୍ଷୟ ଘଟୁଛି । ଫଳତଃ ଏହି ବିକାଶ ଧାରାର ପ୍ରତିରୋଧ ହେବା ସୁନିଶ୍ଚିତ ହୋଇପଡୁଛି ।

ଭୂତଳ ସମ୍ପଦର ବ୍ୟବହାରର ଅଧିକାର ମନୁଷ୍ୟର ରହିଛି । କୋଇଲା, ଲୁହାପଥର ଠାରୁ ଆରମ୍ଭ କରି ତେଲ ଓ ପାଣି ପର୍ଯ୍ୟନ୍ତ ଆମେ  ସେଠୁ ନେଉ । କିନ୍ତୁ ଏହାକୁ ଏକ ଶିଳ୍ପ କୈନ୍ଦ୍ରିକ ବ୍ୟବସାୟରେ ପରିଣତ କରି ସେଥିରୁ ଲାଭ ଉଠାଇବା ହେଲା ୟୁରୋପର ଗଲା ୩୦୦ ବର୍ଷର ଇତିହାସ । ପୁଞ୍ଜିବାଦ ତାରି ଭିତ୍ତିରେ ପ୍ରତିଷ୍ଠା ହେଲା ଏବଂ ୟୁରୋପୀୟ ଶିଳ୍ପ କାରିଗରୀ ଓ ସମର ଶକ୍ତିକୁ ଅସ୍ତ୍ର କରି ସାରା ପୃଥବବୀରେ ଉପନିବେଶବାଦ ପ୍ରସାର କଲା ।

ତା ସଂଗେ ସଂଗେ ପ୍ରଗତିର ଗୋଟିଏ ନୂଆ ସଂଜ୍ଞା ଇଉରୋପ ଦେଲା, ଯେ ଖଣିଜ ପଦାର୍ଥ ଭିତ୍ତିକ ସହରୀ ସଭ୍ୟତା ହେଲା ମନୁଷ୍ୟର ଭବିଷ୍ୟତ । ତା ସହିତ ଜଙ୍ଗଲର କାଠ ଓ ଅନ୍ୟାନ୍ୟ ସମ୍ପଦକୁ ମିଶାଇ ଏ ବିକାଶ ପ୍ରକ୍ରିୟା ଆଗେଇଲା ।

ଉପନିବେଶୀୟ ତତ୍ତ୍ୱର ଗୋଟିଏ ସ୍ପଷ୍ଟ ଉଦାହରଣ ହେଲା, ଓଡ଼ିଶାରେ ଚାଲିଥିବା ବିକାଶ ପ୍ରକ୍ରିୟା ସ୍ୱାଧୀନତା ପରେ ମଧ-ଯୋଜନା କାଳଠାରୁ ଆରମ୍ଭ କରି ଉଦାରବାଦୀ ଅର୍ଥନୀତି ପର୍ଯ୍ୟନ୍ତ ସେଇ ଆଭିମୁଖ୍ୟରେ ଚାଲିଛି । ତା ହେଲା- କିପରି ଓଡ଼ିଶାର ଖଣିଜ ସମ୍ପଦ ଓ ବନ୍ୟ ସମ୍ପଦକୁ ବ୍ୟବହାର କରି ସହରୀ ପୁଞ୍ଜିବାଦର ବିକାଶକୁ ଓଡ଼ିଶା ବାହାରେ ତ୍ୱରାନ୍ୱିତ କରିବା ।

ଓଡ଼ିଶାର ଶସ୍ତା କଂଚାମାଲ ଓ ଦରିଦ୍ର ଓଡ଼ିଆଙ୍କର ଶସ୍ତା ଶ୍ରମର ଅସତ୍ ବ୍ୟବହାର କରି, ଉପଯୁକ୍ତ ମୂଲ୍ୟ ନ ଦେଇ ଏହି ଅସତ୍ ରାଜନୈତିକ ଅର୍ଥନୀତିକୁ ଚାଲୁ ରଖିବା ।

ଏ ଖଣି ଭିତ୍ତିକ ଅର୍ଥନୀତିର ପ୍ରକୃତ ରୂପ କ'ଣ ? ସେ କାରଖାନା ଗୁଡ଼ିକ କେବଳ ଖଣିଜ ପଦାର୍ଥକୁ କିଛି ମାତ୍ରାରେ ପ୍ରସେସିଂ କରାନ୍ତି, ତା ପରେ ଉତ୍ପାଦନ ଦ୍ରବ୍ୟ ଅନ୍ୟ ଯାଗାକୁ ବା ବିଦେଶକୁ ପଠାଯାଏ । ଉଦାହରଣ ସ୍ୱରୂପ କେନ୍ଦୁଝରର ଲୁହାପଥର ଓ ତାଳଚେର କୋଇଲାରୁ ରାଉରକେଲା କାରଖାନାରେ ଇସ୍ପାତ ଖଣ୍ଡ ବା ଛଡ଼ ତିଆରି କରାଯାଏ । ତାହା ଲୁଧିଆନା, ଅହମ୍ମଦାବାଦ ବା ଅନ୍ୟ ସ୍ଥାନକୁ ଯାଇ ସେଠିକା କାରଖାନାରେ ସେଥିରୁ ନାନା ପ୍ରକାର ଖାଉଟି ଦ୍ରବ୍ୟ ତିଆରି କରାଯାଏ । ଅଶି ଦଶକରେ ନାଲ୍‌କୋ ହେଲା ବେଳେ ଖୁବ୍ ଆଶା ଥିଲା ଆଲୁମିନିୟମ ଭିତ୍ତିକ ଜିନିଷ ତିଆରି କାରଖାନା ମଧ୍ୟ ଓଡ଼ିଶାରେ ବସିବ । ତାହା ହେଲା ନାହିଁ । ଆଲୁମିନା ଦେଶ ବିଦେଶକୁ ପଠା ଯାଉଛି । ସେଇଥିପାଇଁ ଯେତେବେଳେ ଗୋପାଳପୁରରେ ଟାଟା କମ୍ପାନୀର ଆଉ ଗୋଟିଏ ଇସ୍ପାତ କାରଖାନା ହେବାକୁ ବସିଲା ଲୋକେ ବିରୋଧ କଲେ । ଖଣି ଭିତ୍ତିକ ଶିଳ୍ପର ଅନ୍ୟାନ୍ୟ ଦିଗର ଗୁରୁତ୍ୱ ରହିଛି । ଏ ସବୁ ଅଂଚଳରେ ସାଧାରଣତଃ ଆଦିବାସୀ ବାସ କରନ୍ତି । ସେଇମାନଙ୍କୁ ବାସଚ୍ୟୁତ ହେବାକୁ ପଡ଼େ । ତାହା ଦେଶର ବୃହତ ସ୍ୱାର୍ଥ ପାଇଁ ଆବଶ୍ୟକ କହି ଏଡ଼ାଇ ଦିଆଯାଏ । ତା ସଂଗେ ସଂଗେ ପ୍ରଦୂଷଣ ଜନିତ ଯେଉଁ ସମସ୍ୟା, ସେ ବିଷୟରେ ବହୁ ଚର୍ଚ୍ଚା ହେଲାଣି । ପ୍ରାକୃତିକ ସମ୍ପଦ ସୁରକ୍ଷା ଆନ୍ଦୋଳନ ବିଭିନ୍ନ ସ୍ଥାନରେ ବହୁ ଅତ୍ୟାଚାରର ସମ୍ମୁଖୀନ ହୋଇ ଏ ସବୁ ବିଷୟରେ ଲୋକ ମତ ସୃଷ୍ଟି କରିଛନ୍ତି । ସ୍ଥାନୀୟ ସମ୍ପଦ ଉପରେ ସ୍ଥାନୀୟ ଲୋକଙ୍କର ଅଧିକାରକୁ ଭିଟାମାଟି ଅଧିକାର ବା 'ରାଇଟ୍ ଟୁ ଆର୍ଥ' ବୋଲି ଏକ ମାନବୀକ ଅଧିକାର ସ୍ତରକୁ ନିଆଯାଇଛି । ସ୍ଥାନୀୟ ଲୋକଙ୍କ ସମ୍ମତି ଏବଂ ନିର୍ଦ୍ଦିଷ୍ଟ ସାମାଜିକ ଓ ପରିବେଶଗତ ପରୀକ୍ଷା ବିନା କୌଣସି ପ୍ରକଳ୍ପ ଆରମ୍ଭ ନ ହେଉ ଏ ସଂକ୍ରାନ୍ତରେ ବିଶ୍ୱସାରା ଜନମତ ସୃଷ୍ଟି ହେଲାଣି । ଅନ୍ୟ ଦିଗରେ ଦଳର ରାଜନେତା ମାନେ ଖଣି ଭିତ୍ତିକ ଶିଳ୍ପ ପ୍ରସାରଣକୁ ଜୋର୍‌ସୋର୍‌ରେ ସମର୍ଥନ କରନ୍ତି । ବାସ୍ତବରେ ତାର ଦୁଇଟି କାରଣ ଥାଏ । ପ୍ରଥମଟି ହେଲା, ନିର୍ବାଚନ ରାଜନୀତି ଚଳେଇବା ପାଇଁ ଯୋଉ ଅର୍ଥ ଦରକାର, ତାହାର ଏକ ବଡ଼ ଅଂଶ ଖଣି ନିଲାମଧାରୀଙ୍କ ଠାରୁ ଆସେ । ନିର୍ବାଚନ ଯେତେ ଅର୍ଥ ବହୁଳ ହେଉଛି, ସେତେବେଶୀ ଶିଳ୍ପ ଦରକାର । ଓଡ଼ିଶା ଇତିହାସରେ ଖଣି ମାଲିକଙ୍କୁ ନେଇ ଦୁର୍ନୀତିର ବହୁ ଉଦାହରଣ ରହିଛି । ଏବେ କମିଶନ ଭିତ୍ତିକ କାରବାର ବିଶ୍ୱୀକରଣର ଏକ ସାଧାରଣ କଥା । ଦ୍ୱିତୀୟ ହେଲା, ଓଡ଼ିଶାର ବଜେଟ୍ ପାଇଁ ଖଣିର ରୟାଲଟି ହେଲା ଗୋଟିଏ ବଡ଼ ଭଣ୍ଡାର । ଟିକସକୁ ଛାଡ଼ି ସରକାରଙ୍କର ଯେଉଁ ଆୟ ତାର ଅଧାରୁ ବେଶି ଖଣି ରୟାଲଟି ଓ ତା ଉପରେ ବସିଥିବା

ସେଥିରୁ ଆସିଥାଏ । (୨୦୦୧-୨୦୦୨ରେ ଏହା ଶତକଡ଼ା ୫୩.୩୫ ଥିଲା) । ତେଣୁ ସରକାର ଚଳେଇବାକୁ ହେଲେ ଖଣିଜ ପଦାର୍ଥକୁ ବ୍ୟବହାର କରିବାକୁ ହେବ । ବେଳେ ବେଳେ ଏଥିରୁ ଆୟ କମିଗଲେ ସରକାର ବ୍ୟତିବ୍ୟସ୍ତ ହୋଇ ଯାଆନ୍ତି । (୧୯୯୯-୨୦୦୦ରେ ୪୪.୭୩ ହୋଇ ଯାଇଥିଲା) ।

## ବିଧାନସଭାରେ ଖଣି ଲିଜ୍ ଚଞ୍ଚକତା

ଜିନ୍ଦଲ୍ କମ୍ପାନୀକୁ ଟାଙ୍ଗରପଡ଼ା କ୍ରୋମ ଖଣି ଲିଜ୍ ଦିଆଯିବାରେ ଚଂଚକତା କରାଯାଇଥିବା ଘଟଣାକୁ ନେଇ ଦେଖା ଦେଇଥିବା ବିବାଦ କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ଏହି ଘଟଣାର ତଦନ୍ତ କରୁଥିବା ବିଧାନସଭାର ଗୃହ କମିଟି ଏବେ ଭୂତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା (ଜି.ଏସ୍.ଆଇ.)ର ସହଯୋଗ ଲୋଡ଼ିଛନ୍ତି । ଉକ୍ତ ଖଣିରୁ କ୍ରୋମ ଉତ୍ତୋଳନ ନେଇ ଜିନ୍ଦଲ ଓ ଟାଟା ପକ୍ଷରୁ ଯେଉଁ ପୃଥକ ପୃଥକ ମୂଲ୍ୟ ନିର୍ଦ୍ଧାରଣ କରାଯାଇଛି, ସେଥିରେ ପ୍ରକୃତରେ କେଉଁଟା ସତ୍ୟ ତାହା ଜାଣିବା ପାଇଁ କମିଟି ପକ୍ଷରୁ ଏହି ପଦକ୍ଷେପ ନିଆଯାଇଛି । ଆସନ୍ତା ୧୭ ତାରିଖରେ କମିଟିର ପରବର୍ତ୍ତୀ ବୈଠକ ଅନୁଷ୍ଠିତ ହେବ ବୋଲି ଧାର୍ଯ୍ୟ କରାଯାଇଛି । ଏଥିରେ ଯୋଗ ଦେବା ପାଇଁ ଜି.ଏସ୍.ଆଇ.ର ନିର୍ଦ୍ଦେଶକଙ୍କୁ ଡକା ଯାଇଛି ।

ଟାଙ୍ଗରପଡ଼ା କ୍ରୋମ୍ ଖଣି ଲିଜ୍ ନେବା ପାଇଁ ଟାଟା, ଜିନ୍ଦଲ ଓ ଭିସା ଇଣ୍ଡଷ୍ଟ୍ରିଜ୍ ପକ୍ଷରୁ ଶିଳ୍ପ ଉନ୍ନୟନ ନିଗମ (ଆଇଡିସି)କୁ ଆବେଦନ କରାଯାଇଥିଲା । କାରଣ ଆଇଡିସି ଅଧୀନରେ ଏହି କ୍ରୋମ ଖଣି ରହିଛି । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ଆଇ.ଡି.ସି.ର କର୍ତ୍ତୃପକ୍ଷ ଆବେଦନ କରିଥିବା ଏହି ୩ଟି କମ୍ପାନୀଙ୍କ ଆର୍ଥିକ ବିଡ୍ (ଫାଇନାନ୍ସିଆଲ୍ ବିଡ୍) ଖୋଲା ନ ଯାଇ ଜିନ୍ଦଲ୍ ସପକ୍ଷରେ ଲିଜ୍ ପ୍ରଦାନ ପାଇଁ ସୁପାରିଶ କଲେ । ମୁଖ୍ୟମନ୍ତ୍ରୀ, ଶିଳ୍ପ ମନ୍ତ୍ରୀ ଏବଂ ଆଇଡିସିର ତତ୍କାଳୀନ ଅଧକ୍ଷ ଷଡ଼ଯନ୍ତ୍ର କରି ଜିନ୍ଦଲଙ୍କୁ ଅନୁଚିତ ଅନୁଗ୍ରହ ପ୍ରଦର୍ଶନ କରାଯାଇଥିବା କଥା ଲୋକଲୋଚନକୁ ଆସିବା ଦ୍ୱାରା ବିଧାନସଭାରେ ତୁମ୍ୱିତୋଫାନ ସୃଷ୍ଟି ହୋଇଥିଲା । ଏହି ଘଟଣାରେ ସରକାରଙ୍କର ପଦକ୍ଷେପ ପ୍ରତି ଶାସକ ଦଳ ବିଧାୟକ ମାନେ ମଧ ସନ୍ଦେହ ପ୍ରକାଶ କରିଥିଲେ । ଫଳରେ ଗତ ବଜେଟ୍ ଅଧିବେଶନ ସମୟରେ ଏଥିନେଇ ଶିଳ୍ପମନ୍ତ୍ରୀଙ୍କ ଅଧକ୍ଷତାରେ ୧୧ ଜଣିଆ ଗୃହକମିଟି ଗଠନ କରାଯାଇଥିଲା । କମିଟି ତଦନ୍ତ ଜାରି ରଖିଛନ୍ତି । ଗତ ଅଗଷ୍ଟ ୧୧ ତାରିଖରେ ଜିନ୍ଦଲ ଓ ଟାଟାର ଆର୍ଥିକ ବିଡ୍ ଖୋଲା ଯିବା ପରେ ପ୍ରକୃତ ତଥ୍ୟ ଲୋକଲୋଚନକୁ ଆସିଲା । ଆଇଡିସି ପକ୍ଷରୁ ଜାଣିଶୁଣି ଆର୍ଥିକ ବିଡ୍ ଖୋଲା ଯାଇ ନଥିବା ସ୍ପଷ୍ଟ ହୋଇଛି । ଆର୍ଥିକ ବିଡ୍‌ର ପ୍ରତ୍ୟେକ କ୍ଷେତ୍ରରେ ଜିନ୍ଦଲ ପଛରେ ରହିଥିବା ଜଣାପଡ଼ିଛି ।

ସବୁଠୁଁ ବୈଚିତ୍ର୍ୟ ହେଲା, ଜିନ୍ଦଲ ସୁକିନ୍ଦା କ୍ରୋମ୍ ଖଣି ପାଇଁ ଯେଉଁ ବ୍ୟୟ ଅଟକଳର ହିସାବ, ତାହାକୁ ଟାଙ୍ଗରପଡ଼ା ପାଇଁ ଦର୍ଶାଇଛି । କିନ୍ତୁ ପ୍ରକୃତରେ ଟାଙ୍ଗରପଡ଼ା ଖଣି ଉତ୍ତୋଳନ ଲାଗି କେତେ ବ୍ୟୟ ହେବ, ତାହା ଜାଣିବା ପାଇଁ ଗୃହ କମିଟି ଡି.ଏସ୍.ଆଇ.ର ମତାମତ ଲାଗି ସଂସ୍ଥାର ନିର୍ଦ୍ଦେଶକଙ୍କୁ ଡାକିଛନ୍ତି । ୧୭ ତାରିଖ ବୈଠକରେ ଏହା ଆଲୋଚନା କରାଯିବ ।

କମିଟିର ସଭ୍ୟ ଥିବା ସି.ପି.ଆଇ. ବିଧାୟକ ଟାଙ୍ଗରପଡ଼ା ଖଣି ଉତ୍ତୋଳନ ଲାଗି ପ୍ରକୃତରେ କେତେ ଅର୍ଥ ଆବଶ୍ୟକ, ସଠିକ ତଥ୍ୟ ନ ଦେଇ ଭୁଲ ତଥ୍ୟ ଦେଇଥିବାରୁ ଜିନ୍ଦଲର ବୈଷୟିକ ବିଡ୍‌କୁ ବାତିଲ କରିବା ସହିତ ଟାଙ୍ଗରପଡ଼ା ପାଇଁ ହୋଇଥିବା ଟେଣ୍ଡରକୁ ରଦ୍ଦ କରିବା ନିମନ୍ତେ ପ୍ରସ୍ତାବ ଦେଇଛନ୍ତି । ତା୧୭.୩.୨୦୦୩ରେ ଟାଙ୍ଗର ପଡ଼ା କ୍ରୋମାଇଟ୍ ଖଣି ଟେଣ୍ଡର ଦୁର୍ନୀତିର ତଦନ୍ତ କରୁଥିବା ଗୃହ କମିଟିର ବୈଠକ ବସିଥିଲା । ଏଠାରେ ଉପସ୍ଥିତ ରହି ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା (ଜିଏସ୍ଆଇ)ର ନିର୍ଦ୍ଦେଶକ ବି.କେ. ମହାନ୍ତି ଟାଙ୍ଗରପଡ଼ା ଖଣିରେ କ୍ରୋମାଇଟ୍‌ର ସନ୍ଧାନ ଓ ଉତ୍ତୋଳନ ଲାଗି ଜିନ୍ଦଲ ଷ୍ଟ୍ରିପ୍ସ ତା'ର ଆର୍ଥିକ ବିଡ୍‌ରେ ଯେଉଁ ପୁଞ୍ଜି ବିନିଯୋଗ ପ୍ରସ୍ତାବ ଦେଇଛି, ତାହା ଅବାସ୍ତବ ବୋଲି କହିଛନ୍ତି । ଏହାଦ୍ୱାରା ମୁଖ୍ୟମନ୍ତ୍ରୀଙ୍କ ଚଞ୍ଚକତା ଖୋଲା ଖୋଲି ଭାବେ ଜନସମକ୍ଷକୁ ଆସିଛି । ସେଇ ପରି କେନ୍ଦୁଝର ଲୁହାଖଣି ବ୍ୟାପାରରେ ଭୂଷଣ ଷ୍ଟିଲକୁ ଅହେତୁକ ଅନୁକମ୍ପା ପ୍ରଦର୍ଶନ ସରକାରଙ୍କ ସ୍ୱଚ୍ଛତା ଉପରେ ପ୍ରଶ୍ନବାଚୀ ସୃଷ୍ଟି କରିଛି ।

## ଖଣି ଦୁର୍ନୀତି

ଶେଷ ପର୍ଯ୍ୟନ୍ତ କେନ୍ଦ୍ର ପରିବେଶ ଓ ଜଙ୍ଗଲ ରାଷ୍ଟ୍ରମନ୍ତ୍ରୀ ଦିଲୀପ ସିଂହ ଜୁଦେଓ ଖଣି ଲିଜ୍ ଦେବା ସଂପର୍କୀତ ଲାଞ୍ଚ କାରବାରରେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବା ପାଇଁ ବାଧ ହେଲେ । ସେ ଦିଲ୍ଲୀର ଏକ ହୋଟେଲରେ ଏହା କରୁଥିବାର ଦୃଶ୍ୟ ଭିଡ଼ିଓ ସିଡି ମାଧମରେ ଆଲୋକକୁ ଆସିଛି ।

କେନ୍ଦ୍ରମନ୍ତ୍ରୀ ଜୁଦେଓ ଛତିଶଗଡ଼ର ଏକ ରାଜପରିବାରର ସଦସ୍ୟ । ଦିଲ୍ଲୀର ଏକ ହୋଟେଲ (ତାଜ୍ ହୋଟେଲ)ରେ ସେ ତାଙ୍କ ବ୍ୟକ୍ତିଗତ ସଚିବଙ୍କ ସହ ଉପସ୍ଥିତ ଥାଇ ଅଷ୍ଟ୍ରେଲିଆର ଏକ କମ୍ପାନୀକୁ ଓଡ଼ିଶା ଏବଂ ଛତିଶଗଡ଼ରେ ଖଣି ଲିଜ୍ ଦେବାର ପ୍ରତିଶ୍ରୁତି ଦେଇ ଏ ଲାଞ୍ଚ ଗ୍ରହଣ କରିଥିଲେ । ଏଠାରେ ପ୍ରକାଶ ଥାଉ କି, ଶ୍ରୀ ଜୁଦେଓ ଓଡ଼ିଶା, ମଧ୍ୟପ୍ରଦେଶ, ଛତିଶଗଡ଼, ଝାଡ଼ଖଣ୍ଡ ଓ ବିହାରର ମାଇନିଂ ଲିଜ୍ କାର୍ଯ୍ୟ ଦେଖାଶୁଣାର ଦାୟିତ୍ୱରେ ଥିଲେ । ଏହି କେତୋଟି ରାଜ୍ୟରେ ଅଧିକାଂଶ ମୂଲ୍ୟବାନ ଖଣି ରହିଥିବା କଥା ସମସ୍ତେ ଜାଣନ୍ତି । ଜୁଦେଓ ଥିଲେ ଆଗାମୀ ଛତିଶଗଡ଼ ନିର୍ବାଚନରେ ବିଜେପିର ମନୋନୀତ

ମୁଖ୍ୟମନ୍ତ୍ରୀ ତାରକା । ଏହାଦ୍ୱାରା ଦଳର ତଥା ତାଙ୍କର ସେ ଆଶା ଧୂଳିସାତ ହୋଇଛି । କିନ୍ତୁ ଲାଞ୍ଚ କାରବାର ସଂପର୍କରେ ସଫେଇ ଦେଇ ସେ କହିଛନ୍ତି- ଦେଶରେ ବ୍ୟାପକ ଧର୍ମାନ୍ତରୀକରଣ ଚାଲିଥିଲା ବେଳେ ତାହାକୁ ରୋକିବା ଲାଗି 'ଫୌଜ'ର ଆବଶ୍ୟକତା ରହିଛି । ଫୌଜ ଗଠନ କରିବାକୁ ହେଲେ ବିପୁଳ ଅର୍ଥର ଆବଶ୍ୟକତା ରହିଛି । ଏହି ଅର୍ଥ ଆସିବ କେଉଁଠୁ ? ଏଥିପାଇଁ ଯଦି କୌଣସି ସହୃଦୟ ବ୍ୟକ୍ତି ଆର୍ଥିକ ସହାୟତା ଦେବାକୁ ଆଗେଇ ଆସନ୍ତି, ତେବେ ତାକୁ ଅନ୍ୟ ଅର୍ଥରେ ଗ୍ରହଣ କରାଯିବା ଉଚିତ ନୁହେଁ ।ସ୍ୱାଧୀନତା ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ମହାତ୍ମା ଗାନ୍ଧି ମଧ ଏପରି ଅର୍ଥ ଗ୍ରହଣ କରୁଥିଲେ । ଆମେ ଯଦି ପ୍ରଚାର ପାଇଁ ଅର୍ଥ ଗ୍ରହଣ କଲୁ ସେଥିରେ ଭୁଲ ରହିଲା କେଉଁଠି ବୋଲି ସେ ଏନ୍‌ଡି ଟିଭିକୁ ଦେଇଥିବା ସ୍ୱତନ୍ତ୍ର ସାକ୍ଷାତକାରରେ ପାଲଟା ପ୍ରଶ୍ନ କରିଛନ୍ତି । ଏହା ହେଉଛି ଆଜି ଦେଶର ଅବସ୍ଥା । କେଉଁଠି ମହାତ୍ମା ଗାନ୍ଧି ଆଉ କେଉଁଠି ଦିଲ୍ଲୀପ ସିଂହ ଜୁଦେଓ । ତୁଳନା କରାଯାଇ ପାରିବ କି ? ଲାଞ୍ଚ ଗ୍ରହଣ ବେଳେ ସେ ପୁଣି ଟଙ୍କାକୁ ମଥାରେ ଲଗାଇ କହିଛନ୍ତି- ଟଙ୍କା ଭଗବାନ ନୁହେଁ ସତ, କିନ୍ତୁ ଭଗବାନଙ୍କ ଠାରୁ ବି କମ୍ ନୁହେଁ । ଅନ୍ୟ ପକ୍ଷରେ ମାଇନିଂ ଲିଜ୍ ପାଇଁ ଏବେ ପରିବେଶ ମନ୍ତ୍ରଣାଳୟର ଅନୁମୋଦନ ବାଧ୍ୟତା ମୂଳକ ହୋଇଛି । ଯେହେତୁ ଜୁଦେଓ ଓଡ଼ିଶା ଖଣି ଦାୟିତ୍ୱରେ ଥିଲେ- ସେଇ ଦୃଷ୍ଟିରୁ ଏଠିକା ମୁଖ୍ୟମନ୍ତ୍ରୀଙ୍କ ସହ ସଂପର୍କ ରହିବା କଥା । କିନ୍ତୁ ସଂପର୍କ ଏତେ ଗଭୀର ଥିଲା ଯେ, ଲାଞ୍ଚ ଗ୍ରହଣ ବେଳେ ଦିଲ୍ଲୀ ହୋଟେଲରେ ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚିବ ଅଷ୍ଟ୍ରେଲିଆ କମ୍ପାନୀର ପ୍ରତିନିଧିଙ୍କୁ କହିଥିଲେ- ଓଡ଼ିଶାରେ ଖଣିଲିଜ୍ ମିଳିବାରେ କୌଣସି ଅସୁବିଧା ହେବ ନାହିଁ । କାରଣ ଓଡ଼ିଶା ମୁଖ୍ୟମନ୍ତ୍ରୀ ଜୁଦେଓଙ୍କ ପ୍ରତି ଋଣୀ । ଆମେ ନବୀନ ପଟ୍ଟନାୟକଙ୍କୁ ୯,୦୦୦ କୋଟି ଟଙ୍କାର ରିଲିଫ୍ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ପକ୍ଷରୁ ଦେଇଛୁ । ତାଙ୍କ ଠାରୁ ଆମେ ଯେକୌଣସି କାର୍ଯ୍ୟ କରାଇ ପାରିବୁ । ଅନ୍ୟ ପକ୍ଷରେ ଏହା ଜାଣିବା ପରେ ମୁଖ୍ୟମନ୍ତ୍ରୀ କହିଛନ୍ତି- ଖଣି ଲିଜ୍ ସଂପର୍କରେ ଅଷ୍ଟ୍ରେଲିଆର କେଉଁ କମ୍ପାନୀ ତାଙ୍କୁ ଭେଟିଥିଲେ କି ନାହିଁ ତାହା ତାଙ୍କର ମନେ ନାହିଁ । ଏଠାରେ ପ୍ରଶ୍ନ- ଏ ଭିତରେ ଅଷ୍ଟ୍ରେଲିଆର କେତେ ଜଣ ଖଣି ମାଲିକ ବା ତାଙ୍କ ପ୍ରତିନିଧି ମୁଖ୍ୟମନ୍ତ୍ରୀଙ୍କୁ ଭେଟିଛନ୍ତି ଯେ- ତାଙ୍କର ଏହା ମନେ ନାହିଁ, ସେ ଭୁଲି ଯାଇଛନ୍ତି । ପୁଣି ଏତେ ଦୁର୍ବଳ ସ୍ମରଣଶକ୍ତି ନେଇ ସେ ରାଜ୍ୟ ଶାସନ କରୁଛନ୍ତି କିପରି ? ନା ତପ୍ତ ବୈତରଣୀ ପାରି ହେବା ପାଇଁ ଏହା ଏକ ରାଜନୈତିକ ଚାତୁରୀ ?

## ଆଉ କିଛି

କ୍ଷମତା ରାଜନୀତିରେ ପ୍ରଭାବ ବିସ୍ତାର କରିଥିବା 'ଇଣ୍ଡିଆନ ମେଟାଲ୍ସ ଆଣ୍ଡ ଫେରୋଆଲଏଜ୍ (ଇମ୍ଫା) ଶିଳ୍ପ ଗୋଷ୍ଠୀର ମାଲିକ ବଂଶୀଧର ପଣ୍ଡାଙ୍କ ସାଂସଦ ପୁତ୍ର

ବୈଜୟନ୍ତ ପଣ୍ଡା ରୁଗ୍‌ଣ ଶିଳ୍ପ ସଂସ୍ଥା (ସ୍ୱତନ୍ତ୍ର ବ୍ୟବସ୍ଥା) ଆଇନ ୧୯୮୫କୁ ଫାଙ୍କି ନିକଟ ଭବିଷ୍ୟତରେ ଏକ ଜାତୀୟ ରେକର୍ଡ ହାସଲ କରିବାକୁ ଯାଉଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ସହ ତାଙ୍କର ଥିବା ଏକାନ୍ତ ସଂପର୍କକୁ ବିନିଯୋଗ କରି ଯଦି ଶ୍ରୀ ପଣ୍ଡା ଏଥିରେ ସଫଳ ହୁଅନ୍ତି, ତେବେ ସାଧାରଣ ଲୋକଙ୍କ ଟିକସରେ ସ୍ଥାପିତ ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କ (ଆଇଡିବିଆଇ) ବୁଡିବ, କିନ୍ତୁ ଶିଳ୍ପ ପୁନରୁଦ୍ଧାର ଆଳରେ କମ୍ପାନୀ ୩,୦୦୦ କୋଟି ଟଙ୍କା ଋଣରୁ ବେଆଇନ ଭାବେ ଏ ପର୍ଯ୍ୟନ୍ତ ସର୍ବାଧିକ ଋଣ ୨,୩୦୦ କୋଟି ଟଙ୍କା ଛାଡ଼ ପାଇବେ ।

ଉଦ୍ଦେଶ୍ୟମୂଳକ ଭାବେ କ୍ଷତିଗ୍ରସ୍ତ ପଣ୍ଡା ମାଲିକାନାର ସହଯୋଗୀ କମ୍ପାନୀ ଇଣ୍ଡିଆନ ଚାର୍ଜକ୍ରୋମ ଲିମିଟେଡ୍ (ଆଇସିସିଏଲ୍)ର ମୂଳ ଧନ ଗୋଲ ହେବା ପରେ ଗତ ମାର୍ଚ୍ଚ ମାସ ସୁଦ୍ଧା ଏହି ସଂସ୍ଥାର ଆର୍ଥିକ ବୋଝ ୨,୭୧୨ କୋଟି ୧୨ ଲକ୍ଷ ଟଙ୍କାରେ ପହଞ୍ଚିଲା । ଏଭଳି ଅବସ୍ଥାରେ ଯେକୌଣସି ସଂସ୍ଥା ରୁଗ୍‌ଣ ଶିଳ୍ପ ଆଇନ୍ (ସିକା) ଅନୁସାରେ ରୁଗ୍‌ଣ ଘୋଷିତ ହୋଇ ଶିଳ୍ପ ଓ ଆର୍ଥିକ ପୁନରୁଦ୍ଧାର ବୋର୍ଡ (ବିଏସ୍ଆଇଆର୍)ର ବିଚାର ନିମନ୍ତେ ପ୍ରେରିତ ହେବା କଥା । ମାତ୍ର ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି କେନ୍ଦ୍ରୀୟ ନେତା ମାନଙ୍କ ଉପରେ ସାଂସଦ ପଣ୍ଡାଙ୍କ ପ୍ରଭାବ ଏତେ ଯେ ଉପରୋକ୍ତ ଆଇନ ଆଇସିସିଏଲ୍ କ୍ଷେତ୍ରରେ ଲାଗୁ ହେଲା ନାହିଁ । ବରଂ ଶିଳ୍ପ ପୁନରୁଦ୍ଧାର ଆଳରେ ପଣ୍ଡା ପରିବାରର ସ୍ୱାର୍ଥ ସିଦ୍ଧି ଲାଗି ସାଧାରଣ ଟିକସ ଦାତାଙ୍କ ଅର୍ଥରେ ସ୍ଥାପିତ ସରକାରୀ ବ୍ୟାଙ୍କ ଆଇଡିବିଆଇ ଓ ଏହାର ସହଯୋଗୀ ବ୍ୟାଙ୍କ ମାନଙ୍କରୁ କିଭଳି ୨,୩୦୦ କୋଟି ଟଙ୍କା ଶ୍ରାଦ୍ଧ କରାଯିବ ସେ ନେଇ ଉଚ୍ଚ ସ୍ତରରେ ଅଭିସନ୍ଧି ଜାରି ରହିଛି । ଏହି ବିପୁଳ ଓ ବେଆଇନ ଋଣ ଛାଡ଼ରେ ପ୍ରତିକ୍ରିୟା ପ୍ରକାଶ କରି କମ୍ପାନୀ ପୁନର୍ଗଠନ ନାମରେ ଯେଉଁ ଯୋଜନା (ଡଲ) ଅନୁମୋଦିତ ହୋଇଛି, ତାର ତର୍ଜମା ସହିତ ଋଣ ଛାଡ଼ ପ୍ରକ୍ରିୟାକୁ ବନ୍ଦ କରିବାକୁ ଏଆଇଟିୟୁସିର ସର୍ବ ଭାରତୀୟ ସାଧାରଣ ସମ୍ପାଦକ ଗୁରୁଦାସ ଦାସଗୁପ୍ତା ଦାବି କରି ଅର୍ଥମନ୍ତ୍ରୀଙ୍କୁ ଚିଠି ଲେଖିଛନ୍ତି । ଆଇସିସିଏଲ୍ ୬୨ ହଜାର ୫୦୦ ଟନ୍ ଚାର୍ଜକ୍ରୋମ୍ ଓ ଉଚ୍ଚ ଅଙ୍ଗାର ଯୁକ୍ତ ଫେରୋକ୍ରମ୍ ଉତ୍ପାଦନ ଲାଗି ପ୍ରତିଷ୍ଠା କରାଯାଇଥିଲା । ଏଥିରେ ୧୦୮ ମେଗାୱାଟ ଉତ୍ପାଦନ କ୍ଷମତାର ତାପଜ ବିଦ୍ୟୁତ ପ୍ରକଳ୍ପ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ୧୯୮୭ରେ ଆରମ୍ଭ ହୋଇ ୧୯୯୨ରେ ଚାଲୁ ହୋଇଥିବା ଏହି କମ୍ପାନୀକୁ ଉଦ୍ଦେଶ୍ୟମୂଳକ ଭାବେ ଏବେ ରୁଗ୍‌ଣ ଦର୍ଶାଯାଉଛି ।

ଏଠାରେ ଉଲ୍ଲେଖ ରହିବା ଉଚିତ, ମୁଖ୍ୟମନ୍ତ୍ରୀ ଥିବା ବେଳେ ସ୍ୱର୍ଗତ ବିଜୁ ପଟ୍ଟନାୟକ ବଂଶୀ ପଣ୍ଡାଙ୍କ କମ୍ପାନୀକୁ ୮୦ କୋଟି ଟଙ୍କା ଛାଡ଼ ଦେଇଥିଲେ । ସେଥିପାଇଁ ସେ ନିନ୍ଦିତ ହୋଇଥିଲେ ମଧ୍ୟ । ତାଙ୍କ ପୁଅ କିନ୍ତୁ ଏବେ ଦେଶରେ ସର୍ବାଧିକ ୨,୩୦୦ କୋଟି ଟଙ୍କା ଋଣ ଛାଡ଼ ଦେବା ପାଇଁ ଆୟୋଜନ କରୁଥିବା କଥା ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଛି ।

ପୁଣି ୨୧ ନଭେମ୍ବର ୨୦୦୩ର 'ସମାଜ'ରୁ ଜଣାପଡ଼ିଛି- ରାଜ୍ୟରେ ଭୂଗର୍ଭରେ ଥିବା ଖଣିଜ ସର୍ଭେ ପାଇଁ ଓଡ଼ିଶା ସରକାର ବହୁ ରାଷ୍ଟ୍ରୀୟ ଡିବିୟର୍ସ କମ୍ପାନୀକୁ ଆର୍.ପି.ଲାଇସେନ୍ସ ପ୍ରଦାନ କରିଥିବା ବେଳେ ଅଷ୍ଟ୍ରେଲିଆର ଅମିଲ ନାମକ ଅନ୍ୟ ଏକ କମ୍ପାନୀକୁ ଆର୍.ପି. ଲାଇସେନ୍ସ ଦେବା ପାଇଁ ତଳ ସ୍ତରରୁ ସୁପାରିଶ କରିଛନ୍ତି । ଡିବିୟର୍ସ କମ୍ପାନୀକୁ ନୂଆପଡ଼ା ଜିଲ୍ଲାର ୧୦ ହଜାର ବର୍ଗ କିଲୋମିଟର ଅଂଚଳରେ ଏରୋ ମ୍ୟାଗ୍ନେଟିକ୍ ସର୍ଭେ ଲାଗି ଆର୍.ପି. ଲାଇସେନ୍ସ ପ୍ରଦାନ କରାଯାଇଛି । କମ୍ପାନୀ ୧୦ ହଜାର କିଲୋମିଟରକୁ ସର୍ଭେ କରି ରତ୍ନ ପଥର ଥିବା ୨୫ ବର୍ଗ କିଲୋମିଟର ଚିହ୍ନଟ କରିବ । ଏହାପରେ ସଂପୃକ୍ତ କମ୍ପାନୀକୁ ରତ୍ନ ପଥର ଖଣି ଲିଜ୍ ଯୋଗାଇ ଦିଆଯିବ । ଅତୀତରେ କିନ୍ତୁ ଏହି ସବୁ କମ୍ପାନୀମାନଙ୍କର ଦରଖାସ୍ତ ଗୁଡ଼ିକୁ କେନ୍ଦ୍ର ସରକାର ବିଚାରକୁ ନ ନେଇ ରାଜ୍ୟ ସରକାରଙ୍କୁ ଫେରସ୍ତ ପଠାଇଥିଲେ । ମାତ୍ର ଏବେ ରାଜ୍ୟ ସରକାର ଚାହୁଁଥିବା ୧୩ଟି ବଡ଼ ବଡ଼ ସଂସ୍ଥାକୁ ଆର୍.ପି.ଲାଇସେନ୍ସ ଦେବା ପାଇଁ କେନ୍ଦ୍ର ସରକାର ସ୍ୱୀକୃତି ଦେବା ରହସ୍ୟ ଜନକ ମନେ ହେଉଛି । ଖୁବ୍ ଶୀଘ୍ର ବି.ଏଚ୍.ପି. କମ୍ପାନୀ, ଫେଲଗଡ଼ଜ, ଆସରିଓ ଟିଣ୍ଟୋ ସମେତ ୧୩ଟି ବିଦେଶୀ କମ୍ପାନୀକୁ ଲାଇସେନ୍ସ ଦିଆ ଯିବାର ପ୍ରସ୍ତାବ ରହିଛି ।

ଅନ୍ୟ ପକ୍ଷରେ ରାଜ୍ୟର ଋଣ ଭାର କିନ୍ତୁ ହୁହୁ ବଢ଼ିବାରେ ଲାଗିଛି । ରାଜ୍ୟ ସରକାର କେବଳ ଋଣ ପରିଶୋଧ ବାବଦରେ ଏଗାର ବର୍ଷରେ ୨୫ ହଜାର କୋଟି ଟଙ୍କାରୁ ଅଧିକ ଅର୍ଥ ବ୍ୟୟ କରି ସାରିଲେଣି । ତଥାପି ଚଳିତ ଆର୍ଥିକ ବର୍ଷ ଶେଷ ବେଳକୁ ରାଜ୍ୟର ଋଣ ଭାର ୩୨,୫୧୨ କୋଟି ୩୪ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ହେବ ବୋଲି ସରକାରୀ ଭାବେ ଆକଳନ କରାଯାଇଛି । ଚଳିତ ବର୍ଷରେ ରାଜ୍ୟ ସରକାରଙ୍କ ସୁଧ ଭାର ୩,୨୫୦ କୋଟି ଟଙ୍କା ହେବା ଆଶଙ୍କା କରାଯାଉଛି ।

## କୋଇଲାର ଘରୋଇକରଣ ପାଳି

ବାଜପେୟୀ ସରକାର ଏବେ କୋଇଲାର ଘରୋଇକରଣ ନେଇ ଉଦ୍ୟମ କରୁଛନ୍ତି । ଏଥିରୁ ପୁଞ୍ଜି ପ୍ରତ୍ୟାହାର ନୀତିରେ ପରିବର୍ତ୍ତନ ଆସିଛି ବୋଲି ସୂଚନା ମିଳୁଛି । ବାଜପେୟୀ ସରକାର କେବଳ ୧୯୯୧ର କଂଗ୍ରେସ ସରକାରଙ୍କର ଆର୍ଥିକ ନୀତି ଅନୁସରଣ କରୁଛନ୍ତି ବୋଲି ଦାବି କରୁଥିବା ବେଳେ ଆର୍ଥିକ ନୀତିରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଛି । ୧୯୯୧ରେ ରାଷ୍ଟ୍ରାୟତ୍ତ ଉଦ୍ୟୋଗ କ୍ଷେତ୍ରରେ କୋଇଲାକୁ ଏକ ଷ୍ଟ୍ରାଟେଜିକ୍ (ଗୁରୁତ୍ୱପୂର୍ଣ୍ଣ) କ୍ଷେତ୍ର ବୋଲି ଚିହ୍ନଟ କରାଯାଇଥିଲା । ପରେ ୧୯୯୩ରେ ରଙ୍ଗରାଜନ କମିଟି ମଧ୍ୟ ସରକାର ଏହି କ୍ଷେତ୍ରରେ ତାଙ୍କର ଅଂଶ ଧନକୁ ଅନ୍ତତଃପକ୍ଷେ ୫୧ ପ୍ରତିଶତରୁ କମ୍ ନ କରିବାକୁ

ପରାମର୍ଶ ଦେଇଥିଲେ । ମାତ୍ର ୧୯୯୧ରେ ବାଜପେୟୀ ସରକାର କୋଇଲାକୁ ଷ୍ଟ୍ରାଟେଜିକ୍ କ୍ଷେତ୍ରରୁ କାଢ଼ି ନେଇ ନନ୍‌ଷ୍ଟ୍ରାଟେଜିକ୍ କ୍ଷେତ୍ରକୁ ନେଇଗଲେ । କେବଳ ପ୍ରତିରକ୍ଷା, ଆଣବିକ ଶକ୍ତି ଓ ରେଳ ପରିବହନକୁ ଛାଡ଼ି ଅନ୍ୟ ସମସ୍ତ କ୍ଷେତ୍ରକୁ ନନ୍ ଷ୍ଟ୍ରାଟେଜିକ୍ କ୍ଷେତ୍ରକୁ ନିଆଗଲା । ତାର ଫଳ ସ୍ୱରୂପ ଏବେ କୋଇଲାରୁ ପୁଞ୍ଜି ପ୍ରତ୍ୟାହାର ହେଉଛି ।

## ଓଡ଼ିଶା ସରକାରଙ୍କ ଜଳ ନୀତି

'ସ୍ୱାଭିମାନ'ରେ ପ୍ରକାଶିତ ରାଜ୍ୟ ସରକାରଙ୍କ ଜଳନୀତି ସଂପର୍କୀତ ଏକ ନିବନ୍ଧରେ ପ୍ରଫୁଲ୍ଲ ସାମନ୍ତରା କହିଛନ୍ତି- ଜଳ ହିଁ ଜୀବନ ଏବଂ ପ୍ରକୃତିର ଏକ ମହାନ ଅବଦାନ । ଏହାର ମାଲିକ ମଣିଷ ସହ ସମଗ୍ର ଜୀବଜଗତ । ଜଳ ସମ୍ପଦ ଉପରେ ବ୍ୟକ୍ତିଗତ ଭାବେ କିମ୍ୱା କ୍ଷମତାଶୀଳ ଗୋଷ୍ଠୀ କିମ୍ୱା କର୍ତ୍ତୃପକ୍ଷ କାହାରି ବି ବ୍ୟକ୍ତିଗତ ଅଧିକାର ସାବ୍ୟସ୍ତ କରିବା ପ୍ରକୃତି ବିରୋଧୀ ଏବଂ ପ୍ରାକୃତ ନ୍ୟାୟର ପରିପନ୍ଥୀ । ଏ କ୍ଷେତ୍ରରେ କେବଳ ସମାଜର ସାମୂହିକ ଅଧିକାରକୁ ହିଁ ସ୍ୱୀକାର କରିବାକୁ ହେବ, ଯେଉଁଠି ବ୍ୟକ୍ତିଗତ ମାଲିକାନାତ୍ୱ ନାହିଁ କିମ୍ୱା କିଣା ବିକା ବସ୍ତୁ ରୂପେ ଯାହାକୁ କେହି ହସ୍ତାନ୍ତର କରି ପାରିବେ ନାହିଁ । ଜଳ ଏକ ସାର୍ବଜନୀନ ଅତ୍ୟାବଶ୍ୟକ ଉପାଦାନ । କିନ୍ତୁ ଏହାକୁ ଏକ ଆର୍ଥିକ ଆବଶ୍ୟକତା ବୋଲି ସୀମିତ ଅର୍ଥରେ ନୂଆ ସଂଜ୍ଞା ନିରୂପଣ କରି ସେମାନଙ୍କ ଚାହିଦା ଅନୁରୂପ ବିବେଚନା କରିବାକୁ ବିଶ୍ୱବ୍ୟାଙ୍କ ଜରିଆରେ ନୂଆ ପରିଭାଷା ଆରମ୍ଭ ହୋଇଛି । ଏହାର ଦୂରଗାମୀ ଉଦ୍ଦେଶ୍ୟ ଓ ପରିଣାମ ଅତି ଭୟାନକ । ଏହାଦ୍ୱାରା ଜଳକୁ ବେପାରୀର ବ୍ୟବସାୟିକ ବସ୍ତୁ ରୂପେ ବିଶ୍ୱ ପୁଞ୍ଜି ବଜାରରେ ଉପସ୍ଥାପିତ କରାଯିବ ଓ ସାଧାରଣ ଜନତା, ଯାହା ହାତରେ ପୁଞ୍ଜି ଓ କ୍ରୟ ଶକ୍ତି ନାହିଁ, ସେ ପିଇବାକୁ କିମ୍ୱା ଚାଷ ପାଇଁ ଜଳକୁ କିଣି ନ ପାରି ଜୀବନ ଓ ଜୀବିକାର ମୂଳ ଉତ୍ସ ପ୍ରକୃତିଦତ୍ତ ସଂପଦରୁ ନିଜର ଜନ୍ମଗତ ଅଧିକାର ହରାଇବ । ଯାହା ଫଳରେ ସମ୍ବିଧାନରେ ଥିବା ବଂଚିବାର ଅଧିକାର ଏକ ପ୍ରହସନରେ ପରିଣତ ହେବ ।

ବିଶ୍ୱୀକରଣ, ଉଦାରୀକରଣ ଅବଶ୍ୟମ୍ଭାବୀ ଦର୍ଶାଇ ବିଦ୍ୟୁତ୍‌କୁ ଘରୋଇକରଣ କରିବା ପରେ ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଘରୋଇ କରଣ ଜରିଆରେ ରାଷ୍ଟ୍ରର ଜନମଙ୍ଗଳକାରୀ ଦାୟିତ୍ୱକୁ ପ୍ରତ୍ୟାହାର କରି ନିଆଯାଇଛି । ବର୍ତ୍ତମାନ ଶିଳ୍ପ ସହ କୃଷିକୁ ମିଶାଇ ଦେଇ କର୍ପୋରେଟ୍ ପରିଚାଳନା ଭିତରେ ସଂପୂର୍ଣ୍ଣ ଭାବେ ଚାଷକୁ ଚାଷୀ ଠାରୁ ଛଡ଼ାଇ ନେବା ପାଇଁ ଜଳ ସମ୍ପଦ ଉପରେ ସମାଜର ସାର୍ବଭୌମ ଅଧିକାରକୁ ଛଡ଼ାଇ ନେବା ପ୍ରକ୍ରିୟା ଆଉ ଏକ ପଦକ୍ଷେପ । ତାହା ଲୁଚା ଛପାରେ ନାହିଁ । ସେଥିପାଇଁ ସମ୍ବିଧାନର ପୁନର୍ବିନ୍ୟାସ ଓ ନୂଆ ନୀତି ପ୍ରଣୟନ କରିବାକୁ ଭାରତ ସରକାର ୨୦୦୦ରେ ଜଳନୀତି ଘୋଷଣା କରିଛନ୍ତି ।

୨୦୦୩ ଏପ୍ରିଲ ମାସରେ ଅନୁରୂପ ଜଳନୀତି ଓଡ଼ିଶା ସରକାର ଚିଠା ଆକାରରେ ପ୍ରକାଶ କରିଛନ୍ତି । ଭାରତ ସରକାରଙ୍କ ଜଳ ନୀତିର ନକଲ ଓଡ଼ିଶା ରାଜନୀତିରେ ପ୍ରତିଫଳିତ ହୋଇଛି ।

କେନ୍ଦ୍ର ସରକାର ଓ ଓଡ଼ିଶା ସରକାରଙ୍କ ଜଳନୀତି ଚିଠାରେ ଥିବା ଅଧିକାଂଶ ବାକ୍ୟ ଓ ନୀତିଗତ ଘୋଷଣା ୧୯୯୮ରେ ପ୍ରକାଶିତ ବିଶ୍ୱବ୍ୟାଙ୍କ ଦ୍ୱାରା ଭାରତ ପାଇଁ ପ୍ରକାଶିତ ବହିର ଭାଷା ଅନୁରୂପ ଦେଖିବାକୁ ମିଳୁଛି । ଏଥିରୁ ପ୍ରମାଣିତ ହେଉଛି, ବିଶ୍ୱବ୍ୟାଙ୍କର ନିର୍ଦ୍ଦେଶରେ ସରକାରଙ୍କର ଜଳନୀତି ତିଆରି ହୋଇଛି । ବିଶେଷ କରି ଓଡ଼ିଶା ପାଇଁ ଲଣ୍ଡନରୁ ଆସିଥିବା ବିଶ୍ୱବ୍ୟାଙ୍କର ସହଯୋଗୀ ଡିଏଫ୍ଆଇଡି ଏହି ଚିଠା ଲେଖିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି । ୧୯୯୪ରେ ଓଡ଼ିଶା ସରକାରଙ୍କ ଜଳନୀତିକୁ ଦେଖିଲେ ବର୍ତ୍ତମାନର ଜଳନୀତି ସଂପୂର୍ଣ୍ଣ ଓଲଟା ହୋଇ ଯାଇଛି । ସେଥିରେ କୃଷିକୁ ଗୁରୁତ୍ୱ ଦିଆଯାଇଥିବା ବେଳେ ବର୍ତ୍ତମାନ ଶିଳ୍ପ ଓ ସହରାଞ୍ଚଳ ସହିତ ଜଳର ବ୍ୟବସାୟୀକରଣକୁ ପ୍ରାଧାନ୍ୟ ଦିଆଯାଇଛି । ବିଗତ ଚିଠାରେ ଘରୋଇ ପୁଞ୍ଜିର ଆଭାସ ନଥିବା ବେଳେ ବର୍ତ୍ତମାନ ଘରୋଇ ପୁଞ୍ଜିକୁ କେନ୍ଦ୍ର କରି ଜଳର ବଜାରୀକରଣ ସାଂଗକୁ ମଜା ମଜଲିସ୍‌ର ସନ୍ତରଣ ପ୍ରକଳ୍ପ ପାଇଁ ପୁଞ୍ଜି ବିନିଯୋଗକୁ ଅଗ୍ରାଧିକାର ଦେବାକୁ ଚିନ୍ତା କରିଛନ୍ତି । ତାହା ସହିତ ବର୍ତ୍ତମାନ ଥିବା ଜଳ ସମ୍ପଦ ବିଭାଗର ବିଭିନ୍ନ ଅନୁଷ୍ଠାନକୁ ଭାଙ୍ଗି ଦେବାର ମସୁଧା ମଧ୍ୟ ହୋଇଛି । ଏ ଦିଗରେ ରାଜ୍ୟ ସରକାର ଦୁଇ ବର୍ଷ ତଳୁ କାର୍ଯ୍ୟ ଆରମ୍ଭ କରି ସାରିଲେଣି । ଯଥା- ପାଣି ପଞ୍ଚାୟତ ଜରିଆରେ ଚାଷୀଙ୍କ ଉପରକୁ ଦାୟିତ୍ୱ ଠେଲି ଦେବା ଏବଂ ତାହା ବିଫଳ ହେଲେ ଜଳର ପରିଚାଳନା ଘରୋଇ କମ୍ପାନୀକୁ ହସ୍ତାନ୍ତର କରିବା ଉଦ୍ଦେଶ୍ୟରେ ଏହି ପାଣି ପଞ୍ଚାୟତ ଆଇନ ତିଆରି ହୋଇଛି । ୭ଟି କ୍ଷୁଦ୍ର ଜଳ ବିଦ୍ୟୁତ୍ ପ୍ରକଳ୍ପକୁ ଘରୋଇକରଣ କରିବାକୁ ନିଷ୍ପତ୍ତି ହୋଇଛି । ଏହା ଯଦି ହୋଇଯାଏ- ଉକ୍ତ ଜଳ ଭଣ୍ଡାର ଗୁଡ଼ିକ ଉପରେ ଘରୋଇ କମ୍ପାନୀମାନଙ୍କ ନିୟନ୍ତ୍ରଣ ରହିବ, ଚାଷ ଓ ପିଇବା ପାଣି ପାଇଁ ଜଳ ଉପଲବ୍ଧ ହେବ ନାହିଁ । ଯଦି ହେବ କମ୍ପାନୀ ମାନଙ୍କୁ କ୍ଷତିପୂରଣ ଦେବାକୁ ହେବ । ଗତ ୩ ବର୍ଷ ଭିତରେ ଜଳକର ଦୁଇ ଥର ବଢ଼ି ଚାରି ଗୁଣକୁ ବୃଦ୍ଧି ପାଇଛି । ବର୍ତ୍ତମାନ ଯେଉଁଠି ଜଙ୍ଗଲ ସହ ଜଳ ସମ୍ପଦ ରହିଛି ସେହି ଅଂଚଳର ଖଣି ଖନନ ନାମରେ ଥିବା ଜଳସ୍ରୋତକୁ କମ୍ପାନୀମାନଙ୍କ ବ୍ୟବହାର ପାଇଁ ବିନା ବିଚାରରେ ସରକାର ଛାଡ଼ି ଦେଇଛନ୍ତି । କ୍ରମଶଃ ସ୍ଥାନୀୟ ଲୋକେ ପିଇବା ପାଣି ଓ ଚାଷ ଜଳରୁ ବଂଚିତ ହେବାକୁ ଯାଉଛନ୍ତି । ୧୯୯୫ରେ ଇସ୍ପାତ କାରଖାନା ନାମରେ ଟାଟା କମ୍ପାନୀକୁ ଋଷିକୁଲ୍ୟାରୁ ଜଳ ନେବାକୁ ପିପଳାପଙ୍କ ଜଳ ଭଣ୍ଡାର ନିର୍ମାଣ ପାଇଁ ଦିଆଯାଇଥିଲା । ଏହା ହୋଇଥିଲେ ଗଂଜାମ ଜିଲ୍ଲାର ଅର୍ଦ୍ଧେକ ଲୋକ ନଦୀରୁ ଟୋପେ ପାଣି ପାଇ ନଥାନ୍ତେ । ଟାଟା ବିରୋଧୀ ଜନଆନ୍ଦୋଳନ ଏହାକୁ ବଂଚାଇ ଦେଲା । ଜଳ

ଜଙ୍ଗଲ ଓ ଖଣି ସମ୍ପଦ ଆଦିବାସୀ ଅଂଚଳରେ ବିଶେଷ ଭାବେ ଅଛି ବୋଲି ସୁପ୍ରିମକୋର୍ଟ ରାୟକୁ ଓଡ଼ିଶା ସରକାର ମାନିବେ ନାହିଁ ବୋଲି କହିବା ମୂଳରେ ଉକ୍ତ ସମ୍ବଳ ଗୁଡ଼ିକୁ ଘରୋଇ କରଣ କରିବାର ଇଚ୍ଛା ଶକ୍ତି ଉଦ୍ଦିଷ୍ଟ । ଏହି ନିଷ୍ପତ୍ତି ସମ୍ବିଧାନ ବିରୋଧୀ ।

ଏହା କରିବା ମୂଳରେ ସରକାରଙ୍କର ଏକମାତ୍ର ଯୁକ୍ତି- ପାଖରେ ପଇସା ନାହିଁ ଏବଂ ସରକାରୀ ପରିଚାଳନାରେ ଦୁର୍ନୀତି ଓ ଅପାରଗତା । ତାର ଏକମାତ୍ର ବିକଳ୍ପ ଭାବେ ତାହା କମ୍ପାନୀ ମାନଙ୍କ ମୁନାଫା ପାଇଁ ଦେଇ ଦିଆଯିବ । ଏହାଦ୍ୱାରା ବିଭିନ୍ନ ନଦୀ, ନାଳ ଓ ପୋଖରୀକୁ ମଧ୍ୟ ଜଳର ସୁପରିଚାଳନା, ସଫଳ ଯୋଗାଣ ଓ ମିତବ୍ୟୟିତା ନାମରେ ସେମାନଙ୍କୁ ଦେଇ ଦିଆଯିବ ଲିଜ୍ ଆକାରରେ । ସେଥିପାଇଁ ବିଦେଶୀ ପୁଞ୍ଜିକୁ ସ୍ୱାଗତ କରାଯାଉଛି ବିକାଶର ଭିତ୍ତିଭୂମି ନାମରେ ।

ସମଗ୍ର ଜଳ ସମ୍ପଦକୁ ଦେଶୀ- ବିଦେଶୀ କର୍ପୋରେଟ୍, ଘରୋଇ କମ୍ପାନୀ ମାନଙ୍କ ହାତରେ ପରିଚାଳନା, ମାଲିକାନାତ୍ୱ, ଜଳର ହସ୍ତାନ୍ତର କରଣ, ପୁନର୍ଗଠନ, ପୁଞ୍ଜି ବିନିଯୋଗ, ଜଳ ଯୋଗାଣ ଦାୟିତ୍ୱ ଦିଆଯିବାକୁ ଜଳନୀତି ଚିଠାର ପାରା ୧୬(୧)ରେ ବିନା ଦ୍ୱିଧାରେ କୁହାଯାଇଛି । ସେଥିରେ ଲେଖା ଯାଇଛି, ସରକାର ଯେତେବେଳେ ଯେଉଁଠି ସମ୍ଭବପର ଓ ଆବଶ୍ୟକ ବୋଲି ଭାବିବେ, ଏହି ନୀତି କାର୍ଯ୍ୟକାରୀ ହେବ । ଅର୍ଥାତ ଯେତେବେଳେ ସରକାର ଚାହିଁବେ ନିର୍ଦ୍ଦିଷ୍ଟ ଜଳ ଭଣ୍ଡାର ପରିଚାଳନା ଓ ଆଧୁନିକକରଣ ସହ ଜଳ ଯୋଗାଣ ଦାୟିତ୍ୱ କୌଣସି କମ୍ପାନୀକୁ ଦେଇ ଦେବା ପାଇଁ ନିଷ୍ପତ୍ତି ନେବେ । ପୁଣି ନୂଆ କରି ବିଭିନ୍ନ ପରିକଳ୍ପିତ ଯୋଜନା ଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଜଳବେପାରୀ ମାନଙ୍କୁ ଡାକି ଆଣିବେ ।

ପୁଣି ଜଳନୀତି ଚିଠାର ୧୪(୧)ରେ କହି ଦିଆଯାଇଛି ଯେ, ଏଣିକି ଜଳ ଆଉ ମାଗଣାରେ ମିଳିବ ନାହିଁ । ଏହା ସରକାରଙ୍କର ଆଉ ସେବା କ୍ଷେତ୍ର ହୋଇ ରହିବ ନାହିଁ । ଯେହେତୁ ଜଳର ମୂଲ୍ୟ ଧାର୍ଯ୍ୟ ହେବ, ସେଥିପାଇଁ ସେଥିରେ ଜଳର ଯୋଗାଣ, ପରିଚାଳନା, ନିର୍ମାଣ ଓ ଭବିଷ୍ୟତ ମରାମତି କାମ ପାଇଁ ହୋଇଥିବା ବ୍ୟୟ ହିସାବକୁ ନିଆଯିବା ସହ କର୍ପୋରେଟ୍ ପରିଚାଳନାର ପ୍ରଥମ ଲକ୍ଷ୍ୟ ମୁନାଫା ସାମିଲ ହେବ । ଜଳ ସେବାର ମାନ ଅନୁଯାୟୀ ମଧ୍ୟ ଭିନ୍ନ ଭିନ୍ନ ମୂଲ୍ୟ ନିର୍ଦ୍ଧାରଣ ହେବ । ଅର୍ଥାତ.ସ୍ୱଚ୍ଛ ପାଣି ପାଇଁ ଅଧିକ ମୂଲ୍ୟ, ଟେପ୍ ପାଣି ପାଇଁ ଅଲଗା, ଯିଏ ବି ବିଭିନ୍ନ ଜଳାଶୟରୁ ନେବ ତାର ମୂଲ୍ୟ ଅଲଗା ହେବ । କାରଣ ଜଳର ସ୍ରୋତ ଓ ଉତ୍ସଗୁଡ଼ିକ ମଧ୍ୟ ସମୟାନୁକ୍ରମେ କମ୍ପାନୀମାନଙ୍କ କର୍ତ୍ତୃତ୍ୱ ଭିତରକୁ ଚାଲିଯିବ । ଲାଟିନ୍ ଆମେରିକାର ବଲିଭିଆ ଦେଶରେ ଯେପରି ଜଳର ଘରୋଇକରଣ ନେଇ ତୋଫାନ୍ ଛୁଟିଲା, ସେପରି ହେବା ପାଇଁ ଆମ ଦେଶରେ ଆଉ କେତେ ଦିନ ?

## ନଦୀ ବିକ୍ରିର ରୂପ କଥା

ଇଂରାଜୀ 'ଆଉଟ୍ ଲୁକ୍' (ଅନୁବାଦ- 'ବିକଳ୍ପ ବିଚାର' ଓ 'ସ୍ୱାଭିମାନ')ରେ ପ୍ରକାଶ ପାଇଛି- ଛତିଶଗଡ଼ ରାଜ୍ୟର ଦୁର୍ଗ ଜିଲ୍ଲା ଅନ୍ତର୍ଗତ ୨୩.୬ କି.ମି. ଦୈର୍ଘ୍ୟ ସିଓନାଥ ନଦୀର ଜଳଧାରକୁ 'ରେଡ଼ିଅସ୍ ୱାଟର ଲିମିଟେଡ୍' ନାମକ ଏକ କମ୍ପାନୀ ରାଜ୍ୟ ସରକାରଙ୍କ ଠାରୁ ୨୨ ବର୍ଷ ପାଇଁ ଲିଜ୍ ନେଇଛନ୍ତି । ସେଥିପାଇଁ ରାଜ୍ୟ ସରକାର ରାଜସ୍ୱ ଆକାରରେ ପାଇଛନ୍ତି ମାତ୍ର ୫ ଲକ୍ଷ ଟଙ୍କା । ଏହି କମ୍ପାନୀର ମୁଖ୍ୟ କୈଳାଶ ସୋନି କହିଛନ୍ତି ଯେ, ଏହାର ପାଣିକୁ ସେ ୬ ଶହ କୋଟି ଟଙ୍କାରେ ପରିଣତ କରି ପାରିବେ । ଅନ୍ୟ ଦିଗରେ ଆଜିର ଦିନରେ ମଧ୍ୟ ସେହି ନିର୍ଦ୍ଦିଷ୍ଟ ପରିସୀମା ଓ ତାର ଦୁଇ ତଟର ଦୁଇ କିଲୋମିଟର ଭିତରେ ଚାଷୀ ନିଜର ଉଠା ଜଳସେଚନ ପମ୍ପ ବ୍ୟବହାର କରି ପାରୁ ନାହିଁ । ଯଦି କରିବ କମ୍ପାନୀକୁ ପାଣିର ଦାମ ଦେବାକୁ ହେବ । ଗାଈ ଗୋରୁ ମଧ୍ୟ ସେ ପାଣି ବ୍ୟବହାର କରି ପାରୁ ନାହାନ୍ତି । ମତ୍ସ୍ୟଜୀବୀ ମାଛ ମାରିବା ଅଧିକାରରୁ ବଂଚିତ ଏବଂ ନଦୀର ତଳ ମୁଣ୍ଡରେ ଥିବା ଜନତା ପାଣିରୁ ବଂଚିତ । କାରଣ କମ୍ପାନୀ ପାଣିକୁ ଅଟକାଇ ରଖି ଦେଉଛି । କହିବା ବାହୁଲ୍ୟ ଯେ, ବଡ଼ ବଡ଼ କମ୍ପାନୀ ଓ ପଇସା ବାଲା ଲୋକଙ୍କୁ ଏଇ କମ୍ପାନୀ ନଦୀର ପାଣି ବିକ୍ରି କରି ଏତେ ଧନ ଅର୍ଜନ କରିବ । (ଏଠାରେ ପ୍ରକାଶ ଥାଉ କି, ଅଜିତ ଯୋଗୀ ସରକାର ଜନ ମତର ଚାପରେ ସାମ୍ନାରେ ନିର୍ବାଚନକୁ ଆଖି ଆଗରେ ରଖି ନିକଟରେ ଚୁକ୍ତି ବାତିଲ କରିଛନ୍ତି) ।

ସିମିତି ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ସହ ଫ୍ରାନ୍ସ ୱାଟର ଏଜେନ୍ସିର କର୍ମକର୍ତ୍ତା ମାନେ ଆସି ଆଲୋଚନା କରି ଯାଇଛନ୍ତି । ଜଳ ତଥା ନଦୀ ଅବବାହିକା ଗୁଡ଼ିକୁ ବିଭିନ୍ନ ଜୋନ୍ କରି ବେପାରୀ ମାନଙ୍କ ହାତରେ କର୍ପୋରେଟ୍ ପରିଚାଳନା ପାଇଁ ହସ୍ତାନ୍ତର କରିବାକୁ ଘୋଷିତ ଜଳନୀତିରେ ସ୍ପଷ୍ଟ ଭାବେ କୁହାଯାଇଛି । ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା ଅନୁଯାୟୀ ଋଷିକୁଲ୍ୟା ନଦୀ ଅବବାହିକାର ପରିଚାଳନା ପ୍ରଥମେ ଫ୍ରାନ୍ସର ଭିଭିଣ୍ଡି କମ୍ପାନୀକୁ ଦିଆଯିବାର ସୂଚନା ମିଳୁଛି ।

ଅନ୍ୟ ଦିଗରେ ଗଙ୍ଗା ଜଳକୁ ତେହେରି ଡ୍ୟାମରୁ ଆଣି ଦିଲ୍ଲୀର ସୋନିଆ ବିହାରକୁ ଯୋଗାଇବା ପାଇଁ ଫ୍ରାନ୍ସର ସୁଏଜ୍ କମ୍ପାନୀକୁ ଦିଆଯାଇଛି । ସେ ଏକ ଲିଟର ପିଛା ପାଣିର ଦାମ ଧାର୍ଯ୍ୟ କରି ସାରିଲାଣି । ଏହି କମ୍ପାନୀକୁ ୧୦ ବର୍ଷର ଗ୍ୟାରେଣ୍ଟି ଦିଆଯାଇଛି ।

ଏହା ବ୍ୟତୀତ ଅନ୍ୟ କେତେକ ରାଜ୍ୟ ସରକାର ମଧ୍ୟ ଏଇ ପଥ ଅନୁସରଣ କରୁଥିବାର ସୂଚନା ମିଳୁଛି ।

## ଓଡ଼ିଶା ସରକାର-କିଛି ତଥ୍ୟ କିଛି ପ୍ରତିକ୍ରିୟା

ଓଡ଼ିଶାର ମୋଟ ଲୋକ ସଂଖ୍ୟାର ଏକ ଚତୁର୍ଥାଂଶ ପାଖାପାଖି, ଅର୍ଥାତ ୨୨ରୁ

୨୪ ଭାଗ କେବଳ ଆଦିବାସୀ । ଓଡ଼ିଶା ସରକାରଙ୍କ ରିପୋର୍ଟ ଅନୁଯାୟୀ ରାଜ୍ୟରେ ସର୍ବମୋଟ ୨୨ଟି ଜିଲ୍ଲାର ଅରଣ୍ୟ ପର୍ବତରେ ଆଦିବାସୀ ତଥା ବନବାସୀ ମାନଙ୍କର ଅଣରାଜସ୍ୱ ଗାଁ ଓ ଅଣ ପଟ୍ଟାଜମି ରହିଛି । ସରକାରୀ ହିସାବ ଅନୁଯାୟୀ ସମୁଦାୟ ୫,୧୧୩ଟି ଜଙ୍ଗଲ ଗାଁ ରହିଛି ଓଡ଼ିଶାରେ । ସେଥିରୁ ୩,୬୦୮ଟି ଗାଁ କେବଳ ଆଦିବାସୀ ମାନଙ୍କର । ଏହାର ସର୍ଭେ ହୋଇ ସେଥିରୁ ମାତ୍ର ୨୬୪ଟି ଗାଁ ୧୯୮୦ ମସିହା ପୂର୍ବରୁ ଥିଲା ବୋଲି ଜଙ୍ଗଲ ମନ୍ତ୍ରୀ ଡିସେମ୍ବର ୫,୨୦୦୨ରେ ବିଧାନସଭାରେ ଯେ ବିବୃତି ଦେଇଛନ୍ତି, ତାର ସତ୍ୟତା କେତେ ଦୂର ? ସତରେ କଣ ସର୍ଭେ ହୋଇଛି ? ଜଙ୍ଗଲ ଓ ରାଜସ୍ୱ ବିଭାଗ ଏପରି ସର୍ଭେର କିମିୟା କରି ପାରିବେ କି ? ଯାହା ବନବାସୀ କି ଓଡ଼ିଶାର ସାଧାରଣ ଜନତା ସହ ଦାୟିତ୍ୱପୂର୍ଣ୍ଣ ନାଗରିକ ଜମା ଜାଣି ପାରିବେ ନାହିଁ ? ପୁଣି ବିନା ସମୟରେ ଚାହୁଁ ଚାହୁଁ ତାହା ସଂପନ୍ନ ହୋଇଯିବ । ନା ଏହା ଦେଶବାସୀ ଏବଂ ଆଇନ ପ୍ରତି ଆଖିଠାର ? ଏଭଳି ସର୍ଭେର ତଥାକଥିତ ରିପୋର୍ଟ ସର୍ବାଦୌ ମିଥ୍ୟା, ପ୍ରତାରଣା ପୂର୍ଣ୍ଣ ତଥା ଅଭିସନ୍ଧି ମୂଳକ । ଯାହା ବ୍ୟାପକ ଅରଣ୍ୟବାସୀଙ୍କୁ ଆପଣା ଭିଟାରୁ ବେଦଖଲ, ବେଘର, ବେଆଶ୍ରା କରି ଅନିର୍ଦ୍ଦିଷ୍ଟ ଜୀବନ ପଥରେ ଠେଲି ଦେବା ପାଇଁ ଉଦ୍ଦିଷ୍ଟ । ଏଠାରେ ତତ୍କାଳୀନ ହରିଜନ ଓ ଆଦିବାସୀ କମିଶନର ବିଡି ଶର୍ମାଙ୍କ ରିପୋର୍ଟରୁ ଏକ ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ମନେ ପକାଇ ଦିଆଯାଉଛି । ଯଥାର୍ଥରେ ସେ ଆଶଙ୍କା ପ୍ରକାଶ କରି କହିଥିଲେ- ଯଦି କେବଳ ଜଙ୍ଗଲ ବିଭାଗ ଓ ଅନ୍ୟାନ୍ୟ ସରକାରୀ ବିଭାଗର କାଗଜପତ୍ର ଉପରେ ନିର୍ଭର କରି ଏଭଳି ସର୍ଭେ କାର୍ଯ୍ୟକୁ ଆଗେଇ ନିଆଯିବ, ତେବେ ମୁଖ୍ୟଭାଗ ଆଦିବାସୀ ନିଜ କେଶ୍ ହାରି ସାରିଛନ୍ତି ବୋଲି ଧରି ନେବାକୁ ହେବ । ବାସ୍ତବରେ ଆଜି ତାହା ହିଁ ହୋଇଛି ଓଡ଼ିଶା କ୍ଷେତ୍ରରେ । ଆଦିବାସୀ ମାନେ ଖାଲି କେଶ ନୁହେଁ, ତାଙ୍କର ମୌଳିକ ଅଧିକାର ହରାଇବାକୁ ବସିଛନ୍ତି । ୨୬୪ଟି ଗାଁକୁ ବାଦ୍ ଦେଲେ ଏବେ ହିସାବ ଅନୁଯାୟୀ ଉଚ୍ଛେଦ ହେବେ ସମୁଦାୟ ୪,୮୪୯ଟି ଜଙ୍ଗଲ ଗାଁ; ସେଥିରେ ସଂସାର ସଜେଇ ବସବାସ କରୁଥିବା ଅଢ଼େଇ ଲକ୍ଷ ପରିବାରର ପ୍ରାୟ ଦଶ ଲକ୍ଷ ବନବାସୀ । ଅପ୍ରେଲ ୨୮,୨୦୦୩ରେ କେନ୍ଦ୍ର ସରକାରଙ୍କ ଅନୁସୂଚିତ କ୍ଷେତ୍ର ଓ ଅନୁସୂଚିତ ଜାତି ଆୟୋଗ ଉପ କମିଟିର ଅଧକ୍ଷ ଦିଲ୍ଲୀପ ସିଂ ଭୁରିଆ ତାଙ୍କ କମିଟି ସହ ନବରଙ୍ଗପୁର ଗସ୍ତ ସମୟରେ କହିଛନ୍ତି- ଏହି ଜିଲ୍ଲାରେ କେବଳ ୧୪,୪୦୦ ଆଦିବାସୀ ପରିବାର ୧୭,୩୫୦ ହେକ୍ଟର ଜଙ୍ଗଲ ଜମିରେ ଜବର ଦଖଲ କରି ରହିଛନ୍ତି । ତେବେ ଏକ ଆଦିବାସୀ ପରିବାର ପିଛା କେତେ ଜମି ପଡୁଛି ? ଏଇ ଜଙ୍ଗଲଜୀବୀ ଓ କୃଷିଜୀବୀ ଜାତି ପାଇଁ କଣ ଶେଷ ପର୍ଯ୍ୟନ୍ତ ଜଙ୍ଗଲ ଓ ଜମି କିଛି ବି ରହିବ ନାହିଁ ? ଆଜି ଯେଉଁ ଆଦବାସୀ ପାଇଁ ସାରା ଦେଶ ଅସ୍ଥିର, ଶେଷ ପର୍ଯ୍ୟନ୍ତ କଣ

ସେମାନଙ୍କ ଜୀବନ ଜଳବୁନ୍ଦା ପରି ସାରୁ ପତ୍ରରେ ଟଳମଳ ହେଉଥିବ ?

## ଅଣ ରାଜସ୍ୱ ଗାଁର ଅଧିବାସୀଙ୍କୁ ବିଭକ୍ତିକରଣ

୧. ଜଙ୍ଗଲରେ ବସବାସ କରୁଥିବା ମୂଳ ଆଦିବାସୀ, ଯେଉଁମାନଙ୍କ ନାମରେ ଆଜି ଯାଏଁ ଜମି ଜମା ବନ୍ଦୋବସ୍ତ କରାଯାଇ ନାହିଁ ।

୨. ସରକାରଙ୍କ ଦ୍ୱାରା କାଠ କାଟିବାକୁ ଯାଇ ବସା ଯାଇଥିବା ଜଙ୍ଗଲ ଗାଁ, ଯେଉଁମାନଙ୍କ ଗାଁକୁ ରାଜସ୍ୱ ଗାଁର ମାନ୍ୟତା ଦିଆଯାଇ ନାହିଁ କିମ୍ବା ସେମାନଙ୍କ ଜମିକୁ ପଟ୍ଟା ଦିଆଯାଇ ନାହିଁ । (ଏଠାରେ ପ୍ରକାଶ ଥାଉ କି, ସରକାରୀ ତଥ୍ୟ ଅନୁଯାୟୀ ଏପରି ୨୧ଟି କାଠ କଟାଳୀ ମାନଙ୍କ ଗାଁ ଓଡ଼ିଶାର ଜଙ୍ଗଲ ଭିତରେ ଅଛି । ସମ୍ବାଦପତ୍ରର ଏକ ତଥ୍ୟ ଅନୁଯାୟୀ ଅନୁଗୋଳ ଜିଲ୍ଲାରେ ଥିବା ସାତକୋଶିଆ ଅଭୟାରଣ୍ୟରେ ଜଙ୍ଗଲ ବିଭାଗକୁ କାମରେ ସାହାଯ୍ୟ କରିବା ପାଇଁ ୧୯୧୨ ମସିହାରେ ୩ଟି ଜଙ୍ଗଲ ଗ୍ରାମ ଯଥା- ତରଭା, ଅଶନ ବହାଳ ଓ ଭୁକୁଣ୍ଡି ଜଙ୍ଗଲ ବିଭାଗର ଆମନ୍ତ୍ରଣ କ୍ରମେ ସ୍ଥାପନ କରାଯାଇଥିଲା । ସେମାନଙ୍କୁ ବଣେଇ, ସୋନପୁର, ସମ୍ବଲପୁର ଅଂଚଳରୁ ଜଙ୍ଗଲର ବିଭିନ୍ନ କାମ ପାଇଁ ଅଣା ଯାଇଥିଲା ।)

୩. ଭୂମିହୀନ ଗରିବ ଜଙ୍ଗଲ ଦଖଲକାରୀ । (ପ୍ରକାଶ ଥାଉ କି ଏମାନଙ୍କ ଭିତରେ ସମତଳ ଓଡ଼ିଶାର ଭୂମିହୀନ ଆଦିବାସୀ, ହରିଜନ ତଥା ସାଧାରଣ ଗରିବ ସହ ଭିନ୍ନ ପ୍ରଦେଶର ସର୍ବହରା ଆଦିବାସୀ ଓ ହରିଜନ ଅଛନ୍ତି) ।

୪. ପ୍ରକୃତ ଜବରଦଖଲକାରୀ: ଯେଉଁମାନେ ଉଦ୍ଦେଶ୍ୟମୂଳକ ଭାବେ ଜଙ୍ଗଲ ଜବରଦଖଲ କରି ରହିଛନ୍ତି ।

(କ) ଲାଭଖୋର ଜମି ମାଫିଆ

(ଖ) ବହିରାଗତ ବିଦେଶୀ ଅନୁପ୍ରବେଶକାରୀ

ଏଠାରେ ପରିଷ୍କାର ହେବା ଉଚିତ ଲାଭଖୋର ଜମି ମାଫିଆ ଓ ବହିରାଗତ ବିଦେଶୀ ଅନୁପ୍ରବେଶକାରୀଙ୍କୁ ଉପରୋକ୍ତ ତିନି ଶ୍ରେଣୀର ବନବାସୀଙ୍କ ସହ ମିଶେଇ ଦେଇ ସମସ୍ତଙ୍କୁ ଜବରଦଖଲକାରୀ କହି ସେଇ ଅନୁଯାୟୀ ଉଚ୍ଛେଦ କରିବା ଜମାରୁ ନ୍ୟାୟ ସଂଗତ ନୁହେଁ । ଅନ୍ୟ ଦିଗରେ ବ୍ୟାପକ ଆଦିବାସୀ ସମାଜ ଅରଣ୍ୟରେ ନିଜର ଅସ୍ତିତ୍ୱ ରକ୍ଷା ପାଇଁ ଯେତେବେଳେ ଆନ୍ଦୋଳନର ମାର୍ଗ ଧରିବେ- ସେତେବେଳେ ସବୁଠୁଁ ବେଶୀ ଫାଇଦା ଉଠାଇବେ ଏଇ ଜମି ମାଫିଆ ଓ ବିଦେଶୀ ଅନୁପ୍ରବେଶକାରୀମାନେ । ଗୋଳିଆ ପାଣି ସେମାନଙ୍କୁ ସୁହାଇବ । ଏହା ବିଭିନ୍ନ ଆନ୍ଦୋଳନ ସମୟରେ ପ୍ରମାଣିତ ହୋଇଛି ।

ସେତେବେଳେ ସେମାନେ ଗଣସଂଗ୍ରାମର ଆଢୁଆଳରେ ରହି ନିଜକୁ ସୁରକ୍ଷିତ କରିବେ । ସରକାର ସେମାନଙ୍କର କିଛି କରି ପାରିବେ ନାହିଁ । ତଦ୍ୱାରା ସେମାନଙ୍କ କାର୍ଯ୍ୟ ସାଧନ ଆହୁରି ସହଜସାଧ ହେବ ଏବଂ ସେମାନେ ଅଧିକ ଫାଇଦା ଉଠାଇବେ । ଅନ୍ୟ ପକ୍ଷରେ ଆଦିବାସୀ ତଦ୍ୱାରା ଅଧିକ କ୍ଷତିଗ୍ରସ୍ତ ହେବ ।

## ଚରମ ପ୍ରତାରଣା

୧୯୮୦ ମସିହା ପୂର୍ବରୁ ଜଙ୍ଗଲ ମଧରେ ଗଢ଼ି ଉଠିଥିବା ବସତି ଗୁଡ଼ିକୁ ବିଧାନସଭା ନିର୍ବାଚନ ସମୟରେ ରାଜସ୍ୱ କିମ୍ବା ପଡ଼ା ଗ୍ରାମର ମାନ୍ୟତା ଦେବା ଲାଗି ବିଶ୍ୱଭୂଷଣ ହରିଚନ୍ଦନ ଘୋଷଣା କରିଥିଲେ । ଉଚ୍ଛେଦ ପ୍ରକ୍ରିୟାକୁ ଆଖି ଆଗରେ ରଖି ନିକଟରେ ବିଜେପି ସଭାପତି ମନମୋହନ ସାମଲ ଓ ରାଜସ୍ୱ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ତାଙ୍କର ବିଧାୟକ ଦଳ ନେଇ ମୁଖ୍ୟମନ୍ତ୍ରୀଙ୍କୁ ଭେଟିବା ଅବକାଶରେ କହିଛନ୍ତି- ୧୯୮୦ ମସିହା ପୂର୍ବରୁ ଜଙ୍ଗଲରେ ବସବାସ କରୁଥିବା ଆଦିବାସୀ ପରିବାର ମାନଙ୍କୁ ଚିହ୍ନଟ କରିବା ଲାଗି ଗ୍ରାମ ସଭାର ମତାମତକୁ ଗୁରୁତ୍ୱ ଦିଆଯାଉ । ସେମାନଙ୍କୁ ୪ଟି ଶ୍ରେଣୀରେ ବିଭକ୍ତ କରାଯାଉ । (୧) ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ପରିବାର । (୨) କ୍ଷତି ପୂରଣ ପାଇଥିବା ପରିବାର । (୩) ସଂରକ୍ଷିତ ଜଙ୍ଗଲ ନିକଟରେ ବସବାସ କରୁଥିବା ଆଦିବାସୀ । (୪) ପଡ଼ୋଶୀ ରାଜ୍ୟରୁ ଆସିଥିବା ଆଦିବାସୀ ।

ଏହା ସରଳ ଆଦିବାସୀ ପ୍ରତି ଚରମ ପ୍ରତାରଣା ନୁହେଁ କି ? ଏହା କଣ ଆଦିବାସୀ ଏକତାକୁ ଭାଗ ଭାଗ କରିବାର ଅପକୌଶଳ ନୁହେଁ କି ? ଆଜି ବି ଏପରି ଆଦିବାସୀ ଅଛନ୍ତି, ଯେଉଁମାନେ ରାଜ୍ୟର ସୀମା ପରିସୀମା କିଛି ବୁଝି ନାହାନ୍ତି- ଏହା କଣ ସତ୍ୟ ନୁହେଁ ? ଏହା କଣ ସତ୍ୟ ନୁହେଁ, ସରକାର ସମୁଦାୟ ୫,୧୧୩ଟି ବନବାସୀ ଗାଁରୁ ଯେଉଁ ୨୬୪ଟି ଗାଁ ସରକାରୀ ସ୍ୱୀକୃତି ମିଳିବ ବୋଲି ଚିହ୍ନଟ କରିଛନ୍ତି- ଜନଜୀବନରେ ସେଥିପାଇଁ କୌଣସି ସର୍ଭେର ପ୍ରକ୍ରିୟା ଆରମ୍ଭ ହୋଇ ନାହିଁ କିମ୍ବା ଗ୍ରାମ ସଭାର ମତାମତ ନିଆଯାଇ ନାହିଁ । ଏହା କଣ ସତ୍ୟ ନୁହେଁ ଚୁପ୍‌ଚାପ୍ ରାଜଧାନୀରେ ବସି ଉଦ୍ଦେଶ୍ୟମୂଳକ ଭାବେ ସେ ଘୋଷଣା କରାଯାଇଛି ଏବଂ ଶେଷ ପର୍ଯ୍ୟନ୍ତ ୨୬୪ଟି ଗାଁ ଯେ ରହିବ ତାର ବି ଅର୍ଥ କଣ ?

ଆଦିବାସୀ ଓ ହରିଜନ ଅଂଚଳର ନୀତି ନିୟମ ଓ ଶାସନର ମୂଲ୍ୟାଙ୍କନ ପାଇଁ ସ୍ୱତନ୍ତ୍ର ଭାବେ ଆଦିବାସୀ ଓ ହରିଜନ କମିଶନ (ନ୍ୟାସନାଲ କମିଶନ ଫର୍ ଏସ୍‌ସି ଆଣ୍ଡ ଏସ୍‌ଟି) ନାମରେ ଏକ ସାମ୍ବିଧାନିକ ସଂସ୍ଥା ରହିଛି । ସମ୍ବିଧାନର ଧାରା ୩୩୮ (୯)ରେ କୁହାଯାଇଛି- "The prior and every State Govt. Shall consult the commission on all major policy matters effecting scheduled tribes."

ଏଠାରେ ପ୍ରଶ୍ନ, ଆଦିବାସୀ ଉଚ୍ଛେଦ ଭଳି ଏକ ଜଟିଳ ଓ ଅମାନବୀୟ ନିଷ୍ପତ୍ତି କାର୍ଯ୍ୟକାରୀ କରିବା ପୂର୍ବରୁ ସରକାର କମିଶନଙ୍କ ପରାମର୍ଶ ଲୋଡ଼ିଛନ୍ତି କି ? ଏଣେ ନିର୍ଦ୍ଦିଷ୍ଟ ସମୟ ସୀମା, ଅର୍ଥାତ ଡିସେମ୍ବର ୨୦୦୩ ସୁଦ୍ଧା ଜଙ୍ଗଲ ମଧ୍ୟରେ ଥିବା ସମସ୍ତ ବେଆଇନ ବସ୍ତି ଓ ଜନ ବସତିକୁ ଉଚ୍ଛେଦ କରିବା ପାଇଁ ସରକାର ନିର୍ଦ୍ଦେଶ ଦେଇଛନ୍ତି । ଏବଂ ସବୁଠୁଁ ଚିନ୍ତାର ବିଷୟ ହେଉଛି ୨୦୦୩ ନଭେମ୍ବର ସୁଦ୍ଧା ସେଭଳି ଉଚ୍ଛେଦ ନୋଟିସ ଜାରି ହୋଇଗଲାଣି ।

ଅନ୍ୟ ପକ୍ଷରେ ୧୯୮୦ ମସିହାରେ କେନ୍ଦ୍ର ସରକାର ପ୍ରଣୟନ କରିଥିବା ଜଙ୍ଗଲ ସଂରକ୍ଷଣ ଆଇନର ବ୍ୟାପକ ଅବମାନନା କରାଯାଇ ଜଙ୍ଗଲ ଜମିକୁ ରାଜସ୍ୱ ଜମି ନାମରେ ଲିଜ୍ ଦିଆ ଚାଲିଲା । ସେହିପରି କାଠର ଚୋରା ଚାଲାଣ ପାଇଁ ଜଙ୍ଗଲ କଟାଗଲା । ରାଜ୍ୟର ୬୦ ହଜାର ହେକ୍ଟର ଜଂଗଲ ଜମିକୁ ଲିଜ୍ ସୂତ୍ରରେ ଦିଆଯାଇଥିବା କଥା ଅଭିଯୋଗ ହୋଇ ବାହାରିଲା । ଜଙ୍ଗଲ ଜମିରୁ କାଠ ଚାଲାଣ ବେଆଇନ୍, ହାଇକୋର୍ଟଙ୍କ ଏଇ ନିଷେଧାଦେଶ କୋର୍ଟ ପରିସୀମା ଡେଇଁ କାର୍ଯ୍ୟକାରୀ ରୂପ ନେଲା ନାହିଁ ।

ଅଦ୍ଭୁତ ଏ ସରକାର । କାହାରି ସହ କାହାରି ତାଳ ମେଳ ନାହିଁ । ଯେ' ଯାହା ବାଟରେ ଚାଲିଛନ୍ତି । କିନ୍ତୁ ସରକାର ରହିଛି, ନ୍ୟାୟପାଳିକା ରହିଛି ଏବଂ ଶେଷ ପର୍ଯ୍ୟନ୍ତ ଆଦିବାସୀ ମାନେ ଯାହା ଉଚ୍ଛେଦ ପଥରେ ଚାଲିଛନ୍ତି ।

## ମନେ ରଖିଲେ ଭଲ

ଓଡ଼ିଶା ଓଡ଼ିଆଙ୍କ ସହିତ ଏକ ଆଦିବାସୀ ଅଧ୍ୟୁଷିତ ରାଜ୍ୟ । ଏଠିକାର ରାଜନୀତି, ଅର୍ଥନୀତି, ସାହିତ୍ୟ, ସଂସ୍କୃତି ଏବଂ ସାମାଜିକ ବିକାଶ ଧାରା ସହିତ କେଉଁ ଆବହମାନ କାଳରୁ ଆଦିବାସୀର କ୍ଷୀର-ନୀରର ସଂପର୍କ । ଦାରୁ ଦେବତା, ବନ ଦେବତା, ବୃକ୍ଷ ଦେବତା ଓ ପାଷାଣ ଦେବତା ଇତ୍ୟାଦି ଏହାର ପ୍ରମାଣ । ଗୋଟିକୁ ଛାଡ଼ି ଦେଲେ ଅନ୍ୟଟିର ଅସ୍ତିତ୍ୱ ନାହିଁ । ଓଡ଼ିଶାରେ ଓଡ଼ିଆ ଓ ଆଦିବାସୀ ସମାଜ ଏକଇ ମୁଦ୍ରାର ଦୁଇ ପାର୍ଶ୍ୱ । ଏକ ସଭ୍ୟତା ନଦୀର ଦୁଇ ତୀର । ଓଡ଼ିଆର ସବୁଠୁଁ ପ୍ରାଚୀନତମ ବିଶ୍ୱାସଯୋଗ୍ୟ ବନ୍ଧୁ ତଥା ଶ୍ରମସାଥୀ ଓ ନିକଟ ହୃଦୟର ଅନ୍ତରଙ୍ଗ ମଣିଷ ହେଲା ଆଦିବାସୀ ।

ହିମାଳୟ ଠାରୁ କୁମାରିକା ସାରା ଭାରତ ବର୍ଷ ପାଇଁ ଏହା ମଧ୍ୟ ସମାନ ଭାବେ ସତ୍ୟ । ସୁପ୍ରାଚୀନ ଭାରତୀୟ ସଭ୍ୟତା ପାଇଁ ଆଦିବାସୀ ହିଁ କର୍ମ ତଥା କୂର୍ମର ଅବତାର । ତାକୁ ବଳି ଦେଲେ ପାଟିକୁ ହାତ ଯିବ ନାହିଁ ହେ ବାବୁମାନେ । ଏଠାରେ ଆଦିବାସୀ ଉଚ୍ଛେଦ ଯଦି ପୂର୍ଣ୍ଣାଙ୍ଗ ରୂପ ନିଏ, ତେବେ ଓଡ଼ିଶାର ବିକାଶ ଧାରା 'ଥ' ମାରି ରହିଯିବ, ଚକ ଆଉ ଆଗକୁ ଗଡ଼ିବ ନାହିଁ । କିଏ ଶସ୍ତା ଶ୍ରମରେ ତମର ସଭ୍ୟତା ଗଢ଼ିବ ? କିଏ ଜୋତା, ଟୋପି ଓ ବିଶ୍ରାମାଗାର

ବିନା ଦୂଷିତ ପାନୀୟ ଜଳ ପିଇ ତମ ଖଣି ଗାତରେ କାମ କରିବ ? କିଏ ନଦୀ ବାନ୍ଧିବ, ପର୍ବତ ଫଟେଇବ । ଢିପକୁ ସମତଳ କରିବ ? କିଏ ସହିଦ ହେବ ମଣିଷ ସଭ୍ୟତା ପାଇଁ ?

ସରକାର ଯାହା ୨୨ଟି ଜିଲ୍ଲାରେ ଆଦିବାସୀର ଜମିଜମା ସମସ୍ୟା ରହିଛି ବୋଲି କହୁଛନ୍ତି- ତାହା କେବେ ବି ସତ୍ୟ ନୁହେଁ । ଏବେ ମଧ୍ୟ ପଶ୍ଚିମ ବାଲେଶ୍ୱରର ଆଦିବାସୀ ବହୁଳ ନୀଳଗିରି ସବ୍‌ଡିଭିଜନରେ ଅଣପଟ୍ଟା ଜମି ଓ ଅଣ ରାଜସ୍ୱ ଗାଁ ସବୁ ରହିଛି । ଆଇନଗତ ଦିଗରୁ ଆଦିବାସୀର ଜମି ସମସ୍ୟା ଚିର କାଳର । ଯେଉଁଠାରେ ଆଦିବାସୀ, ତାର ଜମିଜମା ନେଇ ସେଠାରେ କିଛି ନା କିଛି ଜଟିଳତା । ଏଇ ବିଚାରରେ ଓଡ଼ିଶାର ବାକି ଆଠଟି ଜିଲ୍ଲାରୁ ଯେଉଁଠି ଯିମିତି ଆଦିବାସୀ ଅଛନ୍ତି- ସେଠାରେ ସ୍ୱାଭାବିକ ଭାବେ କିଛି ନା କିଛି ଭୂମି ସମସ୍ୟା ରହିଛି । କାରଣ ଆଦିବାସୀର ସଂପତ୍ତି ପ୍ରତି ଧାରଣା ଅନ୍ୟ ମାନଙ୍କ ଠାରୁ ଭିନ୍ନ । ଜଙ୍ଗଲରେ ସେମାନେ ଧାରାବାହିକ ବସବାସ କରି ଆସୁଥିଲେ ମଧ୍ୟ ସେମାନଙ୍କ କଳାଡିହ ଓ ଜମିର ରେକର୍ଡ ନେଇ ଗଭୀର ଅରଣ୍ୟରେ ଥିବା ଆଦିବାସୀ ମାନେ ବିଶେଷ କିଛି ଭାବି ନଥାନ୍ତି । ସେମାନଙ୍କର ବିଶ୍ୱାସ ଜଙ୍ଗଲ ଓ ଜମି ସେମାନଙ୍କୁ ମହାପୁରୁ ଦେଇଛନ୍ତି । କେହି ଛଡ଼ାଇ ନେବେ ନାହିଁ । ଏପରି ଆଦିମ ବିଶ୍ୱାସର ମଣିଷ ଏବେ ବି ଆଦିବାସୀଙ୍କ ଭିତରେ ଅଛନ୍ତି । ସେପରି ଏକ ଉଦାହରଣ ଏଠାରେ ରଖୁଛି ।

୨୦୦୩, ଜୁଲାଇ ମାସ । ଆଦିବାସୀ ସଂଘର ସଭାପତି ଏବଂ ଅନ୍ୟ ଜଣେ ଆଦିବାସୀ ନେତା ମାଲକାନଗିରିର ସିନ୍ଧ୍ରିମାଲ ପଞ୍ଚାୟତର ଦୁର୍ଗମ ଘାଟି ଭିତରେ ଥିବା ମେଡ୍ରିକାଲ ଗାଁରେ ପହଞ୍ଚିଲେ । ଉଦ୍ଦେଶ୍ୟ, ସେ ଗାଁର ବାସିନ୍ଦା କୋୟା ମାନଙ୍କୁ ଆଦିବାସୀ ଉଚ୍ଛେଦ ପ୍ରସଙ୍ଗ ବୁଝାଇ ସଚେତନ କରିବା । କିନ୍ତୁ ସମ୍ଭବ ହେଲା ନାହିଁ । ଏମାନଙ୍କର ସମସ୍ତ ଉଦ୍ୟମ ବିଫଳ ହେଲା । ସେମାନେ ଗଭୀର ଆତ୍ମବିଶ୍ୱାସରେ ଯୁକ୍ତି ବାଢ଼ିଲେ- ଏ ଡଙ୍ଗର, ଜଙ୍ଗଲ ଓ ଜମି ସେମାନଙ୍କୁ ବର୍ମା (ବ୍ରହ୍ମା) ଦେଇଛନ୍ତି । କେହି ତାଙ୍କୁ ଏଠାରୁ ତଡ଼ି ଦେଇ ପାରିବେ ନାହିଁ ।

ସେହିପରି ଫଳନ୍ତି ବୃକ୍ଷ ସଂପର୍କରେ ଅନ୍ୟ ଏକ ଉଦାହରଣ ରଖୁଛି ଏଠାରେ । ସେଥିରୁ ବୁଝି ହେବ ଆଦିବାସୀ ସହ ଗଛର ସଂପର୍କ କେତେ ନିବିଡ଼ । ସେ କେତେ ଭଲ ପାଏ ଗଛକୁ ।

୧୯୯୫ ମସିହା ନଭେମ୍ବର ମାସ । ସେତେବେଳେ ପଦ୍ମଗିରି ପଞ୍ଚାୟତର ତୁଲେଂଗୁଡ଼ାଠାରେ ଆକୁର ନଦୀର ଦୁଇତୀର ବ୍ୟାପୀ ଅବିଭକ୍ତ କୋରାପୁଟର ଅଘୋଷିତ ମାଫିଆ ସମ୍ରାଟ ଦ୍ୱାରା ବ୍ୟାପକ ଜଙ୍ଗଲ କଟା ହୋଇଥାଏ । ରାତି ୯ଟା ପରେ ପଦ୍ମଗିରି ବଜାରରୁ ଆମେ ଯେତେବେଳେ ତୁଲେଂଗୁଡ଼ା ପଥରେ ଆଗେଇଲୁ ଆମ ସହିତ ସହଯୋଗ କରିଥିଲେ କଞ୍ଚୋଲି ଗାଁର ଆଦିବାସୀମାନେ । ଜଙ୍ଗଲ ଭିତରେ ଏକ ବାଙ୍କ ଜାଗାରେ ଆମେ

ଏକ ମହୁଲ ଗଛ କାଟି ରାସ୍ତାରେ ପକାଇ ଦେବା ପାଇଁ କହିଲୁ । ଉଦ୍ଦେଶ୍ୟ, ତଦ୍ୱାରା କାଠ ବୋଝେଇ ଟ୍ରକ ଆଉ ଆଗକୁ ଯାଇ ପାରିବ ନାହିଁ । କିନ୍ତୁ ଆଦିବାସୀମାନେ କିଛି ସମୟ ଗୁମ୍ ମାରିଯାଇ ପ୍ରାୟ ୪୫ ମିନିଟ୍ ଧରି ବିଚାର ଆଲୋଚନା କଲେ । ଏଣେ ନକାଟିଲେ ନଚଳେ; ତେଣେ ଫୁଲ ଦେଉଥିବା, ଫଳ ଦେଉଥିବା, ପତ୍ର ଦେଉଥିବା, ତେଲ ଦେଉଥିବା ଓ ପାନୀୟ ଯୋଗାଉଥିବା ମାତୃରୂପୀ ମହୁଲ ଗଛକୁ କାଟିବାକୁ ପଡ଼ିବ । ଆଦିବାସୀଙ୍କ ପାଖରୁ ଶେଷ ପର୍ଯ୍ୟନ୍ତ କିନ୍ତୁ ରାୟ ମିଳିଲା- ଗଛ ନୁହେଁ, କେବଳ ଡାଳଟିଏ ହିଁ କଟାଯିବ । ଶେଷ ପର୍ଯ୍ୟନ୍ତ ତାହା ହିଁ ହେଲା । ସେଦିନର ସେଇ ଭୟାବହ ରାତିରେ ସଂଘର ସାଧାରଣ ସମ୍ପାଦକଙ୍କ ସହ ଅନ୍ୟ ଆଦିବାସୀ ନେତା ଓ କର୍ମୀମାନେ, ଯେଉଁ ଅଳ୍ପ କେତେ ଜଣ ଆମେ ସହଯାତ୍ରୀ ଥିଲୁ ସମସ୍ତଙ୍କ ଭିତରେ ଆଜି ବି ସେ ସ୍ମୃତି ଉଦ୍‌ଜୀବିତ ରହିଛି ।

ଆଦିବାସୀ ଜଙ୍ଗଲକୁ ଭଲ ପାଏ, ଜମିକୁ ଭଲ ପାଏ ତାର ଆଦିମ ଦୃଷ୍ଟି ଭଙ୍ଗିରେ । ସେ ପ୍ରକୃତିର ସନ୍ତାନ । ଜଙ୍ଗଲ ଓ ଜଙ୍ଗଲ ମାଟି ସହ ତାର ଅବିଚ୍ଛେଦ୍ୟ ସଂପର୍କ । ସେ ପଥର ଓ ପର୍ବତର ଅଂଶ । ଏ ସବୁ ଧାରଣା ତାର ଅସ୍ଥି ମଜ୍ଜାଗତ । ସେ ଜନ୍ମରୁ ଅରଣ୍ୟର ବାୟୁ, ଆକାଶ, ନଦୀ-ଝୁଲା ଓ ଜୀବଜନ୍ତୁ- ଏଇ ସବୁ ଭିତରେ ବଡ଼ ହୁଏ, ବୁଢ଼ା ହୁଏ ପୁଣି ପ୍ରକୃତି କୋଳରେ ହଜିଯାଏ । ତାକୁ ଜଙ୍ଗଲରୁ ବାହାର କରି ଦେବାର ଅର୍ଥ- ମାଛକୁ ପାଣିରୁ ବାହାର କରି ଦେବା ପରି କଥା । ଏହା କରା ନଯାଉ । ପ୍ରକୃତି କୋଳରେ ବଢ଼ିଥିବା ମଣିଷଟି ପ୍ରତି ଉଚ୍ଛେଦ ଅବିଚାର କରିବା ପୂର୍ବରୁ ଶାସକ ଚକ୍ର ପୁନର୍ବାର ବିଚାର କରନ୍ତୁ ।

ଏହା ସୁସ୍ପଷ୍ଟ, ୧୯୮୦ ମସିହା ପୂର୍ବରୁ ଜଙ୍ଗଲରେ ରହି ଆସିଥିବା ଲୋକଙ୍କୁ ଜଙ୍ଗଲ ଅପରାଧ ଭିତ୍ତିରେ ଚିହ୍ନଟ କରି ସେମାନଙ୍କୁ ପଟ୍ଟା ଦେବାର ଯେ ସରକାରୀ ସତ୍ୟପାଠ, ତାହା ଅଭିସନ୍ଧି ମୂଳକ, ଅନ୍ତତଃ ଆଦିବାସୀ କ୍ଷେତ୍ରରେ ତାର କିଛି ମୂଲ୍ୟ ନାହିଁ । ସରକାରୀ କାର୍ଯ୍ୟପ୍ରଣାଳୀ ସମୀକ୍ଷା କଲେ ଆପେ ଆପେ ଅନେକ ରହସ୍ୟ ପଦାରେ ପଡ଼ିଯିବ ।

ଦେଶବ୍ୟାପୀ ଏଇ ଯେ ଆଦିବାସୀ ଉଚ୍ଛେଦ ପର୍ବର ଆୟମାରମ୍ଭ- ତାର ଭବିଷ୍ୟତ କାର୍ଯ୍ୟସୂଚୀ ନେଇ ବ୍ୟାପକ ଆୟୋଜନ ଚାଲିଥିବାର ବିଭିନ୍ନ ସମ୍ବାଦ ମିଳୁଛି । ଅନ୍ତତଃ ଓଡ଼ିଶା ସରକାର ହେଜରେ ରଖିବା ଉଚିତ- କେନ୍ଦ୍ର ସରକାର ଏଇ ଅସମ୍ବିଧାନିକ ନିର୍ଦ୍ଦେନାମା ଘୋଷଣା କରୁ ହିଁ କିପରି ସାରା ଦେଶ ସହିତ ରାଜ୍ୟର ଆଦିବାସୀ ଓ ଦଳିତ ଜନଗଣ ମୁଖର ହୋଇ ଉଠିଲେ । ସେ ଆବାଜ୍ ଶୁଭିଲା ମାଲକାନଗିରିରେ/ କୋରାପୁଟରେ/ ନବରଙ୍ଗପୁରରେ/ ରାୟଗଡ଼ାରେ/ ଗଜପତିରେ/ ଗଞ୍ଜାମରେ/ କଳାହାଣ୍ଡିରେ/ କନ୍ଧମାଳରେ/ ଫୁଲବାଣୀରେ/ ବଲାଙ୍ଗୀରରେ/ ନୟାଗଡ଼ରେ/ କେନ୍ଦୁଝରରେ/ ସୁନ୍ଦରଗଡ଼ରେ/ ଢେଙ୍କାନାଳରେ/ ଯାଜପୁରରେ/ ମୟୂରଭଂଜରେ ଏପରିକି ବାଲେଶ୍ୱରର

ନୀଳଗିରି ସହ ସାରା ଓଡ଼ିଶାରେ । ବିକ୍ଷୁବ୍ଧ ବନବାସୀର ଧାଡ଼ି ଲମ୍ବିଲା ରାଜଧାନୀ ଭୁବନେଶ୍ୱରର ରାଜପଥରେ । ଏଇ ପ୍ରତିବାଦ ଓ ପ୍ରତିରୋଧ ଧାରାରେ ଯେଉଁ ସବୁ ଆଦିବାସୀ ଓ ଦଳିତ ସଂଗଠନ ଆଗେଇ ଆସି ନେତୃତ୍ୱ ନେଲେ; ପୁଣି ଯେଉଁ ସବୁ ଗଣତନ୍ତ୍ରପ୍ରେମୀ ବୁଦ୍ଧିଜୀବୀମାନେ ସ୍ୱର ଉଠେଇଲେ- ସମସ୍ତେ ଓଡ଼ିଶାର ଦାୟିତ୍ୱପୂର୍ଣ୍ଣ ନାଗରିକ । ଅନ୍ୟ ଦିଗରେ ଚାରି ଦଶନ୍ଧିରୁ ଅଧିକ ଦକ୍ଷିଣ ଓଡ଼ିଶା, ଉତ୍ତର ଓଡ଼ିଶା ସହ ଏବକୁ ପଶ୍ଚିମ ଓଡ଼ିଶାର ଆଦିବାସୀ ଜନଜୀବନ ସହିତ ଯେପରି ସଶସ୍ତ୍ର ସଂଘର୍ଷର ବିପ୍ଳବୀ ଧାରା ଅଧିକରୁ ଅଧିକ ସାମିଲ ହେବାରେ ଲାଗିଛି, ସେତେବେଳେ ବନବାସୀ ଉଚ୍ଛେଦ ଭଳି ଏକ ସ୍ପର୍ଶକାତର ଦିଗ ସଂପର୍କରେ ସରକାର ଯେଉଁ ପଦକ୍ଷେପ ନେଉଛନ୍ତି- ତାହା କେବେ ବି ଠିକ୍ ନୁହେଁ । ସରକାର ଏହା ଭଲ ଭାବେ ମନେ ରଖିବା ଦରକାର, ଯୁଗ ଯୁଗର ରାଷ୍ଟ୍ରୀୟ ଅତ୍ୟାଚାର ଓ ପ୍ରତାରଣା ଭିତରୁ ମଣିଷର ଯେଉଁ ପ୍ରତିହିଂସା ପ୍ରତିରୋଧ ରୂପରେ ଛିଡ଼ା ହୁଏ, ତାହା କେବେ ବି ବଂଧୁକ ମୁନରେ ନିର୍ମୂଳ ହୁଏ ନାହିଁ, ତାହା କେବେ ବି ଦମନ ହୁଏ ନାହିଁ; ଲକ୍ଷ୍ୟ ଛୁଇଁବା ପରେ ହିଁ ତାହା ଥଣ୍ଡା ପଡ଼େ, ଏହା ନିଶ୍ଚିତ ।

ନିକଟରେ ବିଧାନସଭା ଭଙ୍ଗ କରିବା ସଂଗେ ସଂଗେ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ଯେ ନକ୍ସଲ ମାନଙ୍କୁ ଆଗାମୀ ରାଜ୍ୟ ନିର୍ବାଚନର ରଣାଙ୍ଗନରେ ଅବତୀର୍ଣ୍ଣ ହୋଇ ନିଜର ଲୋକ ସମର୍ଥନର ପରୀକ୍ଷା ଦେବା ପାଇଁ ଆହ୍ୱାନ ଦେଇଛନ୍ତି- ଦୁଇ ସଂଘର୍ଷରତ ରାଜନୀତିର ପରିପ୍ରେକ୍ଷୀରେ ତାହା ଅବାନ୍ତର । ଚିରକାଳ ସଂସଦୀୟବାଦୀ ଓ କ୍ରାନ୍ତିକାରୀଙ୍କ ପଥ ଭିନ୍ନ ଓ ମୁହାଁମୁହିଁ । ଯାହା ଚନ୍ଦ୍ରବାବୁଙ୍କ ପଥ ତାହା କିପରି ଆମୂଳ ପରିବର୍ତ୍ତନବାଦୀଙ୍କ ପଥ ହେବ ? ସିମିତି ଓଡ଼ିଶା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯେ ଉତ୍ତରାଧିକାର ତଥା ଶ୍ରେଣୀ ସୂତ୍ରରେ ଭାରତୀୟ ପୁଞ୍ଜିପତି ସମାଜର ଜଣେ ଏକନିଷ୍ଠ ପ୍ରତିନିଧି, ତାହା ଆଜି ଆଉ ଅଛପା ହୋଇନାହିଁ । ଆଗାମୀ ହଜାରେ ବର୍ଷ ପର୍ଯ୍ୟନ୍ତ ଏ ଗଣତନ୍ତ୍ର ସେମାନଙ୍କୁ ହୁଏତ କ୍ଷମତାସୀନ ରଖିପାରେ, କିନ୍ତୁ ତଦ୍ୱାରା ସଂଗ୍ରାମୀ ମଣିଷ ପାଖରେ କେବେ ବି ତାଙ୍କ ପ୍ରତି ଲୋକ ସମର୍ଥନ ପ୍ରତିପାଦିତ ହେବ ନାହିଁ, ଏହା ନିଶ୍ଚିତ ।

ଏଠାରେ ସମସ୍ତଙ୍କର ଜାଣିବାର ଅଧିକାର ରହିଛି, ଯେତେବେଳେ ଓଡ଼ିଶାର ଦଶଲକ୍ଷ ଅରଣ୍ୟବାସୀଙ୍କୁ ଉଚ୍ଛେଦ କରାଯିବା ପାଇଁ ଆୟୋଜନ ହେଲାଣି, ସେତେବେଳେ ସେମାନଙ୍କୁ ବିସ୍ଥାପିତ କରିବା ପାଇଁ ରାଜ୍ୟ ସରକାରଙ୍କର ଯୋଜନା କଣ ? ଏ ସମସ୍ୟା ସହ ସଂପୃକ୍ତ ସମସ୍ତ ନାଗରିକ ଜାଣନ୍ତି ଯେ, କୌରସି ବିକଳ୍ପ ବ୍ୟତୀରେକେ ହିଁ ସରକାର କାଣ୍ଡଜ୍ଞାନ ହୀନ ଭାବେ ଏହା କାର୍ଯ୍ୟକାରୀ କରିବାକୁ ଆଗେଇ ଆସିଛନ୍ତି । ତେଣୁ ଫଳାଫଳ ପାଇଁ ସରକାର ସଂପୂର୍ଣ୍ଣ ଦାୟୀ ରହିବେ । ମନେ ରଖିବା ଉଚିତ- ଶହେ କୋଟି ଲୋକର

ଏଇ ଦେଶରେ ଏକ ଦଶମାଂଶ ହେଉଛନ୍ତି କେବଳ ଆଦିବାସୀ । ସେମାନଙ୍କ ଭିତରୁ ଯଦି ଦଶଲକ୍ଷ ପରିବାରକୁ ପାହାଡ଼-ଜଙ୍ଗଲରୁ ଉଚ୍ଛେଦ କରି ଦିଆଯାଏ ଅବଶ୍ୟ ରାଷ୍ଟ୍ରକୁ ତାର କୁପରିଣାମ ଭୋଗ କରିବାକୁ ପଡ଼ିବ ।

ଆଜି ଯଦି ଦେଶର ସ୍ୱାଧୀନତା, ଗଣତନ୍ତ୍ର, ସମ୍ବିଧାନ, ସରକାର, ନ୍ୟାୟପାଳିକା, ପ୍ରଶାସନ ଓ ଆଇନକାନୁନ ଜଙ୍ଗଲର ବିପୁଳ ଲେଙ୍ଗୁଟି ପିନ୍ଧା ବନବାସୀଙ୍କୁ ଯଥାଯଥ ସୁରକ୍ଷା ଦେବା ପରିବର୍ତ୍ତେ ଉଚ୍ଛେଦ କରି ଚାଲିବେ- ଏବଂ ସେମାନଙ୍କର ଅରଣ୍ୟ- ଅତୀତର ଭିତ୍ତିକୁ ଅସ୍ୱୀକାର କରି ବର୍ତ୍ତମାନ ଓ ଭବିଷ୍ୟତକୁ ଅବିଚାରିତ ଭାବେ ଅନିର୍ଦ୍ଦିଷ୍ଟ ନରକ ଅନ୍ଧାର ଭିତରକୁ ଠେଲି ଦେବା ପାଇଁ ଶକ୍ତି ପ୍ରୟୋଗ କରିବେ, ତେବେ ବ୍ୟାପକ ଲୋକ ସାଧାରଣ ଆପଣାର ନିରାପତ୍ତା ତଥା ସ୍ୱତ୍ୱର ସୁରକ୍ଷା ପାଇଁ ଅବଶ୍ୟ ଏଇ ଉଚ୍ଛେଦକୁ ମୁକାବିଲା କରି ପାରିବେ । ଏହା ସେମାନଙ୍କର ସର୍ବନିମ୍ନ ମୌଳିକ ଗଣତାନ୍ତ୍ରିକ ଓ ମାନବିକ ଅଧିକାର । ମଣିଷ ଜନ୍ମ ହେଲା ମାତ୍ରେ ଯାହା ଆପେ ଆପେ ତାର ଅଧିକାରଭୁକ୍ତ ହୋଇଥାଏ । ଯେଉଁ ଅଧିକାର ସହ ରହିଛି ମଥା ଗୁଞ୍ଜିବା ପାଇଁ ଖଣ୍ଡେ କୁଡ଼ିଆର କଥା, ଗୋଟେ ଗାଁର କଥା; ଢୋକେ ପିଇ ଦଣ୍ଡେ ଜୀଇଁବା ପାଇଁ ଚାଖଣ୍ଡେ ଜମିର କଥା; ଜୀବନର ଶୋଷ ମେଣ୍ଟାଇବା ପାଇଁ ଆଞ୍ଜୁଳେ ପାଣିର କଥା; ଶାନ୍ତିରେ ମଣିଷ ସହ ମଣିଷ ରହିବା ପାଇଁ ଟିକେ ସାମାଜିକତାର କଥା- ଆଉ ମା' ପରି ସବୁଜିମାର ପଣତ ଢାଙ୍କିଥିବା ଜନ୍ମଭୂମି ଜଙ୍ଗଲର କଥା ।

ଏବେ ସ୍ୱେଚ୍ଛାସେବୀ ସଂଗଠନ ମାନଙ୍କ କଥା । ତଥ୍ୟ ହେଲା (''ଆନ୍ଧ୍ର ଓଡ଼ିଶା ସୀମାନ୍ତରେ ନକ୍ସାଲବାଦ'')- ଦଣ୍ଡପାଣି ମହାନ୍ତି କେବଳ ଦକ୍ଷିଣ ଏସିଆର ବିଭିନ୍ନ ଗରିବ ଦେଶରେ ୫୦ ହଜାରରୁ ଊର୍ଦ୍ଧ୍ୱ ଏନ୍‌ଜିଓ ରହିଛନ୍ତି । ସେମାନେ ଗରିବ ସେବା ନାମରେ ବିଦେଶୀ ସାମ୍ରାଜ୍ୟବାଦୀ ସରକାରଙ୍କ ଠାରୁ ହଜାର ହଜାର କୋଟି ଟଙ୍କା ସଂଗ୍ରହ କରି ଆରାମରେ ରହନ୍ତି ଓ ବିପ୍ଳବୀ, ପ୍ରଗତିବାଦୀ ତଥା ଲୋକଦରଦୀ ସଂଗଠନ ମାନଙ୍କ କାର୍ଯ୍ୟ ଥିବା ଅଂଚଳରେ ବିଦେଶୀ ପୁଞ୍ଜିପତିମାନଙ୍କ ବ୍ୟବସାୟ କାଏମ ରଖିବା ପାଇଁ ବିଭିନ୍ନ ପ୍ରତିବନ୍ଧକ ସୃଷ୍ଟି କରନ୍ତି ।'' ଅନ୍ୟ ଦିଗରେ ଯୁକ୍ତି ବାଢ଼ନ୍ତି- ଜଙ୍ଗଲ ଭିତରେ ଓ ବାହାରେ ଥିବା ସମସ୍ତ ଭୂମିହୀନ ମଣିଷଙ୍କୁ ଯଦି ଜମି ଦିଆଯାଏ ତେବେ ଜଙ୍ଗଲ ଅଣ୍ଟିବ ନାହିଁ, ଶେଷ ହୋଇଯିବ । ଏଠାରେ ପ୍ରଶ୍ନ ହେଉଛି- ବାହାରର ଭୂମିହୀନଙ୍କ ସହ କାହିଁକି ବନବାସୀଙ୍କୁ ମିଶାଇ ପାଣି ଗୋଳିଆ କରାଯାଉଛି ? ଦେଶ ସାରା ତଥା ରାଜ୍ୟ ଭିତରେ ନିଶ୍ଚୟ ଅନେକ ଭୂମିହୀନ ଥିବେ । ସେ ସମସ୍ୟା ସମାଧାନ କରିବା ସରକାରଙ୍କ ଦାୟିତ୍ୱ । କିନ୍ତୁ ସେମାନଙ୍କୁ ଭୂମିହୀନ ବନବାସୀଙ୍କ ସହ ଯୋଡ଼ି ଦେବା ରାଜନୀତିକ ଉଦ୍ଦେଶ୍ୟ ପ୍ରଣୋଦିତ ନୁହେଁ କି ? ଏହାଦ୍ୱାରା ଆଦିବାସୀର ହକ୍-ଲଢ଼େଇକୁ ବିଭ୍ରାନ୍ତ କରାଯାଉ ନାହିଁକି ? ଏଭଳି ଦୃଷ୍ଟିଭଙ୍ଗୀ

ବିଦେଶୀ ଅଭିସନ୍ଧିର ଅଂଶବିଶେଷ ।

ଯଦି ଜଙ୍ଗଲର ବିଭିନ୍ନ ଉତ୍ପାଦିକା ଶକ୍ତିକୁ ଶୃଙ୍ଖଳିତ ଭାବେ ସଂପୃକ୍ତ ଅଂଚଳର ଆଂଚଳିକ ବିକାଶକୁ ଆଖି ଆଗରେ ରଖି ଉନ୍ମେଷିତ କରାଯାଏ କେବେ ବି ଜଙ୍ଗଲ ଧ୍ୱଂସ ହେବ ନାହିଁ । ଆଦିବାସୀ ଦ୍ୱାରା କେବେ ବି ଜଙ୍ଗଲ ଧ୍ୱଂସ ହୋଇ ନଥିଲା; ଏବେ କି ଭବିଷ୍ୟତରେ ମଧ ନୁହେଁ । ଆଦିବାସୀ ଚିରକାଳ ପ୍ରକୃତି ସହ ଭାରସାମ୍ୟ ରକ୍ଷା କରି ସର୍ବନିମ୍ନ ଆବଶ୍ୟକତା ଦୃଷ୍ଟିରୁ ଜଙ୍ଗଲକୁ ବ୍ୟବହାର ଆସିଛି । ଆଦିବାସୀ କେବେ ବି ଚାହେଁ ନାହିଁ ଅରଣ୍ୟ-ପର୍ବତ ଧ୍ୱଂସ ପାଇଯାଉ ।

ଅରଣ୍ୟ ରକ୍ଷାର ଦାୟିତ୍ୱ ଆଦିବାସୀକୁ ଦିଆଯାଇ ଯଦି ଅରଣ୍ୟ ଭିତ୍ତିକ କୁଟୀର ଶିଳ୍ପ ଓ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ସେମାନଙ୍କୁ ସହାୟତା ଓ ତାଲିମ ଦିଆଯାଏ ଏବଂ ବ୍ୟାପକ ଭାବେ ସେମାନଙ୍କୁ ନିଯୁକ୍ତି ଦିଆଯାଏ, ତେବେ କର୍ମ ନିଯୁକ୍ତି ସହିତ ଜଙ୍ଗଲ ସୁରକ୍ଷା ମଧ ହୋଇପାରିବ । ସିମିତି ଜଙ୍ଗଲ ଓ ପର୍ବତ ଭିତରେ ସେମାନଙ୍କ ପାରମ୍ପରିକ ଚାଷକୁ ଯଦି ସୃଜନଶୀଳ ପଦ୍ଧତିରେ ଉତ୍ସାହିତ କରାଯାଏ- ତଦ୍ୱାରା ମଧ ସମସ୍ୟା ସମାଧାନ ହେବ । ସିମିତି ସେମାନଙ୍କ ପାଇଁ ଆବଶ୍ୟକୀୟ ସୁବିଧା ସୁଯୋଗ ଦେଇ ସେମାନଙ୍କ ଯାଯାବରୀ ପ୍ରବଣତାର ଅବସାନ ଘଟାଇ ତାଙ୍କୁ ନିଶ୍ଚିତ ବସବାସକାରୀରେ ରୂପାନ୍ତରିତ କରିବା ଜାତୀୟ କର୍ତ୍ତବ୍ୟ ।

ଏ ପର୍ଯ୍ୟନ୍ତ ଆଂଚଳିକ ବିକାଶ ଓ ସଂପୃକ୍ତ ଅଂଚଳରେ ଆଦିବାସୀର ନିଯୁକ୍ତି ନେଇ ଚିନ୍ତା କରାଯାଇନି । କୋରାପୁଟରେ ଯେ ନାଲ୍‌କୋ ରହିଛି, ସେଠାରେ ଆଦିବାସୀ ମାନେ ଯେ ନିଯୁକ୍ତି ପାଇ ନାହାନ୍ତି- ଏହା କଣ ସତ୍ୟ ନୁହେଁ ? ଇମିତି ପ୍ରାୟ ଦେଶ ସାରା । ଖୁବ୍ ଜୋର୍ ସେମାନେ କୁଲି-ମଜୁରିଆ ହୋଇ ଆପଣା ଜୀବନ ବଳି ପକାନ୍ତି । ସେ ବିକାଶରେ ଆଦିବାସୀ ବାପୁଡ଼ାର କି ଯାଏ ? ଆଦିବାସୀର ଜୀବନ ଜୀବିକା ସହ ତାର କିଛି ସଂପର୍କ ଅଛି କି ? ଏବେ ପରିବେଶବିତ୍‌ମାନଙ୍କ କଥା । ସେମାନେ ଆଦିବାସୀଙ୍କ ବିରୋଧରେ ହାଇକୋର୍ଟ, ସୁପ୍ରିମକୋର୍ଟରେ ବିଭିନ୍ନ ଜନସ୍ୱାର୍ଥ ମାମଲା କରୁଛନ୍ତି । ସେମାନେ ଅଭିଯୋଗ କରୁଛନ୍ତି- ଆଦିବାସୀ ଦ୍ୱାରା ଜଙ୍ଗଲ ଧ୍ୱଂସ ପାଉଛି; ଜନ୍ତୁ ଜାନୁଆର ମରୁଛନ୍ତି, ପରିବେଶ ପ୍ରଦୂଷିତ ହେଉଛି । ସେମାନଙ୍କୁ ପ୍ରଶ୍ନ : ଆଦିବାସୀ ବ୍ୟତୀରେକ ସରକାର ଓ ତାଙ୍କ ଜଙ୍ଗଲ ବିଭାଗ; ସ୍ୱେଚ୍ଛାସେବୀ ସଂଗଠନ ତଥା ପରିବେଶବିତ୍ ମାନେ ଜଙ୍ଗଲ-ପାହାଡ଼ର ସୁରକ୍ଷା ଦେଇ ସୁସ୍ଥ ପରିବେଶ ଗଢ଼ି ପାରିବେ କି ?

ଏବେ ବନୀକରଣ କଥା ଉଠୁଛି । ମହାଶୟମାନେ ଜାଣନ୍ତି କି ସରକାରୀ ହିସାବ ଅନୁଯାୟୀ ସାରା ଦେଶରେ ଜଙ୍ଗଲ ନାଁରେ ଆଠକୋଟି ହେକ୍ଟର ପାଖାପାଖି ଏପରି ସବୁ ଜାଗା ରହିଛି, ଯେଉଁଠି ଜଙ୍ଗଲ ଓ ଗଛ ପତ୍ରର କୌଣସି ଚିହ୍ନବର୍ଣ୍ଣ ନାହିଁ । ସରକାର ବାହାଦୁର,

ସ୍ୱେଚ୍ଛାସେବୀ ସଂଗଠନ ଓ ପରିବେଶବିତ୍‌ମାନେ ସେଠାରେ ସବୁଜ ଅରଣ୍ୟ ସୃଷ୍ଟି କରୁନାହାନ୍ତି କାହିଁକି ? କିଏ ବାଧକ ହେଉଛି ?

ଏହା ପରିଷ୍କାର, ଭାରତୀୟ ସଭ୍ୟତାର ଭିତ୍ତିଭୂମି ଆଦିବାସୀ ସମାଜକୁ ଧ୍ୱଂସ କରି ଦେଇ କେବେ ବି ପରିବେଶ ସୁରକ୍ଷା, ଜଙ୍ଗଲ ସୁରକ୍ଷା କି ଜାତୀୟ ବିକାଶ କଥା ଚିନ୍ତା କରାଯାଇ ପାରିବନି । ଅରଣ୍ୟବାସୀ ରହିଲେ ଅରଣ୍ୟ ରହିବ, ନଦୀ ରହିବ, ପର୍ବତ ରହିବ- ଏହା ହିଁ ପ୍ରକୃତି ବିଜ୍ଞାନ । ଏହା ଅସ୍ୱୀକାର କରି ଯେଉଁମାନେ ସ୍ୱାର୍ଥ ସର୍ବସ୍ୱ ସୌଦାଗରୀ ବୃଦ୍ଧି ଓ ଦଲାଲି କରୁ କରୁ ଆଦିବାସୀ ଉଚ୍ଛେଦ ପଦକ୍ଷେପ ଗ୍ରହଣ କରୁଛନ୍ତି, ସେମାନେ ଭୁଲି ଯାଇଛନ୍ତି, ମଣିଷ ହିଁ ପ୍ରକୃତିର ସର୍ବଶ୍ରେଷ୍ଠ ସୃଷ୍ଟି, ଅମୃତ ସନ୍ତାନ । ଆଉ ପ୍ରକୃତି କୋଳର ମଣିଷ ହେଲା ଆଦିବାସୀ, ସେ ତା ସହ ଅଚ୍ଛିନ୍ନ-ଅଭିନ୍ନ ସୂତ୍ରରେ କାଳ କାଳ ଧରି ଜଡ଼େଇ ହୋଇ ରହିଛି । ଜଙ୍ଗଲରୁ ଆଦିବାସୀଙ୍କୁ ନିଶ୍ଚିହ୍ନ କରି ଦେଇ ଜଙ୍ଗଲକୁ ଯେଉଁ ସୌଦାଗରୀ ସ୍ୱାର୍ଥରେ ବ୍ୟବହାର କରିବା ପାଇଁ ଆଜି ବଣିଆ ଗୋଷ୍ଠୀ ଚକ୍ରାନ୍ତ କରୁଛନ୍ତି କାଲିକୁ ତାହା ସମଗ୍ର ପୃଥିବୀକୁ ଧ୍ୱଂସ କରିଦେବ- ଏହା ସୁନିଶ୍ଚିତ ।

ଏ ସରକାର ବନ୍ଧ୍ୟା ପାଲଟିଛି । ସମସ୍ତଙ୍କୁ ଧାରଣ କରିବା ଭଳି ସୃଜନ କ୍ଷମତା ନଷ୍ଟ ପ୍ରାୟ । ଜଡ଼ସଡ଼ ହୋଇ ଇଏ ଡଲାର-ଐରାବତ ସାମ୍ନାରେ ଛିଡ଼ା ହୋଇଛି । ଅସମ୍ମାନ ଜନକ ଭାବେ ଦେଶ ମାତୃକାକୁ ବନ୍ଧା ପକାଯାଉଛି । ଅମୂଲ୍ୟ ଦେଶଜ ସଂପଦ ସବୁ ଶାଗ ମାଛ ଦରରେ ବିକା ହେଉଛି । ଏଣେ ଆଦିମ ବନବାସୀଙ୍କୁ କୁହାଯାଉଛି- ତମେ ଜଙ୍ଗଲ ଧ୍ୱଂସକାରୀ, ପରିବେଶ ପ୍ରଦୂଷଣକାରୀ- ତମମାନଙ୍କ ଉଚ୍ଛେଦ ଏକାନ୍ତ ଜରୁରୀ ।

ଆଦିବାସୀ ଉଚ୍ଛେଦ ହୋଇଗଲେ ବିଶ୍ୱବ୍ୟାଙ୍କର 'ମିଳିତ ପରିଚାଳନା'ର ବାଟ ଧରି ବିଦେଶୀ କର୍ପୋରେଟ୍-କମ୍ପାନୀମାନେ ଆସିଯିବେ । ତାଙ୍କ ହାତକୁ ନଦୀ ଯିବ, ସମୁଦ୍ର ଯିବ, ଅରଣ୍ୟ ଯିବ, ପର୍ବତ ଯିବ । ଅରଣ୍ୟରୁ ଫୁଲ-ଫଳ-ପତ୍ର-ଛାଲି; ପାହାଡ଼-ପର୍ବତରୁ ରତ୍ନ ପଥର, ହୀରାଖଣ୍ଡ, ମାଙ୍ଗାନିଜ୍, ବକ୍‌ସାଇଟ୍, ଟିଣ ଏବଂ ଲୁହା ପଥର- ଅବାଧରେ ସବୁକିଛି ଚାଲାଣ ହୋଇଯିବ ଦିବାଲୋକରେ । ସେଥିରେ ବିଦେଶୀଙ୍କୁ ପ୍ରଚୁର ଲାଭ ମିଳିବ; ତେଣିକି ଖାଲି ସୁଧ ଦେଲେ ଚଳିବ- ଖାଲି ସୁଧ ନେଲେ ଚଳିବ । କିନ୍ତୁ ସେଥବପାଇଁ ପ୍ରଥମେ ଆଦିବାସୀଙ୍କୁ ହଟାଇବା ଜରୁରୀ । କାହିଁକି ନା ଅରଣ୍ୟ ପର୍ବତରେ ସେ ଥିବା ଯାଏ ତା' ହାତରେ ମଶାଲ ଜଳୁଥିବ, ବାଧା ଦେଉଥିବ ।

ଅନ୍ୟ ପକ୍ଷରେ ଯେଉଁ ଆଦିବାସୀ ସମାଜ ପାଇଁ ଏ ଯାଏଁ କିଛି ବିକଳ୍ପ ବ୍ୟବସ୍ଥା ନାହିଁ, ସେ ଉଚ୍ଛେଦ ହେଲେ ଯିବ କୁଆଡ଼େ ? କଣ ତା' ପାଖରୁ ସବୁ କିଛି ଲୁଟି ନେଇ

ଆମେରିକାର ମୂଳ ଅଧିବାସୀ ସେଇ ଲୋହିତ ଭାରତୀୟ ପରି ଶେଷରେ 'ଗିନିପିଗ୍' କରି ତାର ବାଡ଼ ଘେରରେ ରଖିବାର ଯୋଜନା ରହିଛି ? ଯେଉଁଠି କେବଳ ପ୍ରମାଣ ସ୍ୱରୂପ ଚିଡ଼ିଆଖାନାର ଜୀବ ପରି ତାର ସମସ୍ତ ପ୍ରତିରୋଧ କ୍ଷମତା ନଷ୍ଟ କରି ଦେଇ ରେସନ୍ ଯୋଗାଇ ଦେଲେ ଚଳିବ । ଏବେ ଆଦିବାସୀ ସମାଜ ଚିନ୍ତା କରୁ, ଉଚ୍ଛେଦ ହେଲେ, ସେ ଅନିର୍ଦ୍ଦିଷ୍ଟ ଜୀବନ ନେଇ ରାସ୍ତାରେ ପୋକ ମାଛି ପରି ମରିବ କି ଚିଡ଼ିଆଖାନାର ଜୀବ ହୋଇ ତାର ବାଡ଼ ଭିତରେ ରହିବ । ଅନ୍ୟ ପକ୍ଷରେ ସମଗ୍ର ଭାରତୀୟ ସମାଜକୁ ଆଦିବାସୀ ଉଚ୍ଛେଦ ଉପରେ ଗଭୀର ଭାବେ ଚିନ୍ତା କରି ତଦନୁଯାୟୀ କାର୍ଯ୍ୟପନ୍ଥା ଗ୍ରହଣ କରିବାର ସମୟ ଆସିଛି ।

ଏବେ କେହି ଯଦି ପ୍ରସ୍ତାବ ଦିଏ କୋଲକାତା ଠାରେ ଗଙ୍ଗା ନଦୀରେ ବନ୍ଧ ନିର୍ମାଣ ହେଉ, କଟକର ଉପର ମଥାରେ ମହାନଦୀ ଓ କାଠଯୋଡ଼ିରେ ବନ୍ଧ ପଡୁ କି ଯମୁନାକୁ ବାନ୍ଧି ଦିଆଯାଉ ରାଜଧାନୀ ଦିଲ୍ଲୀ ଉପରେ- ତେବେ ପ୍ରଳୟ କାଣ୍ଡ ଘଟିଯିବ । ସିମିତି ମୁମ୍ବାଇ ଓ ଚେନ୍ନାଇକୁ ପରିଷ୍କାର କରି ଯଦି ସାବ୍‌ଜା ଅରଣ୍ୟ ସୃଷ୍ଟି କରାଯିବା କଥା ଉଠେ, ତୋଫାନ୍ ବହିଯିବ ସାରା ଦେଶରେ । ସିମିତି ଲକ୍ଷ୍ନୌ, ପାଟନା କି ହାଇଦ୍ରାବାଦରେ ଯଦି ଯୁଦ୍ଧ ଘାଟି ବସେଇ ଦିଆଯାଏ- ସହରୀ ସଭ୍ୟତାର ଚାଣକ୍ୟମାନେ କଣ ଦେଶକୁ ରଖିବେ ? ସଂଗେ ସଂଗେ ଏପରି ଯୋଜନାକାରୀ ମାନେ ହୁଏତ ଗୁଳିରେ ମରିବେ, ନହେଲେ ଟଣା ହେବେ ପାଗଲା ଗାରଦକୁ । କାରଣ ତଦ୍ୱାରା ଯେଉଁମାନେ ଜଳମଗ୍ନ ହେବେ/ବିସ୍ଥାପିତ ହେବେ କି ଯୁଦ୍ଧର ବଳି ହେବେ, ସେମାନେ ଦିଲ୍ଲୀରୁ/କୋଲକତାରୁ/ମୁମ୍ବାଇ-ଚେନ୍ନାଇରୁ/ଲକ୍ଷ୍ନୌ, ପାଟନା ଓ ହାଇଦ୍ରାବାଦରୁ ଏବଂ କଟକ-ଭୁବନେଶ୍ୱରରୁ ଦେଶକୁ ଶାସନ କରନ୍ତି । ସେମାନେ ରାଜଧାନୀରେ ଥାଇ ନର୍ମଦାରେ, ତେହେରିରେ ସିନା ବନ୍ଧ ବାନ୍ଧି ପାରିବେ/ ହଜାର-ଲକ୍ଷ ଲୋକଙ୍କ ଗାଁ ଗଣ୍ଡା ଘରବାଡ଼ି ଜମି ଜଙ୍ଗଲ, ସ୍ୱପ୍ନ-ସମ୍ଭାବନା ସବୁ ସିନା ବୁଡ଼ାଇ ଦେଇ ପାରିବେ, କିନ୍ତୁ ସେମାନଙ୍କୁ ବୁଡ଼ାଇ ପାରିବ କିଏ ? ଯେତେବେଳେ କୌଣସି ବିକାଶ ଲୋଡ଼ା, ଯେଉଁଠି ଇଚ୍ଛା ସେଇଠି ଯୁଦ୍ଧ ଘାଟି କର, ଖଣି ଖାଦାନ ଖୋଲ/ ଯେତେବେଳେ ଇଚ୍ଛା ସେତେବେଳେ ଦେଶକୁ ବନ୍ଧା ପକାଅ, ବିକ୍ରି କର/ ଅବାଧ ହେଲେ ଦଳିତଙ୍କୁ ବଳି ପକାଅ/ ପ୍ରତିବାଦ କଲେ ଆଦିବାସୀଙ୍କୁ ଗୁଳି କରି ମାର/ ସନ୍ଦେହ ହେଲେ ସାଧାରଣ ଜନତାଙ୍କୁ ଭକୁଆ କରି ଦେଶ ପ୍ରେମ ନାଁରେ ଯୁଦ୍ଧ ଲଗାଅ, ଦଙ୍ଗା ଭିଆଅ/ ଯିମିତି ଲୋଡ଼ା ସିମିତି ମଣିଷକୁ ହତ୍ୟାକର- ସେଥିରେ ଅନ୍ୟାୟ ନାହିଁ; ତାହା କରଣୀୟ, ରାଜଧର୍ମ । କିନ୍ତୁ ଯଦି ପଚରା ଯାଏ, ବିକାଶ ନାଁରେ, ଧର୍ମ ନାଁରେ, ଦେଶପ୍ରେମ ନାଁରେ ଏ ସ୍ୱାଧୀନ ଯୁଗରେ ଯେତେ ଯାହା କରାଗଲା, ସେଥିରୁ ସେମାନେ ପାଇଲେ କଣ- ତେବେ ତାର ସଠିକ ଉତ୍ତର

ମିଳିବନି । କାରଣ ତାର ସାଧା-ସରଳ ସଠିକ ଉତ୍ତର ସବୁବେଳେ ବିୟୋଗାନ୍ତ । କିନ୍ତୁ ଏହା ଜନତା ଥରେ ଜାଣି ଗଲେ ଗୃହଯୁଦ୍ଧ ଭିତରେ ପଶିଯିବ ଭାରତ, ମଣିଷ ପୁଣି ଥରେ ସ୍ୱାଧୀନତା ସଂଗ୍ରାମ ଲଢ଼ିବ । ସ୍ୱାଧୀନତା ପରେ ହୀରାକୁଦରେ ବନ୍ଧ ବସିଲା । ଯେଉଁମାନଙ୍କ ଚାଷ ଜମି ଓ ଘର ଦ୍ୱାର ସବୁ ଚାଲିଗଲା ବନ୍ଧ ଗର୍ଭରେ, ସେମାନେ କଣ ପାଇଲେ, କେଉଁଠିକୁ ଗଲେ, କିପରି ରହିଲେ- ନା ସରକାର ଜାଣନ୍ତି ନା ବାହାର ଦୁନିଆ । ସିମିତି ଅବିଭକ୍ତ କୋରାପୁଟରେ ଅବଲୀଳା କ୍ରମେ ଗୋଟିଏ ପରେ ଗୋଟିଏ ବନ୍ଧ ନିର୍ମାଣ ହୋଇ ଯାଇଛି । ତାର କୌଣସି ସୁଫଳ ଆଦିବାସୀ ମାନେ ତ ପାଇଲେ ନାହିଁ, ବରଂ ତାହା ସେମାନଙ୍କ ପାଇଁ ଅଭିଶାପରେ ପରିଣତ ହେଲା । ପଞ୍ଚମ ଦଶକର ପ୍ରଥମ ଭାଗରେ ହେଲା ମାଛକୁଣ୍ଡ ଯୋଜନା/ ଷଷ୍ଠ ଓ ସପ୍ତମ ଦଶକରେ ହେଲା ବାଲିମେଳା (ଚିତ୍ରକୋଣ୍ଡା) ଡ୍ୟାମ/ ସପ୍ତମ ଦଶକରେ ଶେଷ ଆଡ଼କୁ ନିର୍ମାଣ ହେଲା ଉପର କୋଲାବ ନଦୀ ବନ୍ଧ ଏବଂ ଅଷ୍ଟମ ଦଶକର ଶେଷ ଆଡ଼କୁ ତିଆରି ହେଲା ଇନ୍ଦ୍ରାବତୀ ପ୍ରକଳ୍ପ । ପ୍ରବଳ ଜନ ଆନ୍ଦୋଳନ କାରଣରୁ କେବଳ ଇନ୍ଦ୍ରାବତୀ ବୁଡ଼ି ଅଂଚଳ ବାଲାଙ୍କୁ ଛାଡ଼ି ଦେଲେ (ଏବକୁ ଓଲଟା ସ୍ୱର ଶୁଭିଲାଣି) ଅନ୍ୟ କୌଣସି ଯୋଜନାର ବାସ୍ତୁହରା ଆଦିବାସୀ ମାନେ କ୍ଷତିପୂରଣ କି ବନବାସୀ ଭତ୍ତା ପାଇଲେ ନାହିଁ । ସହସ୍ରାଧିକ ଜଙ୍ଗଲ ଗାଁ/ ହଜାର ହଜାର ହେକ୍ଟର ଚାଷ ଜମି ସବୁ ପାଣିରେ ବୁଡ଼ିଗଲା, ବିକାଶର ବଳି ହୋଇଗଲା । ବଣର ପଶୁ ପରି ସେମାନଙ୍କୁ ହଟେଇ ଦିଆଗଲା ଭିଟା ମାଟିରୁ । ସେମାନେ ସେଠାରୁ ହଟି ଆସି ଜୀବନ ଦାୟରେ ପାହାଡ଼ ଜଙ୍ଗଲରେ ଲୁଚି ବୁଲି ପୁଣି ଥରେ କୁଡ଼ିଆ ବାନ୍ଧିଲେ, ଜୀବନ ବଂଚିଲେ । ରାଷ୍ଟ୍ର କଣ ସେମାନଙ୍କୁ କେବେ କିଛି ଦେଇଛି କି ଆଜି ଯେ ଜବର ଦଖଲକାରୀର ଆରୋପ ଲଗାଇ ହଟାଇ ଦେବାକୁ ବସିଛି ? ରାଷ୍ଟ୍ର କଣ ବିଭିନ୍ନ ଉପାୟରେ ସେମାନଙ୍କ ଠାରୁ ଥରକୁ ଥର ଅନେକ କିଛି ଛଡ଼ାଇ ନେଇ ନାହିଁକି ? ଏହା କଣ ସତ୍ୟ ନୁହେଁ, ଦୀର୍ଘ ୨୩ ବର୍ଷ ପରେ ମଧ ରେଙ୍ଗାଲି ବନ୍ଧର କିଛି ବାସ୍ତୁହରା ଏଯାଏଁ ଖଣ୍ଡେ କଳାଡିହ କି ଜମି ଚାଖଣ୍ଡେ ପାଇ ନାହାନ୍ତି । ସେମାନେ ଅସହାୟ ଭାବେ ଯେଉଁଠି ସେଇଠି ପଡ଼ିଛନ୍ତି ଏବଂ ସେମାନଙ୍କ କରୁଣ ସ୍ୱର ସାରା ଓଡ଼ିଶାକୁ ଶୁଭୁଛି ମଝିରେ ମଝିରେ ।

ଅନ୍ୟ ପକ୍ଷରେ ଆଦିବାସୀର ପରିବାର ଛୋଟ । ସଭ୍ୟ ଦୁନିଆ ସହ ତୁଳନା କଲେ ଆଦିବାସୀ ଯୁବକ ଯୁବତୀ ମାନେ ଯୌବନରେ ପାଦ ଦେଉଁ ଦେଉଁ ହିଁ କମ୍ ବୟସରେ ବିବାହ କରନ୍ତି । ପ୍ରକୃତିର ପୋଡ଼ ଖାଇ ବଢ଼ିଥିବା ଆଦିବାସୀ ଆବାଲ୍ୟ ଶ୍ରମପ୍ରେମୀ ଓ ସ୍ୱାବଲମ୍ବୀ । ଶ୍ରମ ସେମାନଙ୍କର ଶୈଶବ-ମରଣ ବନ୍ଧୁ । ପୃଥିବୀ ଇତିହାସରେ ଶ୍ରମକୁ ଏତେ ଭଲ ପାଇବା ସମାଜ ବିରଳ । ସେମାନେ ଭିକ୍ଷା ବୃତ୍ତିକୁ ଘୃଣା କରନ୍ତି । ସେମାନେ ଯେମିତି

ନିର୍ଭରଶୀଳ ଜୀବନ ଚାହାନ୍ତି ନାହିଁ, ସିମିତି ବାପ-ମାଆ କି ଗୁରୁଜନଙ୍କ ପ୍ରତ୍ୟକ୍ଷ ପ୍ରଭାବ ଭିତରେ ନିଜର ଅସ୍ତିତ୍ୱ ହଜାଇ ଦେବା ପସନ୍ଦ କରନ୍ତି ନାହିଁ । ବିବାହ କରୁ କରୁ ହିଁ ସେମାନେ ଢେମ୍‌ସା ବଜାଇ ନାଚିବା ପାଇଁ, ମହୁଲ ଫୁଲ, ଶାଳ ଫୁଲ, ଗୁମ୍ ଗୁମ୍ ବର୍ଷା ଓ ଚଇତି ଶିକାରର ଗୀତ ଗାଇବା ପାଇଁ/ କଟାରରେ ଯୋଡ଼ି-ଯାଉଁଳି ହୋଇ ରାତିର ତାରା ଗଣିବା ପାଇଁ/ ଗର୍ଭର ପିଲାକୁ କଥା ଓ କାହାଣୀ ଶୁଣେଇବା ପାଇଁ/ଦୁଧଖିଆ କଅଁଳା ଛୁଆକୁ ଅରଣ୍ୟ ପର୍ବତ ଚିହ୍ନାଇବା ପାଇଁ/ ନଦୀ-ଝୁଲା ଦେଖେଇବା ପାଇଁ ଏବଂ ଖରା, ବର୍ଷା, ଶୀତରେ ଖେଳେଇ ଖେଳେଇ ଇସ୍ପାତ କଠିନ କରିବା ପାଇଁ- ସେମାନେ ଅଲଗା କୁଡ଼ିଆ ବାନ୍ଧନ୍ତି । ସେମାନଙ୍କ ଶ୍ରମ ଓ ସ୍ୱପ୍ନକୁ ସେମାନେ ଏମିତି ବାଟରେ ସାକାର ରୂପ ଦେବା ଆରମ୍ଭ କରନ୍ତି । ପିଲା ମାନଙ୍କର ଏଇ ଭିନ୍ନ ସଂସାର ପ୍ରତି ବାପ-ମା, ଶାଶୁ-ଶ୍ୱଶୁର ତଥା ଜଙ୍ଗଲି ସମାଜର ଥାଏ ପ୍ରଚ୍ଛନ୍ନ ଆଶୀର୍ବାଦ । ସେମାନଙ୍କୁ ନିଜ ଗୋଡ଼ରେ ଛିଡ଼ା କରାଇ ଦେବା ପାଇଁ ଯଥା ସମ୍ଭବ ସାହାଯ୍ୟ ସହଯୋଗ ମଧ୍ୟ ଯୋଗାଇ ଦେଇଥାନ୍ତି । ପୁଅ-ଝିଅଙ୍କ ଏଇ ସଂସାର ବାନ୍ଧିବା ଦ୍ୱାରା ପରିବାର ତଥା ସମାଜ ଆଗରେ ପରୀକ୍ଷା ଦେଇ ସେମାନେ ପ୍ରତିପାଦିତ କରନ୍ତି- ଆପଣା ଶକ୍ତିରେ ଦୁନିଆରେ ତିଷ୍ଠି ରହିବା ପାଇଁ ସେମାନେ ଯୋଗ୍ୟ; ସେମାନେ ତାଙ୍କ ପିଲା ପିଲିଙ୍କୁ ସୁରକ୍ଷା ଦେଇ ପାରିବେ । ଇମିତି ବନ୍ଧୁତ୍ୱପୂର୍ଣ୍ଣ ଶୈଳୀରେ ନୂତନ ଯୋଡ଼ି ଭିନ୍ନ ଘର ବାନ୍ଧନ୍ତି/ ସମାଜରେ ଆପଣା ପରିଚିତି ସ୍ଥାପନା କରନ୍ତି । ସେଇ ବିଚାରରେ ୧୯୮୦ ପର୍ଯ୍ୟନ୍ତ ଯେଉଁ ସବୁ ଆଦିବାସୀ ପରିବାର ଜଙ୍ଗଲ ଭିତରେ ବସବାସ କରିଥିଲେ, ଦୀର୍ଘ ଏଇ ୨୩ ବର୍ଷ ଭିତରେ ସେମାନେଙ୍କ ପରିବାର ସଂଖ୍ୟା ଓ ଲୋକ ସଂଖ୍ୟା ବଢ଼ିଥିବ ନା ନାହିଁ ? ସେମାନେ ମୂଳ ପରିବାରର ଅଂଶ ବିଶେଷ ଭାବେ ଗଣ୍ୟ ହେବେ ନା ନାହିଁ ? ଆଜି ଯେ ସେମାନଙ୍କୁ ଜବରଦଖଲକାରୀ ଶ୍ରେଣୀଭୁକ୍ତ କରାଯାଉଛି ତାହା କେତେ ଦୂର ସମୀଚିନ ?

କେବଳ ଆମ ଓଡ଼ିଶାରେ ଅଭୟାରଣ୍ୟର ସଂଖ୍ୟା ଅଠର । ସିମିତି ବିଭିନ୍ନ ଜାଗାରେ ଜାତୀୟ ଉଦ୍ୟାନ । ଏଠାରେ ପ୍ରକାଶ ଥାଉ କି, ନିକଟରେ ମୟୂରଭଂଜ ଜିଲ୍ଲାର ଶିମିଳିପାଳ ଜାତୀୟ ଉଦ୍ୟାନ ମଧ୍ୟରେ ଥିବା କବାଟ ଘାଇ ଗ୍ରାମରୁ ହୋ ସଂପ୍ରଦାୟର ୮ଟି ଆଦିବାସୀ ପରିବାରକୁ ସ୍ଥାନାନ୍ତରିତ କରାଯାଇଛି; (ସିମିତି ଅତୀତରେ ମଧ୍ୟ ଯେନା ବିଲରୁ ଖଡ଼ିଆମାନଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା) । ପୁଣି ଗନ୍ଧମାର୍ଦ୍ଦନ ଠାରୁ ନିୟମଗିରି ଏବଂ ସେଠୁ କାଶୀପୁର ମାଳି ଯାଏଁ ସବୁ ବକ୍ସାଇଟ୍ ଥିବା ପାହାଡ଼ ମାନଙ୍କୁ ହୁଏତ ଦେଶୀ ବିଦେଶୀ କମ୍ପାନୀ ମାନଙ୍କ ହାତକୁ ଟେକି ଦିଆଯାଇଥିଲା କିମ୍ବା ଟେକି ଦିଆଯାଉଛି । ଆଜି ଆଦିବାସୀ, ଗିରିଜନ, ହରିଜନ ତଥା ସାଧାରଣ ଜନତା ବୁଝିବା ଉଚିତ- ପର୍ବତ-ଅରଣ୍ୟ ଗର୍ଭରୁ ବକ୍ସାଇଟ୍ ଖୋଳି ନେଲା ପରେ ଯେଉଁ ଝରଣା ଶୁଖିଯାଏ, ଜମିରେ ଯେଉଁ ଲାଲମାଟି ପଡ଼ିଯାଏ,

ଜଙ୍ଗଲ ଛିନ୍‌ଛତ୍ର ହୋଇ ମାଟି ଯେପରି ବନ୍ଧ୍ୟା ହୋଇଯାଏ- ତାହା ବନବାସୀର । ଜଙ୍ଗଲ୍ ନଷ୍ଟ ହୋଇଯିବାରୁ ବାୟୁମଣ୍ଡଳ ଗରମ ହୁଏ/ ବର୍ଷା ଅନିୟମିତ ହୁଏ, ମରୁଡ଼ି ପଡ଼େ/ ଓଜନ ସ୍ତରରେ ଛିଦ୍ର ହୋଇ କୃଷ୍ଣ-ବାଇଗଣୀ ରଶ୍ମି ପଡ଼େ ଅରଣ୍ୟର ଅଧିବାସୀ ଉପରେ ଏବଂ ଶେଷ କର୍ଯ୍ୟନ୍ତ ତାକୁ ଚର୍ମ କ୍ୟାନସରରେ ମରିବାକୁ ହୁଏ । ଏହା ଅନ୍ତତଃ ପ୍ରଥମେ ବସବାସୀ ଜାଣିବା ଉଚିତ । ଏକ ଉଭଟ ସ୍ୱାଧୀନ ଦେଶରେ ବସବାସ କରୁଛୁ ଆମେ ଭାରତୀୟମାନେ, ଅର୍ଥାତ ଆଦିବାସୀ-ହରିଜନ, ଶ୍ରମିକ-ଶ୍ରମଜୀବୀ ଓ ସାଧାରଣ ମଣିଷମାନେ । ସରକାର ଯେତେବେଳେ ଚାହିଁଛନ୍ତି ହୁକୁମ ଦେଇଛନ୍ତି- ଏଠି ନଦୀବନ୍ଧ ହେବ; ବିଦ୍ୟୁତ୍ ପ୍ରକଳ୍ପ ହେବ- ପେଡ଼ି ପୁଟୁଳା ବାନ୍ଧ, ଯାଅ ଉଠିଯାଅ । ଯେତେବେଳେ ଚାହିଁଛନ୍ତି କହିଛନ୍ତି- ଏଠି ଅଭୟାରଣ୍ୟ ହେବ; ନିର୍ଭୟରେ ପଶୁପକ୍ଷୀ ରହିବେ; ଏଠି ଜାତୀୟ ଉଦ୍ୟାନ ହେବ- ଆମର ମାଲିକ-ସାହୁକାର ମାନେ ତାଙ୍କର କ୍ଲାନ୍ତି ଅପନୋଦନ କରିବେ- ଉଠ, ପେଡ଼ି ପୁଟୁଳା ବାନ୍ଧ, ଭାଗୋ ! ସରକାର ଯେତେବେଳେ ଚାହିଁଛନ୍ତି ବନ୍ଧୁକ ଉଁଚେଇଛନ୍ତି- ଏଠି ବକ୍ସାଇଟ୍ ଖୋଳାହେବ; ଏଠୁ ଲହା ଓ ଟିଣ ପଥର ବାହାରିବ; ସୁନା-ହୀରା ବାହାରିବ; ନବ ରତ୍ନରେ ମଣ୍ଡିଯିବ ଦେଶ ଜନନୀ- ଉଠ, ପେଡ଼ି ପୁଟୁଣା ବାନ୍ଧ, ଦୂର୍ ହୋ ! ସରକାର ଯେତେବେଳେ ଖିଆଲ ପୁକାରିଚନ୍ତି- ଏଠି କ୍ଷେପଣାସ୍ତ୍ର ଘାଟି ହେବ; ରାଡ଼ାର ଷ୍ଟେସନ ବସିବ; ସମରାସ୍ତ୍ର ଉତ୍ପାଦନ ହେବ- ଯାଓ, ଅଭି ହଟ୍ ଯାଓ । ଯେତେବେଳେ ମର୍ଜି କହିଛନ୍ତି- ଏଠି କଳ କାରଖାନା ବସିବ; ବନ୍ଧ ବାଡ଼ ହେବ; ଦେଶର ବିକାଶ ଘଟିବ- ନିକଲ ଯାଓ । ସେମିତି ଯେତେବେଳେ ଖିଆଲ ଗର୍ଜିଛନ୍ତି- ଏବେ ଶିଳ୍ପ ବିକ୍ରି ହେବ; ଅର୍ଥନୀତି ଆକାଶକୁ ଉଠିବ; ଜାତୀୟ ସ୍ୱାର୍ଥ ପାଇଁ ଶ୍ରମିକ ଛଟେଇ ହେବ- ଜଲ୍‌ଦି ଭାଗ ଯାଓ । ସତରେ ବିଚିତ୍ର ଏ ଦେଶ । ବିଚିତ୍ର ତାର ନୀତି-ନିୟମ, ନ୍ୟାୟ ବିଚାର । ସତରେ ବିଚିତ୍ର ଏ ଗଣତନ୍ତ୍ର, ସମ୍ବିଧାନ ଓ ସ୍ୱାଧୀନତା ।

ଯେତେବେଳେ ଶାସକ ଚକ୍ର ଡ୍ୟାମ, ଜାତୀୟ ଉଦ୍ୟାନ, ଶିଳ୍ପ, ଖଣି ଖାଦାନ ଓ ଯୁଦ୍ଧ ଘାଟି ପାଇଁ ଜମି, ଜଙ୍ଗଲ, ପାହାଡ଼ ପର୍ବତ ନାରଖାର କରନ୍ତି, ସେତେବେଳେ ପ୍ରକୃତି, ପରିବେଶ ଓ ଜୀବଜନ୍ତୁ କଥା ସେମାନଙ୍କର ମନେ ପଡ଼େନି ? ଯେତେବେଳେ ଜମି, ଜଙ୍ଗଲ ମାଫିଆ ତଥା ବହିରାଗତ ଜଙ୍ଗଲ ଓ ଜମି ହଡ଼ପକାରୀମାନେ ସେ ସବୁ ଦଖଲ କରି ନିଅନ୍ତି- ସେତେବେଳେ ତାହା ମନେ ପଡ଼େନି ? କିନ୍ତୁ ଆଦିବାସୀ ଯେତେବେଳେ କାଠି, କାଠ, ପତ୍ର, ଫୁଲ, ଝୁଣା, ମହୁ, ଶାଗ, କର୍ଡି, ଶୁଆଁ, ଆଶୁ କି ମାଣ୍ଡିଆ ଉପରେ ଜୀବନ ଜୀଇଁବା ପାଇଁ ନିର୍ଭରଶୀଳ, ତାକୁ କୁହାଯାଉଛି ଜଙ୍ଗଲ ନଷ୍ଟକାରୀ, ପରିବେଶ ଧ୍ୱଂସକାରୀ, ଜୀବଜନ୍ତୁ ହତ୍ୟାକାରୀ- ତାକୁ ଜଙ୍ଗଲରୁ ହଟାଅ । ଏବେ ଓଡ଼ିଶାର ଜନ ସମୁଦାୟ ଉପରେ ଆଖି ପକାଯାଉ । ଏଠାରେ କଣ ଉଦ୍‌ବାସ୍ତୁ ବାଂଲାଦେଶୀ (ପୂର୍ବ ବଙ୍ଗ ସମୟର), ଶ୍ରୀଲଙ୍କାର

ତାମିଲ ତଥା ଦେଶ ହରା ତୀବ୍‌ବତୀମାନଙ୍କୁ ଥଇଥାନ କରାଯାଇ ନାହିଁ ? ଏଇ ରାଷ୍ଟ୍ର ବ୍ୟବସ୍ଥାରେ ଏହା କଣ ସମ୍ଭବ ହୋଇ ନାହିଁ ? ସେମାନଙ୍କୁ ପଟ୍ଟା ଜମି, ଜଳ ସେଚନ, ବ୍ୟବସାୟ ଋଣ, ଚାକିରି, ସ୍ୱାସ୍ଥ୍ୟ, ଶିକ୍ଷା, ବନ୍ଧ-ପୋଖରୀ ଓ ବିଜୁଳି ଇତ୍ୟାଦିର ସୁବିଧା ସୁଯୋଗ ଯୋଗାଇ ଦିଆଯାଇଛି ନା ନାହିଁ ? ଏଠାରେ ସେମାନଙ୍କ ପ୍ରତି ବିରୋଧିତା, ବିଦ୍ୱେଷ କିମ୍ବା ଘୃଣାରୁ ଏ ପ୍ରଶ୍ନ ଉଠୁନାହିଁ । ସେ ଥଇଥାନ ବ୍ୟବସ୍ଥା ସହ ଯେ, ବିଚାରଶୀଳ ମାନବିକତାର ଦିଗ; ଅପ୍ରମିତ ପ୍ରାଣୀର ଆର୍ତ୍ତି ଜଡ଼ିତ, ଏହା ନିଃସନ୍ଦେହ । କିନ୍ତୁ ଏଠାରେ ନିଶ୍ଚିତ ରୂପେ ତୁଳନାତ୍ମକ ବିଚାରର କଥା ଉଠିବ । ଯେତେବେଳେ ଭିନ୍ନ ଦେଶୀମାନଙ୍କୁ ଥଇଥାନ ପାଇଁ ବ୍ୟାପକ ଜଙ୍ଗଲ ନଷ୍ଟ କରାଯାଇଛି; ଧାରାବାହିକ ଆର୍ଥିକ ବୋଝ ଉଠେଇବାକୁ ପଡ଼ିଛି ଦେଶକୁ/ ଯେତେବେଳେ ତାହା କରିବା ଦ୍ୱାରା ରାଷ୍ଟ୍ର ନାୟକ ମାନେ ଆନ୍ତର୍ଜାତିକ ବାହା ବା ନେଇଛନ୍ତି- ସେତେବେଳେ କଉପୁନୀ ପିନ୍ଧା ଭୂମିପୁତ୍ର ଆଦିବାସୀ ପାଇଁ କି ବ୍ୟବସ୍ଥା କରିଛନ୍ତି ସରକାର ବାହାଦୁର ? ଶେଷରେ ଏବେ ସେ ଉଚ୍ଛେଦର ବୋଲଡୋଜର ମୁହଁରେ ପଡ଼ିଛି । ତାର ହାଡ଼ଗୋଡ଼ ଗୁଣ୍ଡ କରି ତାକୁ ମାଟିରେ ମିଶାଇ ଦେବାର ଚକ୍ରାନ୍ତ ଆରମ୍ଭ ହୋଇଛି । ଅନ୍ୟ ଦିଗରେ ଭାରତର ଏଇ ବିଦେଶୀ ଥଇଥାନ ବ୍ୟବସ୍ଥା ସହ ରହିଛି ପ୍ରଚ୍ଛନ୍ନ ରାଜନୈତିକ ଅଭିସନ୍ଧି । ତାହା ହେଲା, ଦକ୍ଷିଣ-ପୂର୍ବ ଏସିଆରେ ତଥାକଥିତ ଉଦାରତାର ନାଁରେ ଛୋଟ ପଡ଼ୋଶୀ ରାଷ୍ଟ୍ରରେ ବିଭିନ୍ନ ଆଳରେ ଦ୍ୱନ୍ଦ ସୃଷ୍ଟି କରି ସମ୍ଭବ ମୁତାବକ ସେମାନଙ୍କୁ ଉଦ୍‌ବାସ୍ତୁ କରିବା ଏବଂ ପୁନର୍ବାସନ ନାଁରେ ରାଜନୈତିକ ବଡ଼ ଭାଇ ପଣିଆ ଜାହିର କରିବା । କିନ୍ତୁ ଓଡ଼ିଶାକୁ କି ଫଳାଫଳ ମିଳିଛି ଏ କାମ ଦ୍ୱାରା ?

ଆମର ଗିରିଜନ ଆଦିବାସୀଙ୍କୁ ବିଚାର କଲେ ବାଂଲାଦେଶୀ, ତାମିଲ ଓ ତୀବ୍‌ବତୀ ମାନେ ଯଥେଷ୍ଟ ଉନ୍ନତ । କୃଷି, ବ୍ୟବସାୟ, ଶିକ୍ଷା, ସଂସ୍କୃତି ଓ ବୌଦ୍ଧିକ ଚେତନା ଦିଗରୁ ଏମାନେ ଅନେକ ଆଗୁଆ । ଅସମ ତୁଳନା ଚିରକାଳ ବେଦନା ଦାୟକ । ପ୍ରଥମେ କୁହାଯାଉ ବାଂଲାଦେଶୀଙ୍କ କଥା । ସେମାନେ ଏକ ଶ୍ରେଷ୍ଠ କୃଷିକାରୀ ଜାତି । ପଟାଭୂଇଁରେ ମଧ ସେମାନେ ଫସଲ ଫଳାଇ ଦେବେ । ବ୍ୟବସାୟ ବାଣିଜ୍ୟ ଓ ରାଜନୀତି କ୍ଷେତ୍ରରେ ମଧ ସେମାନେ ଦଖଲ ସାବ୍ୟସ୍ତ କରୁଛନ୍ତି । ଏଠିକା ପରିବେଶରେ ସେମାନଙ୍କର ଶିକ୍ଷାର ବିକାଶ ମଧ ଘଟୁଛି । ଅନ୍ୟ ଦିଗରେ ଆଦିବାସୀ ଆଜି ବି ରହିଛି ଗୋଷ୍ଠୀ ଜୀବନ ଭିତରେ । ଅନେକ ଢଙ୍ଗରେ ଆଦିମ ପ୍ରବଣତା ସବୁ ରହିଛି । ମୁକ୍ତ ଜୀବନ ଶୈଳୀ ମଧ ରହିଛି । ଧରାବନ୍ଧା ନିୟମରେ ସେ ବେଶୀ ସମୟ ନିଜକୁ ବାନ୍ଧି ରଖି ପାରେନି । ନିଜ ଅଧିକାର ପ୍ରତି ଆଇନଗତ ଦୃଷ୍ଟିଭଙ୍ଗି ଆଜିବି କୋହଳ । ସେମାନେ ଖୁବ୍ ବେଶି ଆଇନକାନୁନ ବୁଝନ୍ତି ନାହିଁ । ଫଳରେ ସେମାନଙ୍କର ଅଉଲ ଜମି ସବୁ ବିଭିନ୍ନ ବାଟରେ ହଡ଼ପ ହୋଇ ଚାଲିଛି । ନିଜ ମାଟିରେ

ନିଜେ ସେ ଧୀରେ ଧରେ ସର୍ବସ୍ୱ ହରାଉଛି, ଯାଯାବରରେ ପରିଣତ ହୋଇ ଯାଉଛି । ତୁଳନାତ୍ମକ ବିଚାରରେ ନିଜକୁ ହୀନ, ଦରିଦ୍ର ଓ ନ୍ୟୂନ ମନେ କରୁଛି ।

ଏବେ ତିବ୍‌ବତୀ ମାନଙ୍କ କଥା । ନିକଟରେ ଏକ ସମ୍ବାଦ ପତ୍ରରେ ପ୍ରକାଶ ପାଇଛି- "ଆଦିବାସୀ ଅଂଚଳ ଯେତେବେଳେ ପ୍ରଚୁର ଦାରିଦ୍ର୍ୟ ଭିତରେ ଜର୍ଜରିତ, ସେତେବେଳେ ଗଜପତି ଜିଲ୍ଲାର ମୋହନା ବ୍ଲକରେ ତିବ୍‌ବତୀୟ ଲୋକଙ୍କ ଧନର ପ୍ରାଚୁର୍ଯ୍ୟ ବେଳେ ବେଳେ ମରୁଦ୍ୟାନ ପରି ମନେ ହୁଏ ।" ଆଦିବାସୀ ମାନେ ମୂଲ ମଜୁରୀ ଲାଗି ସେମାନଙ୍କ ପାଖରେ କାମ କରନ୍ତି । ସିମିତି ତାମିଲ ମାନେ ମଧ ମଝିରେ ମଝିରେ ସ୍ଥାନୀୟ ଲୋକଙ୍କ ଉପରେ ବଳ ପ୍ରୟୋଗର ରାସ୍ତା ଗ୍ରହଣ କରୁଛନ୍ତି ।

ସରକାର ଏବେ ଅନ୍ତତଃ ବୁଝିବା ଉଚିତ- ଆଦିବାସୀ ପ୍ରତି ଏଇ ଯେ ସରକାରୀ ଉଦାସୀନତା ଓ ଉଚ୍ଛେଦ ଆୟୋଜନ ତାହା ସମୟ ସହିତ ସେ ବୁଝିବା ଆରମ୍ଭ କରିଛି ଏବଂ ଫଳ ସ୍ୱରୂପ ଭୟାବହ ଦ୍ୱନ୍ଦ୍ୱ ଉପୁଜିଛି ରାଇଘରରେ ବାଂଲାଦେଶୀ ସହ । ଯାହା ଧୀରେ ଧୀରେ ତାମିଲ ଓ ତିବ୍‌ତୀୟଙ୍କ ପ୍ରତି ମଧ ଅଙ୍ଗୁଳି ନିର୍ଦ୍ଦେଶ କରୁଛି ।

## ରକ୍ତ ରଞ୍ଜିତ ଇତିହାସ

ଆଦିବାସୀର ଅରଣ୍ୟର ଅଧିକାର ନେଇ କେତେ ନାହିଁ କେତେ ସଂଘର୍ଷ; କେତେ ବୀରତ୍ୱ, ସହିଦତ୍ୱ; କେତେ କାହାଣୀ, କିମ୍ବଦନ୍ତୀ, ଲୋକ କଥା ଓ ଚାରଣ ଗୀତି; କେତେ ରକ୍ତ ରଂଜିତ ଇତିହାସ ଏଇ ଭାରତରେ ଆମ ଓଡ଼ିଶାରେ- ଚାହିଁଲେ ବି ସବୁର ଇତିହାସ ମିଳିବନି । ଆମେ ଇତିହାସ ବୋଲି ଯାହା ଜାଣିଛୁ- ତାହା ଅତି ସାମାନ୍ୟ ।

ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଛୋଟ ନାଗପୁର ମାଳ ଭୂମିରେ ସିଧୁକାନୁ ଦୁଇ ଭାଇଙ୍କ ସାନ୍ତାଲ୍ ବିଦ୍ରୋହ, ବିର୍ସା ଭଗବାନ (ମୁଣ୍ଡା)ଙ୍କ ଉଲ୍‌ଗୁଲାନ୍, ରାଜସ୍ଥାନର ଭିଲ୍ ବିଦ୍ରୋହ, ଉତ୍ତର ପୂର୍ବ ଭାରତରେ ନାଗା, ମିଜୋ ଇତ୍ୟାଦିଙ୍କର ବେସାଲିସ ସଂଘର୍ଷ, ସନ୍ନ୍ୟାସୀ ଆଲୁରୀ ସୀତାରାମ ରାଜୁଙ୍କ ଫିତୁରୀ, କୋମରାମ ଭୀମ ଲଢ଼େଇ, ଚେନ୍ଦ୍ରାୟା, ତାମାଦୋରା ଓ ବାଙ୍ଗରା ଦେଈଙ୍କ ଆଦିମ ଅଧିକାର ପାଇଁ ସଂଘର୍ଷ, କନ୍ଧମାନଙ୍କ ଯୁଝ, କେନ୍ଦୁଝରରେ ବୀର ଧରଣୀଧରଙ୍କ ଭୂୟାଁ ମେଳି, କଳାହାଣ୍ଡିରେ ରିନ୍ଦୋ ମାଝୀ, ରାୟଗଡ଼ା (ଗୁଣପୁର)ରେ ଗୁମା ଗାଇବା ତଥା ସୌରା ମାନଙ୍କ ବିପ୍ଳବ ଏବଂ ସହିଦ ଲକ୍ଷ୍ମଣ ନାୟକଙ୍କ ଫାଶି ସହିତ ସେ ପଥ ଅନବରତ ସଂଗ୍ରାମୀ ରକ୍ତରେ ଲାଲେ ଲାଲ୍ ।

ଖାଲି ଏତିକି ନୁହେଁ, ୧୮୦୫ ମସିହାରେ ନୟାଗଡ଼, ବଉଦ ଓ ବାଣପୁର ଅଂଚଳର ଆଦିବାସୀମାନେ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ୧୮୧୭ ମସିହାରେ

ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଘୁମୁସରର ୪୦୦ କନ୍ଧ ସୈନିକ ଏବଂ ବାଣପୁରର ଶବର ମାନେ ସାମ୍ରାଜ୍ୟବାଦୀ ବ୍ରିଟିଶ ବିରୁଦ୍ଧରେ ଅସ୍ତ୍ର ଉଠାଇଥିଲେ । ସିମିତି ପାରଳାଖେମୁଣ୍ଡିର ଶବର, କଳାହାଣ୍ଡିର କନ୍ଧମାନେ ମଧ୍ୟ ଜଙ୍ଗଲ ଭିତରେ ରହି ଅତର୍କିତ ଆକ୍ରମଣ ଦ୍ୱାରା ବ୍ରିଟିଶ ଇଣ୍ଡିଆକୁ ଅସ୍ତବ୍ୟସ୍ତ କରି ଦେଇଥିଲେ । ୧୮୨୭ରୁ ୧୮୮୪ ଯାଏଁ ଆଦିବାସୀ ବିଦ୍ରୋହର ନିଆଁ ଜଳି ଉଠିଥିଲା ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ । ସମ୍ବଲପୁର ସମେତ ଓଡ଼ିଶାର ଆଦିବାସୀ ଅଧ୍ୟୁଷିତ ଅଂଚଳ ମାନଙ୍କରେ ଭିନ୍ନ ଭିନ୍ନ ନେତାଙ୍କ ନେତୃତ୍ୱରେ ଆଦିବାସୀ ବିଦ୍ରୋହର ଯେ ବିସ୍ଫୋରଣ ପରେ ବିସ୍ଫୋରଣ, ସେଥିରେ ସାତ ସାଗର ପାରି ଇଂଲଣ୍ଡର ରାଜ ସିଂହାସନ ଦୋହଲି ଉଠିଥିଲା । ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ଆଦ୍ୟଭାଗ ପର୍ଯ୍ୟନ୍ତ ମୟୂରଭଂଜ ଓ ନୀଳଗିରିରେ ମଧ୍ୟ ଆଦିବାସୀ ବିଦ୍ରୋହ ଦେଖା ଦେଇଥିଲା ।

ଶେଷରେ ୧୯୪୭ରେ ଆସିଲା ସ୍ୱାଧୀନତା । କିନ୍ତୁ ଆଜି ଯାଏ ଆଦିବାସୀର ସମସ୍ୟା ସମାଧାନ ହେଲାନି, ବରଂ ଅଧିକରୁ ଅଧିକ ଜଟିଳ ହେବାରେ ଲାଗିଲା । ଶେଷରେ ସେମାନଙ୍କ ବହୁମୁଖୀ ଅସନ୍ତୋଷ ବିସ୍ଫୋରଣ ଆଣିଲା ଭାରତ ଭୂଖଣ୍ଡରେ । ୧୯୬୭ରେ ନକ୍ସାଲବାଡ଼ିର କୃଷି ଆନ୍ଦୋଳନ ଶ୍ରେଣୀ ସଂଘର୍ଷର ରୂପ ନେଇ ବିଛୁରି ପଡ଼ିଲା ସାରା ଦେଶରେ । ସେଥିରେ ଆଦିବାସୀ-ଗିରିଜନ ତାଙ୍କର ଅମ୍ଳାନ ଅବଦାନ ରଖିଥିଲେ । ଆମ ଓଡ଼ିଶାରେ ସେ କୃଷି ବିପ୍ଳବର ସହିଦ ପୁରୁଷମାନେ ହେଲେ- ସହିଦ ରମେଶ ସାହୁ, କବି ସୁବାରାଓ ପାଣିଗ୍ରାହୀ ଓ ପଞ୍ଚାଦ୍ରୀ କୃଷ୍ଣମୂର୍ତ୍ତି ପ୍ରମୁଖ । ଅନ୍ୟ ଦିଗରେ ଆଦିବାସୀ ଭିତରେ ଉତ୍ସର୍ଗୀକୃତ ଭାବେ ଯେଉଁମାନେ ଆମୃତ୍ୟୁ ବେସାଲିସ ସଂଗ୍ରାମ ଜାରି ରଖିଥିଲେ, ସେମାନଙ୍କ ଭିତରେ ପ୍ରମୁଖ ହେଲେ, ସାଥୀ ପୁରୁଷୋତ୍ତମ ପାଲି (ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଭୂମିଗତ ଥିଲେ) ଓ ସାଥୀ ପୂର୍ଣ୍ଣ ଗମାଙ୍ଗ ଇତ୍ୟାଦି । ଅସୀମ ତ୍ୟାଗ ଓ ବଳିଦାନରେ ଋଦ୍ଧିମନ୍ତ ଆଦିବାସୀ ସଂଗ୍ରାମର ଇତିହାସ । ଆଦିବାସୀ ସମାଜ ଯେ ଚିରକାଳ ନିଜର ଅଧିକାର ନେଇ ଲଢ଼େଇ କରି ଆସିଛି ଏବଂ ଲଢ଼େଇ କରିବ- ଏଥିରେ ସନ୍ଦେହ ରହିବା ଅନୁଚିତ ।

ଏଇ ସବୁ ମହାନ ଆଦିବାସୀ ସଂଗ୍ରାମକୁ ସ୍ମରଣ କରି ଦିନେ ମୋ ଲେଖନୀରୁ ଝରି ପଡ଼ିଥିଲା-

ଆଜି ମନେ ପକା ସନ୍ନ୍ୟାସୀ ଆଲୁରୀ

ମନେ ପକା ଚେନ୍ଦ୍ରୟା

ତାମାଦୋରା, ବାଙ୍ଗରା ଦେଇକୁ,

ମନେ ପକା ପୁଟା ସିଂ ବିଦ୍ରୋହୀ ସଉରା

ସହିଦର ରକ୍ତରେ ଟକ୍‌ମକ୍ ଲାଲ୍‌ତୁରୀ ନଈକୁ,
ଆଜି ଚକ୍ର ବିଶୋଇ ସହ
ମନେ ପକା ପଞ୍ଚୁଆ ପିଂଡୁରୀ;
ଏଇ ପୂର୍ବ ଘାଟରେ କେତେ
ସଂଘାତ-ବୀରଗାଥା-ଗୀତିକା
କେତେ କେତେ ପିଂଡୁରୀ ଓ ରିନ୍ଦୋ ମାଝୀର କଥା ଏଇଠି;
ଆଜି ମନେ ପକା ଛୋଟ ନାଗପୁର ମାଳ ଭୂଇଁରେ
ମହାବଳୀ ସିଧୁ-କାନୁ ସାଓଁତାଲ୍ ଭାଇକି;
ମନେ ପକା କେଉଁଝର-ଟେନ୍‌ସାରେ ସ୍ୱାଧୀନତା ଘୋଷଣା
ମହାବୀର ସେ ଧରଣୀ ଧରକୁ;
ଏବେ ମନେ ପକା ବିର୍ସାର ମୁକ୍ତିର ଯୁଦ୍ଧ
ଫାଶିବୀର ଲକ୍ଷ୍ମଣ ନାୟକ ।
ମନେ ପକା ସୁବାରାଓ ଗୀତ ଆଉ ଜାମୁକୁଳି ନୃତ୍ୟ
କ୍ରାନ୍ତିର ଗୁଳିଖିଆ କବିକୁ,
ମନେ ପକା ଦଣ୍ଡକ ଅରଣ୍ୟ ରାଇଜ
ତୋ ଭାତ ଥାଳି ଭାରତରେ ଆଜି କିଏ ମାଲିକ ?

ସାହୁକାରୀ-ସରକାର ତୋର ଚିର ଶତ୍ରୁ
ବନ୍ଧୁ ଯେ ଦୁନିଆର ମେହେନତି ମଣିଷ,
ଆହେ ଗିରିଜନ-ହରିଜନ ପାଦ ତଳ ବର୍ଗ
କେହି ତୋର ସାହା ନାହିଁ
ନିଜ ପାଇଁ ନିଜେ ତୁହି
ଏକାକାର କୋଟି ମୁଠା
ତୋତେ ଦେବ ମୁକ୍ତିର ପରଶ ।

ଆଜି ଗଙ୍ଗାରେ ଉଠୁ ଝଡ଼

ଯମୁନାରେ ଝନ୍‌ଜା

ଗୋଦାବରୀ, ନର୍ମଦା, ତାପ୍ତି ଓ କାବେରୀରେ ଘୂର୍ଣ୍ଣି,

ଆଜି ବ୍ରହ୍ମପୁର ଠାରୁ ମହାନଦୀ, ସିନ୍ଧୁର ବନ୍ୟା

ଉତ୍ତାଳ କରୁ ମହା ସାଗରର ଉର୍ମି,

ପ୍ରଳୟରେ ଡୁବି ଯାଉ ହିମାଳୟ-ବିନ୍ଧ୍ୟର ଶିଖର

ମୁଖରିତ ହେଉ ସାରା ଜଗତ;

ଆଜି ମୁକ୍ତି ହୋ ଏକ ପଥ

ଶକ୍ତି ହୋ ସଂଗ୍ରାମୀ ଏକତା

ପ୍ରତି 'ବିଘା' ଭୂମି ତୋର

ହିମାଳୟ-କୁମାରିକା ଏଇ ମହାଭାରତ ।

('ଲାଲ ପତ୍ର ନୂତନ ପୃଥିବୀ' ସଂକଳନ- 'ତୋର ଏଇ ମହାଭାରତ' କବିତାରୁ ସଂଗୃହୀତ)

ପୂର୍ବର ଏ ସମସ୍ତ ସଂଗ୍ରାମ ବ୍ୟତୀତ ନିକଟ ଅତୀତରେ ଇତୁଆ ଆଦିବାସୀଙ୍କ ଦ୍ୱାରା ବହୁ ବୀରତ୍ୱପୂର୍ଣ୍ଣ ଲଢ଼େଇ ମଧ୍ୟ ଲଢ଼ା ଯାଇଛି । ମାଲକାନଗିରିର ତୁଲେଂଗୁଡ଼ା-ପଦ୍ମାପାଲି ଠାରୁ ଆରମ୍ଭ କରି ନବରଙ୍ଗପୁରର ଚନ୍ଦ୍ରାଗୁଡ଼ା ଏବଂ ଆର୍.ଉଦୟଗିରି ଠାରୁ ମାଝୀଗୁଡ଼ା, ମାନ୍ଦ୍ରାବାଜୁ ଦେଇ ମାଇକଞ୍ଚ ଓ ରାଇଘର ପର୍ଯ୍ୟନ୍ତ- ସେ ସଂଘର୍ଷର ପଥ ଦୀର୍ଘ ଓ ରକ୍ତାପ୍ଳୁତ । ଯାହା ଅତିକ୍ରମି ଆସିଛି ଆଦିବାସୀ । ସିମିତି କଳାହାଣ୍ଡିର କାର୍ଲାପାଟ ଅଭୟାରଣ୍ୟ ବିରୁଦ୍ଧରେ/ ଖଣ୍ଡୁଆଲ ମାଳି ଏବଂ ଲାଞ୍ଜିଗଡ଼ରେ ଷ୍ଟେରଲାଇଟ୍ (ବକ୍‌ସାଇଟ୍) କମ୍ପାନୀ ବିରୁଦ୍ଧରେ/ ନୂଆ ପଡ଼ାର ସୁନାବେଡ଼ା ଅଭୟାରଣ୍ୟ ବିରୁଦ୍ଧରେ/ ରାୟଗଡ଼ାର କାଶୀପୁର ବକ୍ସାଇଟ୍ ମାଇନିଂ ବିରୁଦ୍ଧରେ ଏବଂ ମାଥିଲିର ଟିଣ ପଥର କମ୍ପାନୀ 'ହାମ୍‌କୋ' 'ରେମେ' ବିରୁଦ୍ଧରେ ବହୁ ସଫଳ ଐତିହାସିକ ଆନ୍ଦୋଳନ ଲଢ଼ି ସାରିଛି ଆଦିବାସୀ ଅତି ନିକଟରେ କୋରାପୁଟ ଜିଲ୍ଲାରେ ହେବାକୁ ଥିବା ତେଲିଙ୍ଗିରି- ଜଳସେଚନ ପ୍ରକଳ୍ପକୁ ୭ଟି ଗାଁର ଆଦିବାସୀ କ୍ଷତିଗ୍ରସ୍ତ ହେବାର ଆଶଙ୍କା କରି ଜନଆନ୍ଦୋଳନ ମାଧ୍ୟମରେ ବନ୍ଦ କରି ଦେଇଛନ୍ତି । ସିମିତି ନିକଟରେ ସମ୍ବାଦ ପତ୍ରରୁ ଜଣାପଡ଼ିଛି- ସମଗ୍ର ଗଂଜାମ ଜିଲ୍ଲାରେ ଆଦିବାସୀ ମେଳି ଦାନା ବାନ୍ଧିବାରେ ଲାଗିଛି । ଜିଲ୍ଲାର ବିଭିନ୍ନ ଅଂଚଳରେ ବସବାସ କରୁଥିବା ଆଦିବାସୀ ଓ ଗିରିଜନ ମାନେ ଜଙ୍ଗଲ ଜମି ଉପରେ ଥିବା ସେମାନଙ୍କ ବାସଗୃହ ଏବଂ

ଜମିର ସ୍ୱତ୍ୱ ବା ପଟ୍ଟା ପାଇବା ଦାବିରେ ଏହି ମେଳି ସବୁ ସଂଗଠିତ ହେବାରେ ଲାଗିଛି । ଏ ଭିତରେ ଧରାକୋଟ, ପୋଲସରା, ଖଲ୍ଲିକୋଟ, ବେଗୁନିଆପଡ଼ା ଆଦି ସ୍ଥାନରେ ପାରମ୍ପରିକ ଅସ୍ତ୍ରଶସ୍ତ୍ର ସହ ହଜାର ହଜାର ନାରୀ ପୁରୁଷ ପ୍ରତିବାଦ ଶୋଭାଯାତ୍ରାରେ ବାହାରିଛନ୍ତି । ଯେକୌଣସି ସମୟରେ ଆଦିବାସୀ ଓ ଗିରିଜନ ଶ୍ରେଣୀର ସଶସ୍ତ୍ର ଜନଜାତି ଦ୍ୱାରା ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହୋଇପାରେ- ଯାହା ପ୍ରଶାସନ ପାଇଁ ମଥା ବ୍ୟଥାର କାରଣ ହୋଇଛି । ଇମିତି ଆଦିବାସୀ ଦ୍ୱାରା ଅସୁମାରି ଗଣତାନ୍ତ୍ରିକ ଆନ୍ଦୋଳନର ଜୁଆର ଆସିଛି ଓ ଆସିବାରେ ଲାଗିଛି; ଯାହାର ସ୍ୱର ଓ ଉଚ୍ଛ୍ୱାସ ରାଜ୍ୟ ଡେଇଁ କେବେ କେବେ ସାରା ଦେଶକୁ ଆନ୍ଦୋଳିତ କରିଛି । ପୁଣି କେତୋଟି ଆନ୍ଦୋଳନ ଏପରି ଉତ୍ତାଳ ହୋଇଛି ଯେ, ଇତିହାସରେ ଦୃଷ୍ଟାନ୍ତ ହୋଇ ରହିଛି ।

## ସାଧା ସରଳ କଥା

ଅକାରଣରେ ପାହାଡ଼ ଜଙ୍ଗଲ ତଥା ବିପୁଳ ପ୍ରକୃତିକୁ କେବେ ହେଲେ ନଷ୍ଟ କରେ ନାହିଁ ଆଦିବାସୀ । ତାର ଆବଶ୍ୟକତା ସୀମିତ । ସେ ବର୍ଷରେ ଚାରି ମାସ କିମ୍ବା ତା'ଠାରୁ ଅଧିକ ସମୟ ଖାଦ୍ୟ ପାଇଁ ଜଙ୍ଗଲ ଉପରେ ନିର୍ଭର କରିଥାଏ । ସେତେବେଳେ ସେ ବଣର ଫଳମୂଳ ପତ୍ର ଓ ଫୁଲ ସଂଗ୍ରହ ସହିତ ଅନ୍ୟ ଜଙ୍ଗଲ ଜାତ ଦ୍ରବ୍ୟ ବିକ୍ରି କରି ଜୀବନ ଧାରଣ କରିଥାଏ । ସେ କୁଡ଼ିଆଟେ କି ଛୋଟ ଘର ଖଣ୍ଡେ ବାନ୍ଧିଥାଏ ବଣ ମୂଳକରେ । ଫୁଙ୍ଗୁଳା ଦେହରେ 'ଜୟୀ'କୁ ଲାଗି ତଳେ ଅଥବା ଶିଆଳି କି ବାଉଁଶ ବୁଣା ଖଟିଆରେ ଶୁଏ । ଗୋଟେ ଦିଗରେ ପାହାଡ଼ ତଳ ଅଂଚଳର ବେଶୀ ଭାଗ ସମତଳ ଜମି କଳେବଳେ କୌଶଳେ ଅଣଆଦିବାସୀ ହଡ଼ପ କରିଥିବାରୁ ଆଦିବାସୀ ପାଇଁ ଜୀବନ ଧାରଣର ପନ୍ଥା ସଂକୁଚିତ ହୋଇ ଚାଲିଛି । ଏହା ହିଁ ଥିଲା ପୋଡୁ ଚାଷର ଅନ୍ୟତମ ମୁଖ୍ୟ କାରଣ । କିନ୍ତୁ କ୍ରମଶଃ ପୋଡୁଚାଷ ଉପରେ ଯେପରି କଣକଣା ତାହା ପ୍ରାୟ ବନ୍ଦ ହେବାକୁ ବସିଲାଣି । ଆଦିବାସୀ ଅବଶ୍ୟ ପାହାଡ଼ ଭିତରେ କେଉଁଠି କିପରି ଧାନ, ମାଣ୍ଡିଆ ଓ ଡଙ୍ଗର ରାଣୀ ଇତ୍ୟାଦି ଚାଷ କରିଥାଏ । ସରଳ କରି କହିଲେ ଆଦିବାସୀର ଆବଶ୍ୟକତା ସର୍ବନିମ୍ନ ଏବଂ ତାହା ଲକ୍ଷ୍ୟରେ ରଖି ସେ ବଂଚିବା ମୁତାବକ ହିଁ ଜଙ୍ଗଲକୁ ବ୍ୟବହାର କରିଥାଏ । ତା'ଦ୍ୱାରା କେହି କାଳରେ ସରକାର, କଣ୍ଟ୍ରାକ୍ଟର, ମାଫିଆ, କମ୍ପାନୀ କି ବହୁରାଷ୍ଟ୍ରୀୟ କମ୍ପାନୀ ଭଳି ବ୍ୟାପକ ଭାବେ ଜଙ୍ଗଲ ଧ୍ୱଂସ ହୋଇ ନାହିଁ କିମ୍ବା ହେବାର ସମ୍ଭାବନା ମଧ୍ୟ ନାହିଁ । ତା' ସତ୍ତ୍ୱେ ବି ଯେଉଁ ସାମାନ୍ୟ ବିଚ୍ୟୁତି ସେମାନଙ୍କ ଭିତରେ ଦେଖାଯାଏ, ସେ ସବୁ ଅବିଗୁଣ ସେମାନଙ୍କ ପାଖକୁ ରପ୍ତାନି ହୋଇଛି ସଭ୍ୟ ଦୁନିଆରୁ, ତାହା କେବେ ବି ମୂଳ ଆଦିବାସୀ ଧାରାର ଅଂଶ ନୁହେଁ ।

ସ୍ୱାଧୀନତା ପରେ ଜଙ୍ଗଲ ନିଲାମ/ ସଲ୍‌ଭେଜ ଟିମ୍ବର ଓ ଟେନାଣ୍ଟ ଟିମ୍ବର ନାଁରେ କେତେ ଜଙ୍ଗଲ କଟାଯିବା କଥା ଆଉ କେତେ ଜଙ୍ଗଲ କଟା ଯାଇଛି ? ସିମିତି ବିକାଶମୂଳକ ଯୋଜନାରେ କେତେ ଜଙ୍ଗଲ ନଷ୍ଟ ହୋଇଥିଲେ ଚଳିଥାନ୍ତା, ସମୁଦାୟ କେତେ ଜଙ୍ଗଲ ନଷ୍ଟ ହୋଇଛି ? ଜଙ୍ଗଲ ସଂପର୍କରେ ଧାରଣା ଥିବା ଯେ କେହି ସଚେତନ ନାଗରିକ ଏହା ଆଖିବୁଜି କହି ଦେଇ ପାରିବ- ଆବଶ୍ୟକତା ତଥା ଆଇନଗତ ଭାବେ ଯେତିକି ଜଂଗଲ କାଟିବା କଥା, ତାଠାରୁ ବହୁ ଅଧିକ ଜଙ୍ଗଲ କଟା ଯାଇଛି ବେଆଇନ ଭାବରେ । ଯେମିତି ଠିକାଦାରମାନେ; ଯେ ପର୍ଯ୍ୟନ୍ତ ଜଙ୍ଗଲ ନିଲାମ ହେଉଥିଲା, ସେମାନେ ଥରେ ନିଲାମ ନେଇଗଲେ ହିଁ 'କଚେ ପୁଅ ବାର' । ତେଣିକି ଆଉ ପଛକୁ ଅନେଇବା ଦରକାର ନାହିଁ । ଚାହୁଁ ଚାହୁଁ ନିଲାମ ଜଙ୍ଗଲ ସହିତ ଚାରି ପାଖର ବ୍ୟାପକ ଜଙ୍ଗଲକୁ କାଟି ସଫା କରି ଦିଆଯାଉଥିଲା । ସିମିତି ସଲ୍‌ଭେଜ୍ ଟିମ୍ବର ଆକ୍ଟ । ଯେଉଁ ଆଇନ କେବଳ ଶୁଖିଲା ଗଛକୁ କାଟିବାର ଅଧିକାର ଦେଇଛି । କିନ୍ତୁ ଶୁଖିଲା ଗଛ କାଟିବା ନାଁରେ କାଟି ଦିଆଯାଉଛି ସବୁଜ ଅରଣ୍ୟାନୀ । ସେଇଭଳି ଟେନାଣ୍ଟ ଟିମ୍ବର ଆଇନ । ଯେଉଁଥିରେ ଆଦିବାସୀ ଚାଷୀ ହାଇକୋର୍ଟଙ୍କ ଅନୁମତି ନେଇ ତା' ପଟା ଜମିରେ ଗଛ କାଟି ପାରିବ କୃଷିର ଉନ୍ନତି କଳ୍ପେ । ଏବେ ନିର୍ଦ୍ଦିଷ୍ଟ କଥା କୁହାଯାଉ । ୧୯୯୫/୧୯୯୬ ଓ ୧୯୯୮ରେ ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘ ନେତୃତ୍ୱରେ ତିନୋଟି ତୋଫାନୀ ଆଦିବାସୀ ଆନ୍ଦୋଳନ ଦେଖା ଦେଇଥିଲା ମାଲକାନଗିରିରେ । ୯୫ରେ ତୁଳେଂଗୁଡ଼ା/ ୯୬ରେ ପଦ୍ରାପାଲି ଏବଂ ୯୮ରେ ମାରିଓ୍ୱାଡ଼ା । ତିନୋଟି ଯାକ ଜନଆନ୍ଦୋଳନରୁ ପ୍ରମାଣିତ ହେଲା- ଯେଉଁ ଆଦିବାସୀ ଚାଷୀ ବିଚରା କେବେ ଜୟପୁର ଦେଖି ନାହାନ୍ତି (ଇମିତିକି କେହି କେହି ମାଲକାନଗିରି ମଧ ଦେଖି ନାହାନ୍ତି) ସେମାନେ କିପରି କଟକ ହାଇକୋର୍ଟଙ୍କ ନିର୍ଦ୍ଦେଶ ପାଇଲେ ? ଏହା ମଧ ପ୍ରମାଣିତ ହେଲା, କିପରି ଜଙ୍ଗଲ ମାଫିଆ ମାନେ ଆଦିବାସୀ ଚାଷୀ ନାମରେ ହାଇକୋର୍ଟରେ ଅନ୍ୟ ଲୋକ ମାନଙ୍କୁ ଛିଡ଼ା କରି ଦେଇ କୋର୍ଟ ନିର୍ଦ୍ଦେଶ ପାଇଥିଲେ । ଏବେ ପ୍ରଶ୍ନ ଉଠୁଛି- ଏସବୁ ହୁଏ କାହିଁକି, କାହା ସ୍ୱାର୍ଥରେ, କାହା ସାହସରେ ???

ସ୍ୱାଧୀନତା ଠାରୁ ଏ ଯାକେ ଖଣି ଖାଦାନ ପରି ଜଙ୍ଗଲ ମଧ ଶାସକ ଚକ୍ରର ନିର୍ବାଚନ ଖର୍ଚ୍ଚ ମେଣ୍ଟେଇବା ପାଇଁ ଏକ ହସ୍ତମୁଦି ମାହାଲ । ଏହା ବ୍ୟତୀତ ସେମାନଙ୍କ ଘୋଡ଼ାବେକାର ରାଜନୀତି ଚଳେ ନାହିଁ । ଠିକାଦାର ଓ ମାଫିଆମାନେ ଏହା କରିଥାନ୍ତି ରାଜନେତା ଏବଂ ଜଙ୍ଗଲ ବିଭାଗ ଅଧିକାରୀଙ୍କ ପ୍ରକାଶ୍ୟ ସହଯୋଗରେ । ଗଣତନ୍ତ୍ରର ଅଭିବୃଦ୍ଧି ପାଇଁ ଏହା ଏକାନ୍ତ ଜରୁରୀ । ଅରଣ୍ୟର ଏଇ ଅସହାୟ ଅବସ୍ଥା ଦେଖିଲେ ମନେ ହୁଏ- ସତେକି ତାକୁ ରକ୍ଷା କରିବାକୁ କେହି ନାହିଁ, ସେ ନିରିମାଖିଟିଏ, ଛକ ଜାଗାରେ ଆଖି ମଳି ମଳି ଯାହା

ଶୂନ୍ୟ ଆକାଶକୁ ଚାହିଁ ଭକୁଆ ଭଳି ଛିଡ଼ା ହୋଇଛି ।

ଶିଳ୍ପର କଂଚା ମାଲ ପାଇଁ ବ୍ୟାପକ ଅଂଚଳରେ ବ୍ୟବସାୟିକ ବୃକ୍ଷ ଚାଷ କରାଯାଉଛି । କାହା ସ୍ୱାର୍ଥରେ ? ଅବିଭକ୍ତ କୋରାପୁଟରେ ସିଂଘାଣିଆର ଜେ.କେ. ପେପର ମିଲ୍, ଥାପାରର ସେବା ପେପର ମିଲ୍ ଏବଂ ବିର୍ଲାର ମଙ୍ଗଳମ୍ ଟିମ୍ବର୍ସ କଥା କୁହାଯାଉ । ଏଇ ପେପର ମିଲ୍ ଯୋଗୁଁ କୋରାପୁଟର ଘଂଚ ବାଉଁଶ ଜଂଗଲ ପ୍ରାୟ ଶେଷ । ପୁଣି ବ୍ୟବସାୟିକ ବୃକ୍ଷ ଚାଷ କରାଯାଉଛି ସେଇମାନଙ୍କ ସ୍ୱାର୍ଥରେ । ଏଥିରେ ପଶୁ ଭଳି ପାହାଡ଼ ଜଙ୍ଗଲରେ ରହୁଥିବା ନିରକ୍ଷର ଆଦିବାସୀର କି ସ୍ୱାର୍ଥ ରହିଛି ?

ଆଜି ଆଦିବାସୀର ଦୈନନ୍ଦିନ ଆବଶ୍ୟକତା ମେଣ୍ଟାଇବା ପାଇଁ ବାଉଁଶର ଦୁର୍ଭିକ୍ଷ ଦେଖା ଦେଲାଣି । ଅନ୍ୟ ପକ୍ଷରେ ଆକାଶିଆ, ନୀଳଗିରି ଓ ଇଉକେଲପଟାସ୍ ଭଳି ବୃକ୍ଷ ଚାଷ ହେବା ଦ୍ୱାରା ଭୂତଳ ଜଳସ୍ତର ଏପରି କମି ଗଲାଣି ଯେ, କୋରାପୁଟର ବିସ୍ତୃତ ଅଂଚଳ ଆଜି ମରୁଭୂମି ପ୍ରାୟ । ଏହା ବ୍ୟତୀତ ଆଦିବାସୀ ଦଖଲରେ ଥିବା ଜମିର ପାଞ୍ଚ ଗୁଣରୁ ଅଧିକ ଜଙ୍ଗଲ ଓ ଜମି ଧ୍ୱଂସ କରାଯାଇଛି କେବଳ ବିକାଶମୂଳକ ଶିଳ୍ପ ପ୍ରତିଷ୍ଠା ସହ ଅନ୍ୟାନ୍ୟ ଅଣଜଂଗଲ କାର୍ଯ୍ୟରେ । ତାର ଆନୁପାତିକ ହିସାବ ହେଲା- ସମୁଦାୟ ବିକାଶମୂଳକ କାର୍ଯ୍ୟରେ ମୋଟ ଜଙ୍ଗଲର ୪.୦୮ ପ୍ରତିଶତ ବ୍ୟବହୃତ ହୋଇଥିବା ବେଳେ ବହିରାଗତ ତଥା ଜମି ମାଫିଆଙ୍କ ସହ ବନବାସୀ ଦଖଲରେ ରହିଛି ମାତ୍ର ୦.୮୧ ପ୍ରତିଶତ ଜଙ୍ଗଲ ଜମି । ତେବେ କିଏ ଜଙ୍ଗଲ ଓ ପରିବେଶ ଧ୍ୱଂସକାରୀ ???

## ପରିବେଶ ପ୍ରଦୂଷଣ ପାଇଁ ଦାୟୀ କିଏ ?

ଯା' ସତ୍ତ୍ୱେ ବି ଆମ ଦେଶରେ ଯେଉଁମାନେ ଜଙ୍ଗଲ ପ୍ରେମୀ ବୋଲି ଦାବି କରି ଆଦିବାସୀ ବ୍ୟତିରେକେ ପରିବେଶ ସୁରକ୍ଷାର କାର୍ଯ୍ୟସୂଚୀ ଗ୍ରହଣ କରନ୍ତି, ସେମାନେ କେବେ ବି ପରିବେଶ ବନ୍ଧୁ ନୁହଁନ୍ତି, ବରଂ ସେମାନେ ପ୍ରକୃତି ବିରୋଧୀ, ମଣିଷ ସମାଜର ଶତ୍ରୁ । ଆଜି ଯଥାର୍ଥ ପରିବେଶ ସୁରକ୍ଷା ପାଇଁ ଆମେରିକା ଠାରୁ ଭାରତ ସରକାର ପର୍ଯ୍ୟନ୍ତ କେହି ବିଜ୍ଞାନ ସମ୍ମତ ବାସ୍ତବତାକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନୁହନ୍ତି । କାରଣ ସେମିତି ହେଲେ ସେମାନଙ୍କ ସ୍ୱାର୍ଥ ସିଧାସିଧି ବାଧା ପାଇବ । ସେଭଳି ପରିବେଶ ସୁରକ୍ଷା କରାଗଲେ ପାଦତଳୁ ମାଟି ଟାଳିଯିବ । ତେବେ ସତ୍ୟ କଣ ?

ସତ୍ୟ ହେଲା, ବିଭିନ୍ନ ଶିଳ୍ପ କାରଖାନାରୁ ନିର୍ଗତ ପ୍ରଦୂଷିତ ରାସାୟନିକ ଗ୍ୟାସ୍ ଓ ତରଳ ପଦାର୍ଥ ହିଁ ଆମ ପରିବେଶ ପାଇଁ ବିପଦ ଆଣୁଛି । ଏସବୁ ଗ୍ୟାସ ଫଳରେ ପୃଥିବୀକୁ ଘେରି ରହିଥିବା ଓଜନ ସ୍ତରକୁ କ୍ଷତି ପହଞ୍ଚୁଛି । କେବଳ ମାର୍କିନ ଯୁକ୍ତରାଷ୍ଟ୍ର ହିଁ ପୃଥିବୀର

ସମଗ୍ର ପ୍ରଦୂଷଣର ଏକ ଚତୁର୍ଥାଂଶ ପାଇଁ ଦାୟୀ । ପୁନଶ୍ଚ ଆମେରିକା ସହିତ ବିଶ୍ୱର ଆଠଟି ଧନୀ ରାଷ୍ଟ୍ର (ଜି-୮ ଦେଶ) ମିଳିତ ଭାବେ ତିନି ଚତୁର୍ଥାଂଶ ପ୍ରଦୂଷଣ କରିଥାନ୍ତି । କିନ୍ତୁ ଆମେରିକା ତା'ଦ୍ୱାରା ହେଉଥିବା ପ୍ରଦୂଷଣକୁ କମେଇବା ପାଇଁ କେବେ ବି ରାଜି ହୋଇନି । ଆଜି କିନ୍ତୁ ଗ୍ରୀନ୍ ହାଉସ୍ ଗ୍ୟାସ କମାଇବା ପାଇଁ କଳ କାରଖାନାର ପ୍ରଦୂଷଣ କମାଇବା ଖୁବ୍ ଜରୁରୀ । ପୁନଶ୍ଚ ବିପୁଳ ପ୍ରାକୃତିକ ସମ୍ପଦର ସୁରକ୍ଷା ସହ ବନବାସୀ ପାଇଁ ଆବଶ୍ୟକୀୟ ଖାଦ୍ୟ, ବସ୍ତ୍ର, ବାସଗୃହ ଯୋଗାଇ ଦେବା ଅର୍ଥରେ ଅନୁରୂପ ଆର୍ଥିକ ବିକାଶର ଯୋଜନା କରିବା ଉଚିତ । ତାହେଲେ ଯାଇ ନଦୀ, ଜଙ୍ଗଲ ଓ ଜମି ସହ ମଣିଷ ଓ ଜୀବଜନ୍ତୁଙ୍କ ମଧ୍ୟରେ ଏକ ସମତୁଲ ସହାବସ୍ଥାନ ସମ୍ଭବ ହେବା ସହିତ ପରିବେଶ ସୁରକ୍ଷା ହୋଇ ପାରିବ । କିନ୍ତୁ ଏ କଥା ଶୁଣିବା ପାଇଁ  ସରକାର କିମ୍ବା ଏକାଙ୍ଗ ଚକ୍ରବର୍ତ୍ତୀ ମାର୍କିନ ନବ ସାମ୍ରାଜ୍ୟବାଦ କି ତାର ସାଙ୍ଗପାଙ୍ଗମାନେ କେହି ବି ପ୍ରସ୍ତୁତ ନୁହଁନ୍ତି । ଆଜି ସରକାରଙ୍କର ଏକମାତ୍ର ଲକ୍ଷ୍ୟ ହେଲା ବ୍ୟାପକ ହାରରେ ଆଦିବାସୀ ଉଚ୍ଛେଦ । ଆଉ ସେମାନଙ୍କ ପ୍ରିୟ ବାସଭୂମି ଅରଣ୍ୟ ପର୍ବତକୁ ବିଶ୍ୱବ୍ୟାଙ୍କ ବିଶ୍ୱ ବାଣିଜ୍ୟ ସଂଗଠନ ତଥା ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିର ଦିଶା ନିର୍ଦ୍ଦେଶରେ ବହୁରାଷ୍ଟ୍ରୀୟ କମ୍ପାନୀ ଓ ଦେଶୀ ପୁଞ୍ଜିପତିଙ୍କ ହାତକୁ ଟେକି ଦେବା । ଯାହାର ଫଳ ହେବ ଆଦିବାସୀ ପାଖରୁ ତାର ଭିଟା ଛଡ଼ାଇ  ଭୋକିଲା ସଜାଇ ତାକୁ ହତ୍ୟା କରିବାର କଥା, ନ ହେଲେ ଶସ୍ତା ଶ୍ରମିକ ଆଧୁନିକ ଦାସ ବନାଇ ଅବିଚାରିତ ଭାବେ ତାକୁ ବିଦେଶକୁ ଚାଲାଣ କରିବାର କଥା ।

ଯୁଗେ ଯୁଗେ ଏ  ଦେଶର ଶାସକ-ଶୋଷକ ମାନେ ଇମିତି । ଏମାନଙ୍କ ପୂର୍ବ ପୁରୁଷ ମାନେ ଦିନେ ନିଜର କ୍ଷମତା ଲିପ୍ସା ତଥା ସୁଖ-ସୁବିଧା ପାଇଁ ବୈଦେଶିକ ଆକ୍ରମଣକାରୀଙ୍କୁ ଏଠିକୁ ବାଟ କଢ଼େଇ ଆଣିଥିଲେ । ଆବହମାନ କାଳରୁ କାଳ ଯବନ ଠୁଁ ପଠାଣ ମୋଗଲ ଅମଳ ତେଇଁ ଏହା ଚାଲି ଆସିଛି । ଏମାନେ ଦିନେ ଫିରିଙ୍ଗି, ଫରାସୀ, ଡଚ୍, ପର୍ତ୍ତୁଗିଜ୍, ଦିନାମାର ତଥା ଓଲନ୍ଦାଜ ମାନଙ୍କୁ ଏଠାରେ ବାଣିଜ୍ୟ କରିବା ପାଇଁ ସନନ୍ଦ ପତ୍ର ଦେଇଥିଲେ । ଆଜି ବିଶ୍ୱବ୍ୟାଙ୍କ, ମୁଦ୍ରାପାଣ୍ଠି, ବିଶ୍ୱ ବାଣିଜ୍ୟ ସଂଗଠନ ଇମିତିକି ଜାତିସଂଘର ଖାସ୍ ପ୍ରତିନିଧି କମ୍ପାନୀ କର୍ପୋରେଟ୍ ମାନଙ୍କୁ ଫୁଲ ବିଛେଇ ସେଇମାନଙ୍କ ବଂଶଧର ମାନେ ହିଁ ଘର ଭିତରକୁ ଡାକି ଆଣୁଛନ୍ତି । ଯେକୌଣସି ଅସମ୍ମାନଜନକ ସର୍ତ୍ତରେ ଏମାନେ ବିଦେଶରୁ ଅଜସ୍ର ଋଣ କରଜ କରୁଛନ୍ତି । ଜାତୀୟ ବିକାଶର ଦ୍ୱାହି ଦେଇ ନିଜର ସୁଖ ସମୃଦ୍ଧି ପାଇଁ ତାର ଏକ ଅସଙ୍ଗତ ଭାଗ ଆପଣା ସ୍ୱାର୍ଥରେ ମାରି ନେଉଛନ୍ତି । ଋଣ ଭାର ଶୁଝି ନ ପାରି ମାତୃରୂପୀ ମାତୃଭୂମିର ସ୍ୱାଭିମାନକୁ ବିଦେଶୀ ହାତରେ ସଁପି ଦେଉଛନ୍ତି । ଏହା ଜାଣିଗଲେ କାଳେ ଦେଶବାସୀ ଅଶାନ୍ତ ହୋଇଉଠିବେ, ସେଥିପାଇଁ ସେମାନଙ୍କ ଦୃଷ୍ଟି  ମୂଳ କଥାରୁ ଅନ୍ୟ

ଆଡ଼କୁ ନେଇଯିବା ପାଇଁ ଏମାନେ ଦେଶପ୍ରେମ, ଆତଙ୍କବାଦର ନାରା ଉଠାଉଛନ୍ତି, ସାଂପ୍ରଦାୟିକ ଦଙ୍ଗା ଭିଆଉଛନ୍ତି । କିନ୍ତୁ ବାସ୍ତବରେ ଜନ୍ମମାଟିକୁ ଋଣଗ୍ରସ୍ତ କରି ବିଦେଶୀ ଶତ୍ରୁ (ସାମ୍ରାଜ୍ୟବାଦୀ)କୁ ଆମନ୍ତ୍ରି ଆଣୁଥିବାରୁ ଏଇମାନେ ହିଁ ସବୁଠୁଁ ବଡ଼ ଦେଶ ଦ୍ରୋହୀ ଏବଂ ସାରା ଦେଶର ଜନଜୀବନକୁ ଅସ୍ଥିର-ଆତଙ୍କିତ ତଥା ବାଧ୍ୟତାମୂଳକ ଭାବେ ଗୃହଯୁଦ୍ଧ ଆଡ଼କୁ ଠେଲି ଦେଉଥିବାରୁ ଏଇମାନେ ହିଁ ରାଷ୍ଟ୍ରୀୟ ଆତଙ୍କବାଦୀ ଅଟନ୍ତି । ପୁଣି ଏଇମାନଙ୍କ ଦ୍ୱାରା ଭୟାବହ ସାଂପ୍ରଦାୟିକ ଦଙ୍ଗାର ଭିଆଣ, ଯାହାର କୁପରିଣାମ ଭୋଗୁଛନ୍ତି ନିରିହ ଦେଶବାସୀ । ଖାଲି ଏତିକି ନୁହେଁ, ସାମ୍ରାଜ୍ୟବାଦୀ, ସଂପ୍ରସାରଣ ବାଦୀ ତଥା ମୌଳବାଦୀ ମାନେ ବିଭିନ୍ନ ଦଙ୍ଗା ତଥା ଯୁଦ୍ଧ ଆୟୋଜନ ପାଇଁ ସଂତ୍ରାସବାଦୀ ସଂଗଠନ ସବୁକୁ ନିଜ ଗର୍ଭରୁ ହିଁ ଜନ୍ମ ଦେଇଥାନ୍ତି । ଏହା ତାଙ୍କରି ଭିଆଣ, ତାଙ୍କ ମାନସ ସନ୍ତାନ ।

ଆଜି ରାଷ୍ଟ୍ର ଆମନ୍ତ୍ରି ଆଣିଛି ସେଇ ପ୍ରାଣ ଶୋଷା ବଣିଆମାନଙ୍କୁ, ଯେଉଁମାନେ ଆମର ଜଳ, ସ୍ଥଳ, ଆକାଶ, ପାତାଳ ଭେଦି ଚାଲିଛନ୍ତି । ସେମାନେ ତୃତୀୟ ବିଶ୍ୱର କିଛି ଦଲାଲ ସରକାରଙ୍କୁ ହାତ କରି ବିକାଶମୁଖୀ ଗରିବ ଦେଶର ବିପୁଳ ପ୍ରାକୃତିକ ସମ୍ପଦକୁ 'ଲୁଚି' ନେଇ ସେସବୁ ଅଂଚଳକୁ ଅଳିଆ ଗଦାରେ ପରିଣତ କରିବାକୁ ଚାହାନ୍ତି । ସେଇ ରକ୍ତ ଶୋଷା ଜୋକ ମାନେ ଭଲ କରି ଜାଣନ୍ତି ଯେ, ଜଙ୍ଗଲର ଜୈବ ବିବିଧତା ହେଉଛି ପ୍ରଚୁର ଲାଭ ଦାୟକ କ୍ଷେତ୍ର । କାରଣ କୃଷି, ଔଷଧ, ମଂଜି ଓ ପଶୁ ପାଳନ ଇତ୍ୟାଦି ପାଇଁ ଜଙ୍ଗଲର ଜୈବ ବିବିଧତା ଉପରେ ନିର୍ଭର କରିବାକୁ ପଡ଼ିଥାଏ । ତେଣୁ ପ୍ରଥମେ ଖଣି ଖାଦାନ, ବୃହତ ଡ୍ୟାମ ଓ ବୃହତ ଶିଳ୍ପର ଘୋଷଣା କରି ବନବାସୀଙ୍କୁ ଜଙ୍ଗଲରୁ ତଡ଼ି ଦେବାକୁ ହୁଏ । ଫଳରେ ଫୁଲ, ଫଳ, ପତ୍ର, ଛାଲି ଓ ମଂଜିକୁ ନେଇ ବଜାରରେ ଅବାଧରେ ବିକ୍ରି କରାଯାଇ ପାରିବ । ତେଣୁ ସେମାନେ ଆମ ସରକାରଙ୍କୁ ଅଭୟ ଦିଅନ୍ତି- ଜଙ୍ଗଲ ସମ୍ପଦରେ ଆମକୁ ବେପାର କରିବାକୁ ଦିଅ; ମୂଳ ପାଇଁ ବ୍ୟସ୍ତ ହୁଅନି, ମାତ୍ର ଆମର ସୁଧ ପରିଶୋଧ କରୁଥାଅ; ସବୁ ଠିକ୍ ଚାଲିବ, ଆମେ ଖୁସିରେ ଚଳେଇ ନେବୁ । ସେଇ ସୁଧ ପରିଶୋଧ ବାବଦକୁ ଏବେ ଆଦିବାସୀ ନିଧନ ଯଜ୍ଞ ଆରମ୍ଭ ହୋଇଛି । ଆଉ ସେଥିରୁ ତ୍ରାହି ପାଇବାର ବାଟ ଦିଆଯାଇଛି ରାଜଧାନୀ ଦିଲ୍ଲୀକୁ ଦଉଡ଼ିବା । ଯାହାର ଅର୍ଥ, ଉଚ୍ଛେଦରୁ ମାତ୍ର ଦୁଇଟି ବାଟରେ ନ୍ୟାୟ ପାଇ ପାରିବ ଆଦିବାସୀ । (୧) ତାର ଉଚ୍ଛେଦ ସଂପର୍କୀତ ଯେକୌଣସି ଅଭିଯୋଗ ସିଇସି (ସେଣ୍ଟ୍ରାଲ ଏମ୍‌ପାଓ୍ୱାରଡ୍ କମିଟି)କୁ ଜଣେଇ ବିଚାର ଚାହିଁବ । (୨) ସୁପ୍ରିମକୋର୍ଟରେ ଅପିଲ କରି ପାରିବ । ଏଠାରେ ପ୍ରକାଶ ଥାଉକି, ସିଇସି କେନ୍ଦ୍ର ସରକାରଙ୍କର ଏକ ପାଞ୍ଚ ଜଣିଆ ଉଚ୍ଚ କ୍ଷମତାପନ୍ନ କମିଟି । ତାଙ୍କର ଅବସ୍ଥାନ ଦିଲ୍ଲୀରେ । ସିମିତି ଦେଶର ସର୍ବୋଚ୍ଚ ନ୍ୟାୟପାଳିକା ସୁପ୍ରିମକୋର୍ଟ ମଧ୍ୟ ଦିଲ୍ଲୀରେ

ଅବସ୍ଥାପିତ । ଏଠାରେ ପ୍ରଶ୍ନ ଉଠେ, ସତରେ କଣ ଅସହାୟ ଅଜ୍ଞ ଆଦିବାସୀ ଦିଲ୍ଲୀ ପହଞ୍ଚି ତାର ଅଭିଯୋଗ ପେଶ୍ କରି ପାରିବ ? ତାର କେଶ୍ ଲଢ଼ି ନ୍ୟାୟ ପାଇ ପାରିବ ? ନା ଆଦିବାସୀ ଯେପରି କିଛି କରି ନ ପାରି ଶେଷରେ ଉଚ୍ଛେଦ ମୂହଁରେ ପଡ଼ିବ, ସେଥିପାଇଁ ଏଇ ଉଦ୍ଦେଶ୍ୟମୂଳକ ବ୍ୟବସ୍ଥା ? ଏହା ଆଇନର ସୁବିଧା ଦେଇ ଆଇନ ପ୍ରତି ପ୍ରତାରଣା ନୁହେଁ କି ? ଏହା ଆଦିବାସୀକୁ ହରିକାଠ ଚଢ଼େଇ ଦେବା ନୁହେଁ କି ?

ଅନ୍ୟ ପକ୍ଷରେ ସ୍ୱାଧୀନତା ପରେ ରାଷ୍ଟ୍ର ବ୍ୟବସ୍ଥାର ଅଂଶୀଦାର ହୋଇ ବେଶ୍ କିଛି ଆଦିବାସୀ ଓ ଦଳିତ ନେତା ବିଧାନସଭା/ଲୋକସଭା ଓ ରାଜ୍ୟସଭାର ସଦସ୍ୟ ହୋଇଛନ୍ତି । କିନ୍ତୁ ସବୁଠୁଁ ବୈଚିତ୍ର୍ୟ ହେଲା, ଏଇ ନେତାମାନଙ୍କ ଆଖି ଆଗରେ ହିଁ ନିଜ ପିତୃ ପୁରୁଷଙ୍କ ବିପୁଳ ଜମି ଓ ଜଙ୍ଗଲ, ଆଇନ ବେଆଇନ୍ ଉଭୟ ବାଟରେ ହସ୍ତାନ୍ତରିତ ହୋଇ ଯାଇଛି ଅଣଆଦିବାସୀ ଉଚ୍ଚବର୍ଗଙ୍କ ହାତକୁ । ଏ ନେତାମାନେ କେବେ ବି 'ଠୁ' ଶବ୍ଦ ପର୍ଯ୍ୟନ୍ତ କରି ନାହାନ୍ତି । ଏପରିକି କେହି ଥରଟିଏ ବି ମୁହଁ ଫେରାଇ ଅନାଇ ନାହାନ୍ତି ନିଜ ସମାଜକୁ । ସ୍ୱାଧୀନତା ପରେ ସେମାନଙ୍କ ପାଇଁ ତିମିରତା ନିବିଡ଼ ହୋଇଛି ସିନା କମି ନାହିଁ । ବନବାସୀର ଏଇ ଭାଇମାନେ ଟାଙ୍ଗିଆ ବେଣ୍ଟ ହୋଇ ଜୀଅନ୍ତା ଗଛ ହାଣିଛନ୍ତି/ ହାଣୁଛନ୍ତି । ନିଜକୁ ସଜାଇ ନେଇ ଶାସକ ଶୋଷକର ବୋଲକରା ଅଂଶରେ ପରିଣତ ହୋଇଛନ୍ତି; ହୋଇ ଯାଇଛନ୍ତି 'ସୋ ପିସ୍' ।

ଆଜି ଆଦିବାସୀ ପାଖରେ ଅଛି କିଏ ? - କେହି ନାହାନ୍ତି । ଅଛି କେବଳ ତାର 'କାଟୁ' (ଏକତା) ଓ ସଂଗ୍ରାମ । ଓଡ଼ିଶାରେ ଆଦିବାସୀ ଉଚ୍ଛେଦ କଥା ଉଠିବା ମାତ୍ରେ ଅନେକ ଆଦିବାସୀ, ଗିରିବାସୀ ଓ ଦଳିତ ସଂଗଠନର ପୁକାର ପ୍ରତିଧ୍ୱନିତ ହେଲା ବିଭିନ୍ନ ଦିଗରେ । ସେ ଆବାଜ୍ ମଧ୍ୟପ୍ରଦେଶ-ରାଜସ୍ଥାନରୁ ଛତିଶଗଡ଼-ଆନ୍ଧ୍ରପ୍ରଦେଶ ଦେଇ କେରଳ-ଆସାମ ପର୍ଯ୍ୟନ୍ତ ସ୍ୱନିତ-ତରଙ୍ଗାୟିତ । ସେ ସ୍ୱର କଣ ସରକାରୀ ହୁକୁମ ନାମାରେ ସ୍ତବ୍ଧ ହୋଇଯିବ; ସେ ମଶାଲ କଣ ଦିଲ୍ଲୀ କି ଭୁବନେଶ୍ୱର ଫୁଙ୍କି ଦେଲେ ନିଭିଯିବ ??

## କେତୋଟି ପ୍ରସ୍ତାବ

ତଥାପି ଆଦିବାସୀ ଓ ତାର ସଂଗ୍ରାମୀ ସଂଗଠନ ସମୂହ ଯଥେଷ୍ଟ ବିଚାରଶୀଳ ଓ ଶାନ୍ତିକାମୀ । "ଦେହକୁ ନଲାଗିଲେ ସେମାନେ ପୁଅକୁ ପକାଇବେ ନାହିଁ ।" ସେଥିପାଇଁ ସମାଧାନର ସମ୍ଭାବନାରେ ନିମ୍ନ ପ୍ରସ୍ତାବ ରଖାଯାଉଛି (୧) ଏ ପର୍ଯ୍ୟନ୍ତ ବନବାସୀର ଦଖଲରେ ଥିବା ସମସ୍ତ ଜଙ୍ଗଲ ଜମିକୁ କେନ୍ଦ୍ର ସରକାର ପଟ୍ଟା ଦିଅନ୍ତୁ । (୨) ରାଜ୍ୟ ସରକାର ସମସ୍ତ ଗାଁକୁ ରାଜସ୍ୱ ଗାଁ କିମ୍ବା ପଡ଼ା ଗାଁର ମାନ୍ୟତା ଦିଅନ୍ତୁ । (୩) ଜମି ମାଫିଆ ଓ

ବହିରାଗତ ଜବରଦଖଲକାରୀଙ୍କୁ ଜଙ୍ଗଲରୁ ବହିଷ୍କାର କରାଯାଉ । (୪) ବିଦେଶୀ ତଥା ଦେଶୀ ପୁଞ୍ଜି ପତିଙ୍କ ହାତରେ ଅରଣ୍ୟ-ପର୍ବତ ଟେକି ଦିଆ ନଯାଉ । (୫) ବନବାସୀର କର୍ମନିଯୁକ୍ତି ନେଇ ସରକାର ନିର୍ଦ୍ଦିଷ୍ଟ ଯୋଜନା ଗ୍ରହଣ କରନ୍ତୁ । ତାହା ରୂପାୟିତ କଲାବେଳେ କାର୍ଯ୍ୟଦକ୍ଷ ସତ୍ ଆଦିବାସୀ ପ୍ରତିନିଧି/ ସଂଗଠନ ମାନଙ୍କ ପରାମର୍ଶ ଓ ସାହାଯ୍ୟ ଲୋଡ଼ନ୍ତୁ । ଯେପରି ଜୀବନର ଅତିରିକ୍ତ ଚାପ ଜଂଗଲ ଉପରେ ନରହିବ ଏବଂ ପ୍ରକୃତିର ଭାରସାମ୍ୟ ନଷ୍ଟ ନ ହେବ ସେଥିପ୍ରତି ଲକ୍ଷ୍ୟ ରଖି ସେମାନଙ୍କୁ ସାରା ବର୍ଷର କାମ ଯୋଗାଇ ଦିଆଯାଉ । (୬) ଆଦିବାସୀ ବିକାଶ ନାମରେ ଆସୁଥିବା ଶହ ଶହ କୋଟି ଟଙ୍କାରୁ ବିପୁଳ ଅଂଶ ଖୋଲା ଖୋଲି ଦୁର୍ନୀତି ସାଗରରେ ବୁଡି ଯାଉଛି । ଶାସକ ଓ ପ୍ରଶାସକ ତଳୁ ଉପର ପର୍ଯ୍ୟନ୍ତ ପ୍ରାୟ ସମସ୍ତେ ଏଥିରେ ସଂପୃକ୍ତ । ଦୁର୍ନୀତି ଆଜି ଲଜ୍ଜା ଅପମାନ କି ଅସମ୍ମାନର ବିଷୟ ନ ହୋଇ ଏକ ସାମାଜିକ ମର୍ଯ୍ୟାଦା (ବ୍ୟାଧି)ରେ ପରିଣତ ହୋଇଛି । ଏହି ଅସତ୍ ଅନ୍ୟାୟ ଧାରା ପ୍ରବାହକୁ ଜାତୀୟ ସ୍ରୋତରୁ ରୋକାଯାଇ ସେ ବିପୁଳ ଅର୍ଥକୁ ଯଥାଯଥ ଆଦିବାସୀ ବିକାଶରେ ନିୟୋଜିତ କରାଯାଉ । (୭) ଆଦିବାସୀର ପରାମର୍ଶ ଓ ସମର୍ଥନ କ୍ରମେ ପାରମ୍ପରିକ ବୃକ୍ଷର ଜଙ୍ଗଲିକରଣ କରାଯାଉ । (୮) ବ୍ୟବସାୟିକ ଉଦ୍ଦେଶ୍ୟରେ ଭୂତଳ ଜଳସ୍ତର ଶୁଖେଇ ଦେଉଥିବା ବୃକ୍ଷ ଚାଷ କରା ନଯାଉ । (୯) ପଟ୍ଟା ନଥିବାର ଆଳ ଦେଖାଇ ଆଦିବାସୀର ଚାଷ ଜମି ଉପରେ ବକ୍ଷ ରୋପଣ କରାନଯାଉ । (୧୦) ସେମାନଙ୍କୁ ଧ୍ୟାନରେରଖି ତାଙ୍କର ସ୍ୱାସ୍ଥ୍ୟ-ଶିକ୍ଷା-ଆଲୋକ-ଜଳସେଚନ ଓ କର୍ମ ନିଯୁକ୍ତିର ବ୍ୟବସ୍ଥା କରାଯାଉ । (୧୧) ସେମାନଙ୍କ ଆର୍ଥିକ ମାନଦଣ୍ଡ ବଢ଼ାଇ ଦାଦନ ଯିବା/ଶିଶୁ ଶ୍ରମିକ ହେବା ତଥା ପିଲା ବିକ୍ରି ସହ ଅବୈଧ ଝିଅ ଚାଲାଣ ବନ୍ଦ କରାଯାଉ । (୧୨) ଜଙ୍ଗଲ ବିଭାଗ ସମାପ୍ତ କରାଯାଉ । (୧୩) ବନବାସୀ ମାନଙ୍କର ପ୍ରକୃତ ଜଙ୍ଗଲ ସୁରକ୍ଷାକାରୀ ଗଣତାନ୍ତ୍ରିକ ଅନୁଷ୍ଠାନ ହାତରେ ଜଙ୍ଗଲ ପାହାଡ଼ର ସୁରକ୍ଷା ଦାୟିତ୍ୱ ଦିଆଯାଉ ।

କିନ୍ତୁ କିଏ ନ ଜାଣେ, ନିଜର ଶ୍ରେଣୀ ସ୍ୱାର୍ଥ ଦୃଷ୍ଟିରୁ ଏ ଦାବି ସରକାର ପୂରଣ କରିବେନି; ପୂରଣ କରି ପାରିବେନି । ଏତେବେଳେ ମନେ ପଡ଼େ ଦ୍ୱାପର ଭାରତବର୍ଷରେ ପାଞ୍ଚଖଣ୍ଡ ପଡ଼ା ଗାଁ ମାଗିବାର ସେଇ ପୁରାଣ କଥା । ଅପରିଣାମଦର୍ଶୀ ଉଦ୍ଧତ ଦୁର୍ଯ୍ୟୋଧନ ଯେ ପାଣ୍ଡବ ମାନଙ୍କୁ ସେତିକି ବି ଦେବ ନାହିଁ, ଏହା ସମସ୍ତେ ଜାଣିଥିଲେ । ତଥାପି କୃଷ୍ଣଙ୍କ ଭଳି ମହାନ ଚରିତ୍ର ଦୂତ ହୋଇ ତାହା ଯାଚନା କରିଥିଲେ କୌରବ ଦରବାରରେ ଏବଂ ଦୁନିଆ ଆଗରେ ପ୍ରମାଣ ରଖିଥିଲେ କିପରି ତାହା ବ୍ୟର୍ଥ ହେଲା । ଏବଂ ଏହାଦ୍ୱାରା ଜନମତ ପ୍ରଭାବିତ ହୋଇଥିଲା ଯୁଦ୍ଧ ସପକ୍ଷରେ । ସେଇ ଜନମତ ହିଁ ବିପୁଳ କୌରବ ବାହିନୀର ସାମ୍ନା କରିବା ପାଇଁ ନୈତିକ ବଳ ଯୋଗାଇଥିଲା ପାଣ୍ଡବ ମାନଙ୍କୁ । ଆଉ ଶେଷ ପର୍ଯ୍ୟନ୍ତ

ଭାଇ ଭାଇ ଭିତରେ ହୋଇଥିଲା ଭୟାବହ ଗୃହଯୁଦ୍ଧ । ରକ୍ତନଦୀ ସନ୍ତରଣ କରିଥିଲା ଦୁର୍ଯ୍ୟୋଧନ, ଏହା କଣ ଗୈରିକ ବାଦୀ ମାନେ ଭୁଲି ଯାଇଛନ୍ତି ? ଆଦିବାସୀକୁ ସମ୍ମାନଜନକ ନାଗରିକର ମର୍ଯ୍ୟାଦା ଦେବା ସରକାର ଚାହାନ୍ତି ନାହିଁ । ସ୍ୱାଧୀନତାର ଦୀର୍ଘ ୫୬ ବର୍ଷ ଭିତରେ ପ୍ରତି ମୂହୂର୍ତ୍ତରେ ଏହା ପ୍ରତିପାଦିତ ହୋଇ ଆସିଛି । ଆଦିବାସୀ, ଗିରିଜନ, ବନବାସୀ, ସଂଗ୍ରାମୀ, ଶ୍ରମିକ ତଥା ସାଧାରଣ ଜନତାର ପହିଲା ନମ୍ବର ଦୁଶମନ୍ ହେଉଛି ଏ ରାଷ୍ଟ୍ର । ଏଠି ତିଷ୍ଠି ରହିବାକୁ ହେଲେ ଏ ବ୍ୟବସ୍ଥାକୁ ମୁକାବିଲା କରିବାକୁ ପଡ଼ିବ । ଆଜି ବୁଝିବାକୁ ପଡ଼ିବ, ମୁକ୍ତିର ଅର୍ଥ ହେଉଛି ଗଭୀର ଦାୟିତ୍ୱବୋଧ । ଆମର ପୂର୍ବ ପୁରୁଷ ଆତ୍ମ ବଳିଦାନ ରଖି ସେ ଦାୟିତ୍ୱ ତୁଲେଇଥିଲେ ବୋଲି ଏଇ ସ୍ୱାଧୀନତା ଆସିଥିଲା । ସେ ସ୍ୱାଧୀନତା ଯଦି ଜନଗଣଙ୍କ ସ୍ୱାର୍ଥ ସୁରକ୍ଷା ଦେବା ପରିବର୍ତ୍ତେ ବିପୁଳ ବନବାସୀଙ୍କୁ ଉତ୍‌ଖାତ କରୁଛି, ତେବେ ପୁଣି ଥରେ ଅଧିକ ବଳିଦାନ ରଖି ପୁଣି ଥରେ ସ୍ୱାଧୀନତାକୁ ଆବାହନ କରିବାକୁ ପଡ଼ିବ । ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର । କାରଣ ଏମାନେ ଆଜି ପ୍ରାଣକୁ ଘଟରୁ ନିକାଲି ଦେବାକୁ ଚାଲିଛନ୍ତି ।

ଆଜି ଆଦିବାସୀ ମାରଣର ଧାରୁଆ ଖଣ୍ଡା ମାତ୍ର ସୂତା ଖିଏରେ ଝୁଲାଇ ଦିଆଯାଇଛି ସେମାନଙ୍କ ମଥା ଉପରେ । କିନ୍ତୁ ସବୁଠୁଁ ଦୁଃଖର କଥା, ଆଜି ବି ବିପୁଳ ଆଦିବାସୀ ଶୋଇଚି । ଉଚ୍ଛେଦ ହେଉଥିବା ଆଦିବାସୀର ଦୁଃଖଦୁର୍ଦ୍ଦଶା, ଉଚ୍ଛେଦ ହେଉ ନଥିବା ଆଦିବାସୀକୁ ଉଦ୍‌ବେଳିତ କରୁନାହିଁ । ଅନେକ ଭାବୁଛନ୍ତି, ଆଗ ବିପଦ ଆସୁ ତା ପରେ ଉଠିବା । ଅନେକ ମଧ ଜାଣି ନାହାନ୍ତି- ସେମାନଙ୍କୁ ଜଙ୍ଗଲରୁ ତଡ଼ି ଦିଆଯିବ । ତେଣୁ ଆଦିବାସୀଙ୍କ ଭିତରେ ଯେଉଁମାନେ ସଚେତନ ଜାଗ୍ରତ; ପୁଣି ଆଦିବାସୀ ପ୍ରେମରେ ଯେଉଁମାନେ ଉତ୍ସର୍ଗୀକୃତ-ଉଚ୍ଛଳ-ସମସ୍ତେ ବେଳ ଥାଉଁ ଥାଉଁ ସେ ଘୂମନ୍ତ ବିକ୍ଷିପ୍ତ ଶକ୍ତିକୁ ଏକ ଏକାକାର କରିବା ଉଚିତ । ନେଡ଼ିଗୁଡ଼ କହୁଣୀକୁ ବହିଗଲେ କାହାକୁ ଦୋଷ ଦେଇହେବ ?

## ପରିଶିଷ୍ଟ-ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘ

ସେବେ ୧୯୭୭ ମସିହା । ଅବିଭକ୍ତ କୋରାପୁଟର ବିଭିନ୍ନ ନଦୀବନ୍ଧ ଯୋଜନାରେ ଉଚ୍ଛେଦ ହୋଇଥିବା ଆଦିବାସୀମାନେ ମାଲକାନଗିରି ସବ୍‌ଡିଭିଜନର ମାନୁଷକୋଣ୍ଡା ରିଜର୍ଭ ଜଙ୍ଗଲ ଭିତରେ ଆସି ସେମାନଙ୍କର ଗାଁ ବସେଇଥାନ୍ତି । ଏଇ ସମୟରେ ସରକାରୀ ନିର୍ଦ୍ଦେଶ ମିଳିଲା, ସଂରକ୍ଷିତ ଜଙ୍ଗଲ ଭିତରେ ବସବାସ କରୁଥିବା ଆଦିବାସୀମାନଙ୍କ ଗାଁ ଉଚ୍ଛେଦ ହେବ । ପରେ ପରେ କାର୍ଯ୍ୟକ୍ରମ ମଧ ଆରମ୍ଭ ହୋଇଗଲା । ଶେଷ ପର୍ଯ୍ୟନ୍ତ ପ୍ରାୟ ୫୦/

୬୦ ଜଙ୍ଗଲ ଗାଁର ଅଧିବାସୀ ଦଶ ହଜାର ଅରଣ୍ୟବାସୀଙ୍କ ସହ ସାମିଲ ହୋଇ ଏକ ଐତିହାସିକ ମେଛି ଦ୍ୱାରା ଘେରାଓ କରିଥିଲେ ବାଲିମେଲା ଥାନା । ସେଦିନ ସେମାନେ ପ୍ରଶାସନକୁ ନତଜାନୁ କରି ଗାଁକୁ ରକ୍ଷା କରିଥିଲେ ଏବଂ ତାରି ଭିତରୁ ଜନ୍ମ ନେଇଥିଲା ମାଲକାନଗିରି 'ଜନପାଳ ସଂଘ' । ଅନେକ ଉତ୍‌ଥାନ ପତନ ଭିତରେ ସେ ଦିନର ସବ୍‌ଡିଭିଜନ ଆଜି ଜିଲ୍ଲାରେ ପରିଣତ ହୋଇଛି; ସେଦିନର ଜନପାଳ ସଂଘ ଆଜି ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘରେ ରୂପାନ୍ତରିତ ହୋଇଛି ।

ଚଉଠା ଶତାବ୍ଦୀରୁ ଅଧିକ କାଳ ସଂଘ ତାର ଯାତ୍ରା ପଥରେ ଅନେକ ପ୍ରତିବନ୍ଧକ ସାମ୍ନା କରିଛି, ଅନେକ ପ୍ରତିବାଦ ଓ ପ୍ରତିରୋଧର ଝଡ଼ ଉଠେଇଛି । ସାହୁକାର ଓ ମାଫିଆଚକ୍ରର ଷଡ଼ଯନ୍ତ୍ରରେ ସାଥୀମାନେ ମଧ ସହିଦ ହୋଇଛନ୍ତି । ସବୁ କହିଲେ ମାଦଲା ପାଞ୍ଜି ହେବ । ତା' ଭିତରେ ଗୁରୁତ୍ୱପୂର୍ଣ୍ଣ ହେଲା- ୧୯୮୮/୮୯ରେ ଆନ୍ଧ୍ର ପୋଲିସ ଦ୍ୱାରା ନକ୍ସାଲ ଅଭିଯୋଗରେ ପାପଲୁର ଆଦିବାସୀଙ୍କ ଉପରେ ହୋଇଥିବା ଅମାନୁଷିକ ଦମନଲୀଳାର ପ୍ରତିବାଦ ପ୍ରତିରୋଧ/୧୯୯୫/୯୬ରେ ଲଢ଼ା ଯାଇଥିବା ତୁଲେଂଗୁଡ଼ା-ପଦ୍ମାପାଲି (ପଦ୍ମଗିରି ପଞ୍ଚାୟତ ଓ ପାଣ୍ଡ୍ରିପାଣି ପଞ୍ଚାୟତରେ) ଜଙ୍ଗଲ ମାଫିଆ ବିରୋଧୀ ମରଣ ପଣ ଐତିହାସିକ ଲଢ଼େଇ/୧୯୯୭ ଓ ୨୦୦୦ରେ ଫରେଷ୍ଟ କର୍ପୋରେସନ ଦ୍ୱାରା ସଲଭେଜ୍ ଟିମ୍ବର ନାଁରେ ବାଲିମେଳା ଓ ନାକାମାମାଡ଼ିରେ ବ୍ୟାପକ ଜଙ୍ଗଲ କଟା ବିରୋଧୀ ଲଢ଼େଇ/ ୧୯୯୭ରେ କୁମାରଗୁଡ଼ାର ଜମି ଦଖଲ/ ୧୯୯୮ରେ ଟିଣ ପଥର କମ୍ପାନୀ 'ହାମ୍‌କୋ-ରେମେ' ବିରୁଦ୍ଧରେ ଗଲିଆଗୁଡ଼ା-ମଉପଦର (ସାଲମି ଅଂଚଳରେ)ରେ ଅଭୂତପୂର୍ବ ଜନଜାଗରଣ/ ୧୯୯୮-୯୯ରେ ମାରିବେଡ଼ା ଟେନାଣ୍ଟ ଟିମ୍ବର ବିରୋଧୀ ସଂଗ୍ରାମ/ ୨୦୦୦ରେ ଚିତ୍ରକୋଣ୍ଡା ବାଉଁଶ କଟିଂ ବିରୋଧୀ ଲଢ଼େଇ ଏବଂ ୨୦୦୩ରେ ନକ୍ସାଲ ଅଭିଯୋଗରେ କେନ୍ଦ୍ରୀୟ ରିଜର୍ଭ ପୋଲିସ ଦ୍ୱାରା ନୂଆଗୁଡ଼ା ଠାରେ ହରିଜନ ଆଦିବାସୀଙ୍କ ଉପରେ ହୋଇଥିବା ଅତ୍ୟାଚାର ଓ ଗିରଫଦାରୀର ପ୍ରତିବାଦ ଇତ୍ୟାଦି । ସିମିତି ସଂଘ ଜଙ୍ଗଲ ଉଚ୍ଛେଦ ବିରୋଧରେ ପ୍ରତିରୋଧ ଆନ୍ଦୋଳନ ଆରମ୍ଭ କରିଛି ୨୦୦୨ ଅକ୍ଟୋବର-ନଭେମ୍ବରରେ; ବାଡ୍ରୀଆଟାଲ ଓ ପଦ୍ମପୁର ଠାରେ ଏବଂ ଏଥିରେ ମଧ ସଫଳ ହୋଇଛି । ଏହା ବ୍ୟତୀତ ୨୦୦୩ରେ ମାଥିଲି ବ୍ଲକର କଉଡ଼ିଗୁଡ଼ା ଓ ଦାମାପଡ଼ାରେ ବିପୁଳ ଜମି ପୁନରୁଦ୍ଧାର କରିଛି ଆଦିବାସୀ ।

ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘ ଏକ ସଂକଳ୍ପବଦ୍ଧ ବିପ୍ଳବୀଗଣ ସଂଗଠନ । ଆନ୍ଦୋଳନ, ସଂଘର୍ଷ, ବଳିଦାନ ଯାର ଧାରା ପ୍ରବାହ, ଯାର ଇତିହାସ । ଯେତେବେଳେ ସାରା ଦେଶରେ ତଥା ଓଡ଼ିଶାରେ ଆଦିବାସୀ ଉଚ୍ଛେଦ ପର୍ବ ଆରମ୍ଭ ହୋଇଯାଇଛି,

ସେତେବେଳେ ଯଥାର୍ଥ ବନବାସୀ-ଗିରିଜନ ଏକତା ସହ ସଂଘ ନିଶ୍ଚିତ ହାତ ମିଳାଇବ ଏବଂ ଏ ଲଢ଼େଇକୁ ଚୂଡ଼ାନ୍ତ ଲକ୍ଷ୍ୟ ବିନ୍ଦୁ ପର୍ଯ୍ୟନ୍ତ ଆଗେଇ ନେବାରେ ଅବଶ୍ୟ ତାର ଆଗ୍ରେୟ ଭୂମିକା ପାଳନ କରିବ । ଏଠାରେ ପୁଣି ଥରେ ଉଚ୍ଚାରଣ କରାଯାଉଛି ଯେ, ଜଙ୍ଗଲ ଗାଁକୁ ଉଚ୍ଛେଦ ମୁହଁରୁ ରକ୍ଷା କରିବା ଭିତରେ ଜନ୍ମ ନେଇଥିଲା ଏଇ ସଂଘ । ଆଜି ନୂତନ ଶତାବ୍ଦୀ ଯେତେବେଳେ ସାରା ଦେଶରେ ଆଦିବାସୀ ଉଚ୍ଛେଦ ଯଜ୍ଞ ଆରମ୍ଭ କରି ଦେଇଛି, ସେ ବ୍ୟାପକ ସଂଗ୍ରାମରେ ଯେକୌଣସି ମୂଲ୍ୟର ବିନିମୟରେ ବନବାସୀ (ଆଦିବାସୀ-ଗିରିଜନ) ସହ ଦେଶବ୍ୟାପୀ ସଂଘ ତାର ରକ୍ତ ପତାକା ଉଡ଼ାଇବ ଆକାଶରେ- ଏବଂ ଶେଷ 'ବନି' ବିନ୍ଦୁ ଢାଳି ଏଇ ମହାନ ସଂଗ୍ରାମରେ ସାମିଲ ହେବ ।

## ଶେଷ କଥା

ଆଜି ଆଦିବାସୀ ପାଇଁ ପଛକୁ ହଟି ଯାଇ ପୁଣି ଥରେ ଜମି ଜଙ୍ଗଲ ଖୋଜିବାର ରାସ୍ତା ନାହିଁ କିମ୍ବା କେଉଁଠି ନିଜକୁ ଗୋପନ କରିବା ଭଳି ଜାଗା ମଧ୍ୟ ନାହିଁ । ଆଜି ଅରଣ୍ୟ ଶେଷ ପ୍ରାୟ । ଅନ୍ୟ ପକ୍ଷରେ ଦେଶର ଅବଶିଷ୍ଟ ଅରଣ୍ୟ ମାନଚିତ୍ର ଉପରେ ଶାସକ-ଶକୁନର ଆଖି । ଆଜିକା ପରିପ୍ରେକ୍ଷୀରେ ହୁଏତ ସେ ମୁକାବିଲା କରିବ ନତୁବା ଜଙ୍ଗଲରୁ ହଟିଯାଇ ପୋକ ମାଛି ପରି ଭୀରୁତା ଢାବୁଡ଼ି ମରିବ, ଗୋଟେ କିଛି ବାଛି ନେବାକୁ ପଡ଼ିବ ଆଜିକା ପରିପ୍ରେକ୍ଷୀରେ । ଶେଷ ସଂଗ୍ରାମ ନା ଚୂଡ଼ାନ୍ତ ଆତ୍ମ ସମର୍ପଣ- କଣ ଚାହେଁ ପ୍ରକୃତିର ସନ୍ତାନ- ଆଜି ସେଇ ଅଗ୍ନି ପରୀକ୍ଷାର ଦିନ, ନିଷ୍ପତ୍ତି ନେବାର ଦିନ ଆସିଛି ।

ଶୁଣ, ସାଂପ୍ରଦାୟିକତାବାଦୀ ଶାସକବର୍ଗ, ଶୁଣ, ଅରଣ୍ୟର ଅଧିକାର ଛଡ଼େଇ ନେବାକୁ ଆରମ୍ଭ କରିଥିବା ଦିଲ୍ଲୀ ଗଣତନ୍ତ୍ର- ତମେ ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ବନବାସୀଙ୍କୁ ସ୍ୱାଧୀନତା ଦେଇ ନାହଁ, ତାର ସମସ୍ୟାକୁ ସମାଧାନ କରିନାହଁ, ବରଂ ସେ ନିଆଁକୁ ଏଯାକେ ଅଣ୍ଡିରେ ଖୋସି ଚାଲିଛ । ଅବଶ୍ୟ ଆଜି ବି ସାରା ଦେଶରେ ବନବାସୀ ସଂଗ୍ରାମ ଭିନ୍ନ ଭିନ୍ନ ପଥ ଧରି ଚାଲିଛି, ସେମାନଙ୍କ ଭିତରେ ସଂହତି ବା ସହମତି ନାହିଁ, ଏହା ସତ୍ୟ ହୋଇପାରେ । ତଥାପି ଏଇ ଉଚ୍ଛେଦ ଅଭିଯାନ ଜଙ୍ଗଲରୁ ଆଦିବାସୀଙ୍କୁ ନିଶ୍ଚିହ୍ନ କରିବା ଭଳି ଏକ ଗୁରୁତର ସମସ୍ୟା ।

ତମେ ମନେ ରଖିବ ଶାସକବର୍ଗ- ନାଗା, ମିଜୋ, କୁକୀ, ଖାସୀ, ଗାରୋ ଏବଂ ତ୍ରିପୁରା ଓ ଆସାମର ବୁଡ଼ୋ ଆଦିବାସୀ ମାନେ ଏ ଦେଶର ସ୍ୱାଧୀନତା ପରଠାରୁ ସେମାନଙ୍କ ସ୍ୱାଧୀନତା ଖୋଜୁଛନ୍ତି । ସେମାନେ ଆଜି ବି ଅସ୍ତ୍ର ନୁଆଁଇ ନାହାନ୍ତି । ସିମିତି ମଣିପୁରୀ ଓ ଅନ୍ୟାନ୍ୟ ସମସ୍ୟା । ଅନ୍ୟ ଦିଗରେ ଆନ୍ଧ୍ର, ବିହାର, ମଧ୍ୟପ୍ରଦେଶ, ଓଡ଼ିଶା, ପଶ୍ଚିମବଙ୍ଗ,

ଝାଡ଼ଖଣ୍ଡ, ଛତିଶଗଡ଼, ଉତ୍ତରପ୍ରଦେଶ ଦେଇ ମହାରାଷ୍ଟ୍ର ସାରା ଭାରତରେ ଦଶନ୍ଧି ପରେ ଦଶନ୍ଧି, ଶତାବ୍ଦୀ ପରେ ଶତାବ୍ଦୀ ଧାରାବାହିକ ଆଦିବାସୀ ଅସନ୍ତୋଷ, ବିକ୍ଷୋଭ ଓ ବିଦ୍ରୋହ ଆଜିକୁ ଗମ୍ଭୀର ଅଗ୍ନିଗର୍ଭ ଓ ବିପ୍ଳବାତ୍ମକ । ଆଦିବାସୀ ଭିତରେ ସାମଗ୍ରିକ ଏକତାର ଅଭାବକୁ ଆଖି ଆଗରେ ରଖି ଯେଉଁମାନେ ରାଜନୀତିର ଅଙ୍କକଷି ଏଇ ଉଚ୍ଛେଦ ଅଭିଯାନ ଆରମ୍ଭ କରିଛନ୍ତି- ଖାଲି ଏତିକି ମନେ ରଖିଲେ ଯଥେଷ୍ଟ ହେବ, ସାଧାରଣ ମଣିଷ ଉପରେ ଶାସକ ଶ୍ରେଣୀର ଯେକୌଣସି ଅନ୍ୟାୟ ଦମନଲୀଳା ବ୍ୟାପକ ଭାବେ ସଂଗ୍ରାମୀ ଜୀବନକୁ ଏକାଠି କରି ଦେଇଥାଏ । ଆଜି ଭାରତରେ ଯେଉଁ ଉଚ୍ଛେଦ ପର୍ବ ଆରମ୍ଭ ହୋଇଛି, କାଲିକୁ କାହିଁକି ସାରା ଦେଶରେ ଆଦିବାସୀ ସତ୍ତାକୁ ତାହା ଏକ କରି ନଦେବ ? ଭାରତୀୟ ଶାସକବର୍ଗ ତମେ କଣ ଦେଖି ପାରୁନାହଁ- ଆଜି ଆଦିବାସୀ-ଗିରିଜନ ହାତରେ ମୁକ୍ତିର ମଶାଲ, ଆଖିରେ ଆଖିରେ ବିପ୍ଳବର ସ୍ୱପ୍ନ । ତମେ ମନେ ରଖିବ, ଏମାନେ ସମସ୍ତେ ସୂର୍ଯ୍ୟୋଦୟ ପଥର ଅଭିଯାତ୍ରୀ । ବିଷରୁ ଜନ୍ମ ନେଇଥିବା ଜୀବନ କେବେ ହେଲେ ବିଷରେ ପୁଣି ମରିବନି । ଥରକୁ ଥର ଅଗ୍ନିରେ ପୋଡ଼ି ପାଉଁଶ ହୋଇଯାଇଥିବା ଫୋନିକ୍ସ ପୁଣି ପୁଣି ପାଉଁଶ ଗଦାରୁ ପୁନର୍ଜନ୍ମ ନେବ ଏବଂ ଶେଷ ପର୍ଯ୍ୟନ୍ତ ଅମର ହୋଇଯିବ । ସେମାନଙ୍କ ପାଖରୁ ତାଙ୍କର ପ୍ରିୟ ଅରଣ୍ୟର ଅଧିକାର କାଢ଼ି ନେବା ଏତେ ସହଜ କଥା ନୁହେଁ, ଯାହା ତମେ ସ୍ୱପ୍ନ ଦେଖୁଛ ।

ଆଜି ଆମେ ଯେଉଁମାନେ ବ୍ୟକ୍ତିଗତ ତଥା ସାଂଗଠନିକ ଭାବେ ଆଦିବାସୀ ଉଚ୍ଛେଦ ବିରୁଦ୍ଧରେ ସ୍ୱର ତୋଳୁଛୁ, ଚାଲନ୍ତୁ- ଆମେ ଗୋଟିଏ ମଂଚରୁ ସାରା ଓଡ଼ିଶା ତଥା ଭାରତ ପାଇଁ ଝଡ଼ ଉଠାଇବା । ଆସନ୍ତୁ, ଆମେ ସମ୍ମିଳିତ ଭାବେ ଏଇ ଜାତୀୟବର୍ବରତାକୁ କବର ଦେବା । ଆଗେଇ ଆସନ୍ତୁ, ଆମେ ସମସ୍ତେ ଏଇ ମହାସଂଗ୍ରାମରେ ଝାସ ଦେବା, ଏକାକାର ହେବା । କିଏ ଆଦିବାସୀ, ବନବାସୀ ହେଉ କି ନ ହେଉ- ପାଦ ମିଳାନ୍ତୁ, ତାଙ୍କ ସାଥିରେ ମଶାଲ ହାତରେ ଆମେ ଆଗକୁ ଚାଲିବା । ଏତେବେଳେ ଆଗାମୀ ଦିନ ପାଇଁ ନିଜକୁ ଶପଥବଦ୍ଧ କରନ୍ତୁ ସଂଗ୍ରାମୀମାନେ, ଆଗେଇ ଆସନ୍ତୁ । ଶେଷରେ ଲାଟିନ୍ ଆମେରିକାର ଜଣେ ବିସ୍ମୃତ କବିଙ୍କୁ ସେଇ ଲୋହିତ ଭାରତୀୟ ନେତାଙ୍କ ସହ ମିଶାଇ ନିଜ ହୃଦୟରୁ ଏଠାରେ ମୁଁ ଉଚ୍ଚାରଣ କରୁଛି-

କେଉଁ ସାମ୍ରାଜ୍ୟ
ପାଞ୍ଚ ଶହ ବର୍ଷ ତିଷ୍ଠି ରହିଛି ଯେ,
ଶାସକ ମାନଙ୍କର ଏତେ ସ୍ପର୍ଦ୍ଧା ?
ତମେ ସଭ୍ୟତାର

କର୍ମଠ ଅକପଟ ଜୀବନକୁ
ଧ୍ୱଂସ କରିଦେଲେ
ଦିନେ ନିଜେ ମଧ ଧ୍ୱଂସ ପାଇଯିବ;

ତମେ ମନେ ରଖିବା ଉଚିତ
ମଣିଷ ଏ ପୃଥିବୀର ଅଧିକାରୀ ନୁହେଁ
ବରଂ ପୃଥିବୀ ମଣିଷର ଅଧିକାରୀ,

ସେଇ ପୃଥିବୀର
ପ୍ରକୃତି କୋଳରେ ଜୀଇଁଥିବା ମଣିଷଟିକୁ
ବଳିଦେଲା ପରେ
ହେ ଶାସକମାନେ
ତମ ପ୍ରକୃତି ପରିବେଶ
ତମ ସଭ୍ୟତା
ଆଉ ତମେ ନିରାପଦ ରହିବ ତ ??

□□

# ଲେଖକଙ୍କର ପ୍ରକାଶିତ ଅନ୍ୟାନ୍ୟ ପୁସ୍ତକ

| | | |
|---|---|---|
| ବାରୁଦ ସ୍ତୂପର କବିତା | - | କବିତା |
| ଆଉ ଚୁପ୍ ନୁହେଁ | - | କବିତା |
| ବିପ୍ଳବୀ କବିଙ୍କ ଦାଦାଗିରି ପ୍ରତି ଆହ୍ୱାନ | - | ସମାଲୋଚନା |
| ନଗ୍ନ ଦେବଦୂତ | - | ଲଳିତ ନିବନ୍ଧ |
| ଶବ ନାରୀ | - | କାବ୍ୟ |
| ଲାଲ୍ ପତ୍ର ନୂତନ ପୃଥିବୀ | - | କବିତା |
| ସାକ୍ଷାତକାର ଅଶୀତି ପର | - | ସାକ୍ଷାତକାର |
| କବିର କଳାଡିହ | - | କବିତା (ପ୍ରକାଶ ଅପେକ୍ଷାରେ) |

# ପ୍ରକାଶକୀୟ ଅଭିବ୍ୟକ୍ତି

'ଅରଣ୍ୟର ଅଧିକାର ବନାମ ଆଦିବାସୀ ଉଚ୍ଛେଦ' ପୁସ୍ତକଟିରେ ସ୍ୱାଧୀନତା ପରବର୍ତ୍ତୀ ତୃଣମୂଳ ଜାତୀୟ ଜୀବନଧାରା ସଂପର୍କରେ ବ୍ୟାପକ ଆଲୋଚନା କରାଯାଇଛି । ଆଦିବାସୀ ଜନଜୀବନ କାଳେକାଳେ ତଥାକଥିତ ମୂଳସ୍ରୋତ ଠାରୁ ପ୍ରାୟତଃ ବିଛିନ୍ନ । ଭାରତର ଏହି ଚିର ଅବହେଳିତମାନେ ସଦାକାଳେ ସୁବିଧାବାଦୀ ସମାଜ ବ୍ୟବସ୍ଥା ଠାରୁ ସବୁ ଭାବେ ଉପେକ୍ଷିତ । ଯଦିଚ ଏଇ ସ୍ରୋତ ଭାରତୀୟତାର ଅନ୍ତସଲିଳା ଫଲଗୁ ଏ କଥାକୁ ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ । ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପାରହୋଇ ସାରିଥିଲେ ବି ଏହିମାନଙ୍କୁ ଏଯାଏ ସାମାଜିକ ନ୍ୟାୟ, ସମୟୋଚିତ ସୁବିଧା ସୁଯୋଗ, ଖାଦ୍ୟବସ୍ତ୍ର, ତଥା ଭୂମିର ଯାବତୀୟ ଆବଶ୍ୟକତାକୁ ଉପଲବ୍ଧି କରାଯାଇ ନ୍ୟାୟ ଦିଆଯାଇ ପାରିନାହିଁ । ଶିକ୍ଷାର ଅଭାବ ସଂଗକୁ ସାମାଜିକ ବିବିଧତାର ଉତ୍ପୀଡ଼ନରେ ଏଯାଏ ଦେଶର ଏଇ ଆଦିମାନବମାନେ ଏବେ ବି ନିଷ୍ପେଷିତ ଓ ଅବହେଳିତ ।

ଏଇ ଅବହେଳଣାର କରୁଣ ସତ୍ୟ କଥାକୁ ବିସ୍ତାରିତ ଭାବେ ଆଲୋଚନା କରିଛନ୍ତି ବିପ୍ଳବୀ କବି ସମସ୍ନେହ ନାୟକ । ଏଇ ପୁସ୍ତକଟି ବହୁ ଅପ୍ରିୟ ସତ୍ୟର ସମାହାର ଓ ବାସ୍ତବିକ ସଂକଟ ସମାଧାନର ଦିଗନିର୍ଣ୍ଣୟ କରାଯାଇଛି ଆଲୋଚନା କ୍ରମରେ ।

ଏଇ ବାସ୍ତବ ସତ୍ୟ କଥାଟି ଏଯାଏ ପ୍ରକାଶିତ ହୋଇ ନଥିଲା ଓଡ଼ିଆ ସାହିତ୍ୟର ବସ୍ତୁବାଦୀ ଭିଟାମାଟିରେ । ଆଶାକରୁ ଏଇ ପୁସ୍ତକରେ ସଂଶିତ ସମସ୍ତ ତଥ୍ୟାବଳୀ, ସମସ୍ୟା ସମାଧାନର ସୂତ୍ର ଉନ୍ମୋଚିତ କରିବ ।

-ସଦାଶିବ ଦାଶ